# ରବିନ୍‌ହୁଡ୍

ଅନୁବାଦ :

ଅଧ୍ୟାପକ ଶ୍ରୀଧର ଦାସ

( ୧ )

# ଭବିଷ୍ୟତର ସ୍ୱପ୍ନ

ଛୋଟ ପିଲଟିଏ ସକାଳୁ ଦିପହରଯାଏଁ ବଣରେ ବୁଲି ବୁଲି ଘରକୁ ଆସିଲାକ୍ଷଣି ମାଆକୁ ଡାକି କହିଲା, "ମାଆ, ଖାଇବାକୁ ହେଲାଣି ?"

ରୋଷେଇ ଘରୁ ମାଆ ଉତ୍ତର କଲେ, "ହଁ ରବନ୍" ।

ରବନ୍ ରୋଷେଇ ଘରକୁ ପଶିଗଲା । ସେତେବେଳକୁ ଖାଇବା ଜିନିଷ ବଢ଼ା ହୋଇ ସାରିଥିଲା । ସେ ବସି ଖାଇବାକୁ ଲାଗିଲା ।

ଖିଆ ସରିଲା । ମାଆ ବାସନ ମାଜୁଥାନ୍ତି । ରବନ୍ ଘର ଭିତରେ ବସି ମେଲା କବାଟ ବାଟେ ଦୂରକୁ ଚାହିଁଥାଏ । ତାର ଆଖି ରହିଥାଏ ଦୂର ଜଙ୍ଗଲ ଉପରେ ।

ସେ ହଠାତ୍ କହିଲା, "ମାଆ, ସତରେ କଅଣ କନେଷ୍ଟ୍ରିର ନାଇଟ * ସାର୍ ଗାୟ୍ ତମର ଦାଦା ଥିଲେ ?"

ମାଆ ଉତ୍ତର କଲେ, "ହଁ, ସେ କଥା ସତ । ତୋତେ କିଏ ଏହା କହିଲା ?"

ରବନ୍ ରୋଷେଇ ଘରକୁ ଯାଇ ଖଣ୍ଡିଏ କନା ନେଇ ଆସିଲା । ସେଥିରେ ସେ ଧୁଆ ବାସନଯାକ ପୋଛି ଦେଲା । ପୁଣି ପଚାରିଲା, "ମାଆ, ସତେ କଣ ତମର ଦାଦା ଏକା ଏକା ଗୋଟାଏ ବଣୁଆ ବାର୍ହା ମାରିଥିଲେ ?"

---

* ନାଇଟ--ଉଚ୍ଚ କୁଳର ଯୋଦ୍ଧାଙ୍କୁ ରାଜାଙ୍କ ଦ୍ୱାରା ଦିଆଯାଇଥିବା ଉପାଧି ।

ମାଆ ହସି ହସି କହିଲେ, "ହଁ, ମାରିଥିଲେ । ଖୁବ୍ ସାହସର କାମ, ନୁହେଁ ?"

ରବିନ କହିଲା, "ସେ କପରି ବାର୍‌ହାକୁ ମାରିଲେ, ମୋତେ କହ ।"

ରବିନ୍‌ର ମାଆ ଗୋଟିଏ ଟୁଲ୍ ଟାଣିଆଣି ସେଥିରେ ବସିଲେ । ରବିନ୍ ତାଙ୍କଠାରୁ ମନ ଦେଇ ତାର ଅଜାଙ୍କ ବାର୍‌ହା ମାରିବା କଥା ଶୁଣିବାକୁ ଲଗିଲା ।

ବଣରେ ଗୋଟାଏ ଭୀଷଣ ବାର୍‌ହା ଥିଲା । ତାର ରଙ୍ଗ ନାଲ । ବଣରେ ଲୋକେ ଗଲାବେଳେ ସେ ସେମାନଙ୍କୁ ଆକ୍ରମଣ କରୁଥିଲା । ତା ଯୋଗେ ଅନେକ ଲୋକଙ୍କର ପ୍ରାଣ ଯାଇଥିଲା । ତୋର ଅଜା ତାକୁ ମାରିବାକୁ ଏକୁଟିଆ ବଣଭିତରକୁ ପଶିଲେ । ସେ ଗୋଟିଏ ଜନ୍ତା ବସାଇଲେ । ବାର୍‌ହା ସେଥିରେ ପଡ଼ିଗଲା । ତହୁଁ ଅଜା ତାଙ୍କ ଛୁରୀଟି ତା ପେଟରେ ଭୂଷି ଦେଲେ । ସେ ମଲା ବାର୍‌ହାର ମୁଣ୍ଡଟି କାଟି ଘରକୁ ଘେନି ଆସିଲେ । ବଡ଼ ବଡ଼ ଦାନ୍ତ ସହିତ ତାର ମୁଣ୍ଡଟି ହେଲା ତାଙ୍କ ପରାକ୍ରମର ସଙ୍କେତ ।

ରବିନ୍ ଏହିକଥା ଶୁଣୁ ଶୁଣୁ ତାର ପୂର୍ବ ପୁରୁଷ ଜଣେ କପରି ଛୁରୀ ଧରି ଏକୁଟିଆ ବଣରେ ପଶି ବାର୍‌ହାକୁ ମାରିଥିଲେ, ସେ କଥା କଳ୍ପନା କରୁଥିଲା । ମାଆ ମାଠିଆଟିଏ ଧରି ପାଣି ଆଣିବାକୁ ବାହାରିଲା ବେଳକୁ କହିଲେ, "ରବିନ୍, ଯାଆ । ଉପରବେଳଆ ଖରାରେ ଟିକଏ ନ ବୁଲିଲେ ତୋର ଚଳିବ ନାହିଁ ।"

ରବିନ୍ ଉଠିପଡ଼ି କହିଲା, "ନା ମାଆ, ମୁଁ ବୁଲିଯିବା କଥା ଭାବୁ ନାହିଁ । ମୁଁ ଭାବୁଥିଲି— ଏବେ କଉଣ ଜଙ୍ଗଲରେ ବାର୍‌ହା ନାହାନ୍ତି କି ?"

ମାଆ ଉତ୍ତର କଲେ, "ହଁ, ନାହାନ୍ତି କଅଣ ? ତେବେ ତୋରଂଅଜା ଯେଉଁ ଭଳି ବାରହା ମାରିଥିଲେ, ସେପରି ଭଦ୍ଦ୍ରଙ୍କର ବାରହା ଆଜିକାଲି ବଣରେ ଦେଖା ଯାଆନ୍ତି ନାହିଁ ।"

ରବନ୍ ଘରଠାରୁ ଶେରଉଡ଼ ଜଙ୍ଗଲ ଆଡ଼କୁ ପଡ଼ିଥିବା ରାସ୍ତା ଉପରେ କିଛିଦୂର ଡେଇଁ ଡେଇଁ ଗଲା । ତା' ମନ ଆନନ୍ଦରେ ପୂରିଥାଏ ।

ଦୁହା ଖାଇବା ବେଳ ହେଲା, କିନ୍ତୁ ସେତେବେଳ ଯାଏ ଆଉ ରବନ୍‌ର ଦେଖା ନାହିଁ । ମାଆ ରବନ୍‌ର ଏ ପ୍ରକାର ଢଙ୍ଗ ଜାଣନ୍ତି । ସ୍ୱାମୀ କାମରୁ ଫେରି ଆସିବେ । ତାଙ୍କ ପାଇଁ କିଛି ଖାଦ୍ୟ ତିଆରି କରିବାରେ ସେ ଲାଗିଲେ । ରବନ୍ ପାଇଁ ଦୁହା ରଖିଦେଲେ ।

ସୂର୍ଯ୍ୟ ଅସ୍ତ ହୋଇ ଆସିଲେ । ଘରେ ଘରେ ବତି ଜଳି ଉଠିଲା । ସ୍ୱାମୀ ଫେରିଲେ, କିନ୍ତୁ ରବନ୍ ଫେରିଲା ନାହିଁ । ସେ କୁଆଡ଼େ ଗଲା ବୋଲି ବାପମାଆଙ୍କ ମନରେ ଚିନ୍ତା ପଶିଲା । ଶେଷରେ ବାପା ରବନ୍‌କୁ ଖୋଜିବାକୁ ବାହାରିଲେ । ସେ ଅନ୍ଧାରିଆ ଗଛ ଭିତରେ ଯାଉ ଯାଉ ଦେଖିଲେ ଯେ କିଏ ଜଣେ ତାଙ୍କ ଘର ଆଡ଼କୁ ଦୌଡ଼ି ଦୌଡ଼ି ଆସୁଛି । ସେ ଫେରି ପଡ଼ି ଦେଖନ୍ତି ତ, ସେ ହେଉଛି ରବନ୍ ।

ବାପା ରାଗିଯାଇ ପଚାରିଲେ, "ତୁ କୁଆଡ଼େ ଯାଇଥିଲୁ, ରବନ୍ ! ସତ କରି କହ ।" ସ୍ୱାମୀଙ୍କର ସ୍ୱର ଶୁଣି ରବନ୍‌ର ମାଆ ଆଗି ସେଠାରେ ପହଞ୍ଚି ଗଲେ ।

ରବନ୍‌ର ପୋଷାକ ମନ୍ଦ ମଇଳା ହୋଇ ଯାଇଥାଏ । କେତେ ଜାଗା ଚିରି ଯାଇଥାଏ ମଧ୍ୟ । ସେ ଯାଇ ମାଆଙ୍କ ପାର୍ଶ୍ୱରେ ଠିଆ ହେଲା ।

କାନ୍ଥରେ ଗୋଟାଏ ଘୋଡ଼ା ଚାବୁକ ଝୁଲୁଥିଲା । ତାର ଆଡ଼କୁ ଚାହିଁ ରବନ୍‌ର ବାପା ଗର୍ଜି ଉଠିଲେ, "ରବନ୍, ମୁଁ ଯାହା ପଚାରୁଛି ତାର ଜବାବ ଦେ । ତୁ କୁଆଡ଼େ ଯାଇଥିଲୁ ?"

ରବନ୍ ରହି ରହି କହିଲା, "ମୁଁ -- ମୁଁ ବଣକୁ ଯାଇଥିଲି, ବାର୍‌ହା ଖୋଜିବାକୁ । ସାର୍ ଗାସ୍ତ ଯେମିତି ଗୋଟାଏ ବାର୍‌ହା ମାରିଥିଲେ, ମୁଁ ସେମିତି ଗୋଟାଏ ବାର୍‌ହା ମାରିବାକୁ ଚାହୁଁଥିଲି ।"

ତାର ବାପା କହିଲେ, "ଯାହାହେଉ, ତୋର ଭାଗ୍ୟଭଲ ଯେ ତୁ ବାର୍‌ହା ହାବୁଡ଼ରେ ପଡ଼ିନାହୁଁ ।" ତାଙ୍କର ରାଗ ଟିକଏ କମି ଆସିଥାଏ । ସେ ପୁଅକୁ ଘର ଭିତରକୁ ଡାକି ନେଇ ଶାନ୍ତ ସ୍ୱରରେ କହିଲେ, "ମାତ୍ର ମୁଁ ଦେଖୁଛି ଯେ ତୋର ବେଶ୍ ସାହସ ଅଛି । ତୋ ଭାଗ୍ୟଭଲ, ଆଉ ଆମ ଭାଗ୍ୟ ମଧ୍ୟ ଭଲ ଯେ ବାର୍‌ହା ସାଥିରେ ତୋର ଭେଟ ହୋଇନାହିଁ ।"

ରବନ୍ ଉତ୍ସାହିତ ହୋଇ କହିଲା, "ବାର୍‌ହା ସିନା ଦେଖା ହେଲା ନାହିଁ; ମାତ୍ର ବଣରେ ଭାରି ମଉଜ ହେଲା । କେତେକ ଲୋକଙ୍କ ସଙ୍ଗେ ଦେଖାହେଲା । ମୁଁ କିପରି ବଣକୁ ଆସିଲି ବୋଲି ସେମାନେ ମୋତେ ପଚାରିଲେ । ମୁଁ ସବୁ କଥା କହିବାରୁ ମୋତେ ଥଟ୍ଟା କଲେ ।"

ବାପା କହିଲେ, "ଆଉ କଅଣ କରନ୍ତେ ? ତୁ ତ ଗୋଟେ ପିଲାଟାଏ ।"

"କିନ୍ତୁ ସେମାନେ ମୋତେ ଖାଇବାକୁ ପିଇବାକୁ ଦେଲେ । ପୁଣି କହିଛନ୍ତି ଯେ ଦିନେ ହୁଏତ ମୁଁ ସେମାନଙ୍କ ପରି ବଣରେ ରହିପାରେ ।" ରବନ୍ କହିଲା ।

ରବନ୍‌ର ମାଆ କହିଲେ, "ଭଗବାନ୍ ତା ନ କରନ୍ତୁ ।" ଏତିକି କହି ସେ ଚାହା ଆଣି ରବନକୁ ଦେଲେ ।

ମନକୁ ମନ କହିଲି ପରି ରବିନ୍ କହିଲା, "ବଣରେ ରହିବା ଭାରି ମଜା ହୋଇଥିବ । ବନଯାକ ପଦାରେ ବୁଲିବା ଆଉ ବଣ ଭିତରେ ଶୋଇବାରେ ଭାରି ମଉଜ ହେଉଥିବ ।"

ରବିନ୍ ଶୋଇବାକୁ ଗଲା । ତାର ଖଟଟି କେତେଖଣ୍ଡ ସାଧା କାଠ ପଟାରେ ତିଆରି । ସେ ଶୋଇ ଶୋଇ ବାହାରକୁ ଚାହିଁଥାଏ । ବାହାରେ ଗଛର ପତ୍ରଗୁଡ଼ିକ ଧୀର ପବନରେ ଦୋହଲୁଥାଏ । ତା' ଭିତରେ ଚନ୍ଦ୍ରଙ୍କର ରୂପେଲି କିରଣ ଝରି ଆସୁଥାଏ । କିଛି ଦୂରରେ ଯେଉଁ ଗହଳିଆ ଜଙ୍ଗଲ, ସେ ତାକୁ ଡାକିଲା ପରି ମନେ ହେଉଥାଏ । ସେଠାରେ ମନୁଷ୍ୟ କେତେ ସ୍ୱାଧୀନ, କେତେ ଦୁଃସାହସିକ ଭାବରେ ଜୀବନ କଟାଇ ପାରେ । ଆଉ ସେ କପରି ଘରର ଚାରିକାନ୍ଥ ମଧ୍ୟରେ ଆବଦ୍ଧ ରହି ଗୋଟାଏ କିଛି ବ୍ୟବସାୟ ଶିଖିବ ?

ଏହାପରି କେତେ ବର୍ଷ ଚାଲିଗଲା । ରବିନ୍ ଗୋଟିଏ ବଳୁଆ ଯୁବକ ହେଲା । କିନ୍ତୁ ସେ କିପରି ପ୍ରଥମେ ବଣକୁ ଯାଇ ବିଚିତ୍ର ଅନୁଭୂତି ପାଇଥିଲା ସେ କଥା ଭୁଲି ପାରିଲା ନାହିଁ । ବେଳ ମିଳିଲେ ସେ ଅନ୍ୟ ଯୁବକମାନଙ୍କ ସଙ୍ଗେ କୁସ୍ତି ଲଢ଼େଇ କରେ, ଦୌଡ଼େ, ଡିଆଁ ଡେଇଁ କରେ । ବଡ଼ ବଡ଼ ଲାଠି ଧରି କିପରି ଦୁଇଜଣଙ୍କ ଭିତରେ ଲଢ଼େଇ ହୁଏ, ତାହା ସେ ଭଲରୂପେ ଶିଖିଗଲା । ଘୋଡ଼ା ଚଢ଼ିବା, ଘୋଡ଼ାକୁ ବାଡ଼ ଡିଆଇଁ ନେବାରେ ମଧ୍ୟ ତାର ବେଶ ବାହାଦୁରି ଆସିଲା । କିନ୍ତୁ ତାର ସବୁଠାରୁ ପ୍ରିୟ ଥିଲା, ଧନୁଶର ଧରି ଖେଳିବା । କୌଣସି ଲକ୍ଷକୁ ଶରମାରିବାରେ ତାର ଆଦୌ ଭୁଲ ହେଉ ନଥିଲା ।

ଏହାପରି ରବିନ୍ ବଢ଼ିବାକୁ ଲାଗିଲା । ତା ଭଳି ସୁନ୍ଦର ବଳିଷ୍ଠ ଯୁବକ ଦେଖିବାକୁ ମିଳୁ ନଥିଲେ । ଦୌଡ଼ିବା, ଘୋଡ଼ା ଚଢ଼ିବା, ଶରରେ ଲକ୍ଷ୍ୟବିଦ୍ଧ କରିବା, ମଲ୍ଲଯୁଦ୍ଧ କରିବା, ଲାଠି ଯୁଦ୍ଧ କରିବା— ଏ ସବୁ ବିଦ୍ୟାରେ ସେ ପାରଙ୍ଗମ ହୋଇଗଲା ।

( ୨ )

# ଗ୍ରୀନ୍‌ଉଡ୍ ଜଙ୍ଗଲରେ

ରବିନ୍ ବଡ଼ ହେବା ସଙ୍ଗେ ସଙ୍ଗେ ତାର ବାପାଙ୍କର ଚିନ୍ତା ହେଲା ପୁଅର ଭବିଷ୍ୟତ ନେଇ । କୌଣସି ଗୋଟାଏ ବ୍ୟବସାୟ ଶିକ୍ଷା ପାଇବା ପାଇଁ ରବିନ୍‌ର ବୟସ ହେଲାଣି । ତାର ଦେହରେ ଯଥେଷ୍ଟ ବଳ; ତେଣୁ ସେ ଯେକୌଣସି ବ୍ୟବସାୟରେ ହାତ ଦେଇପାରେ । କିନ୍ତୁ ତାର ସ୍ୱଭାବ ଭିନ୍ନ । ଦୁଃସାହସିକ କାମ କରିବାରେ ତାର ଆନନ୍ଦ । କାହାରିକୁ ତାର ଭୟ ନଥାଏ । ତେଣୁ ରବିନ୍‌ର ବାପା ଚିନ୍ତାକୁଳ ହୋଇ ପଡ଼ିଲେ । ପୁଅକୁ କି କାମରେ ପୂରାଇବେ ?

ଯାହାହେଉ ରବିନ୍ ଭଳି ଗୋଟିଏ ସୁନ୍ଦର ଓ ବଳିଷ୍ଠ ପୁଅ ପାଇଥିବାରୁ ତାର ବାପମାଆଙ୍କ ମନରେ ଖୁବ୍ ଆନନ୍ଦ । ରବିନ୍‌ର ଚେହେରାଟି ବଡ଼ ସୁନ୍ଦର; ଦେହଟି ବଳିଲା ପରି । କଥା କହିଲା ବେଳେ ହସ ଝରି ପଡ଼ୁଥାଏ । ସାଙ୍ଗସୁଖମାନେ ତାକୁ ଖୁବ ଆଦର କରନ୍ତି । ଏପରି ପୁଅ ପାଇଲେ କେଉଁ ବାପମାଆଙ୍କ ମନରେ ଆନନ୍ଦ ନ ହେବ ?

ରବିନ୍‌ର ଘରଠାରୁ ଅନେକ ଦୂରରେ ନଟିଙ୍ଗହାମ ବୋଲି ଗୋଟିଏ ଛୋଟ ସହର । ସେଠାରେ ରବିନ୍‌ର ମାମୁଁ ଥାନ୍ତି । ତାଙ୍କର ଗାମଓ୍ୱେଲ୍ ବୋଲି ଗୋଟିଏ ଜମିଦାରୀ ଥାଏ । ସେଥିପାଇଁ ତାଙ୍କୁ ସମସ୍ତେ ସ୍କୋୟାର * ଗାମଓ୍ୱେଲ ବୋଲି ଡାକନ୍ତି । ସେ ଜଣେ

* ସ୍କୋୟାର – ଏକଶ୍ରେଣୀର ଜମିଦାର ।

ଉତ୍ତମ ଲୋକ; ପିଲମାନଙ୍କୁ ବଡ଼ ଆଦର କରନ୍ତି । କାହାର କିଛି ଦରକାର ପଡ଼ିଲେ ସେ ସାହାଯ୍ୟ କରିବାକୁ ବାହାରି ପଡ଼ନ୍ତି । ରବିନ୍‌ର ମାଆ କେତେ ବର୍ଷ ହେଲା ଭାଇଙ୍କି ଦେଖି ନଥାନ୍ତି । ପୁଣି ମାମୁଁ ଭଣଜାଙ୍କର କେବେ ଦେଖା ହୋଇ ନଥାଏ। ରବିନ୍‌ର ମାଆ ପୁଅକୁ ନେଇ ଭାଇଙ୍କି ଦେଖେଇବେ ବୋଲି ଭାରି ମନ କରିଥାନ୍ତି ।

ଦିନେ ରବିନ୍‌ର ମାଆ ସ୍ୱାମୀଙ୍କୁ କହିଲେ, "ହଇହେ, ମୁଁ ଏତେ ବର୍ଷ ହେଲା ଏଠାରେ ରହିଲଣି । କେତେକାଳୁ ମୋ ଭାଇଙ୍କି ଦେଖି ନାହିଁ । ମୁଁ ଥରେ ନଟିଙ୍ଗହାମ୍ ଯାଇ ଭାଇଙ୍କି ଦେଖି ଆସିଲେ ହୁଅନ୍ତା ନାହିଁ ?"

ସ୍ୱାମୀ କିଛି ଉତ୍ତର ନ ଦେଇ ଚିନ୍ତା କରିବାକୁ ଲାଗିଲେ ।

କିଛି ସମୟ ଗଲା । ଶେଷରେ ସେ କହିଲେ, "ହଁ, ତୁମେ ଯାଇ ତାଙ୍କସଙ୍ଗେ ଦେଖା କଲେ ଖୁବ ଭଲ ହୁଅନ୍ତା । ମୁଁ କେତେ ଥର ସେ କଥା ବିଚାରିଲଣି । କିନ୍ତୁ ତୁମେ ଜାଣ ତ ବାଟରେ କେତେ ବିପଦ । ପ୍ରଥମ କଥା ହେଉଛି, ତୁମେ ତ ଆଉ ଏକୁଟିଆ ଯାଇ ପାରିବ ନାହିଁ । ତୁମ ସାଥିରେ କେହି ଜଣେ ଯିବା ନିତାନ୍ତ ଦରକାର ।"

ରବିନ୍‌ର ମାଆ କହିଲେ, "ମୁଁ ସେ କଥା ବୁଝି ପାରୁଛି । ମୋ ସଙ୍ଗରେ କେହି ଜଣେ ଯିବା ନିହାତି ଦରକାର । ପୁଣି ଯିଏ ସିଏ ଗଲେ ଚଳିବ ନାହିଁ । ବାଟରେ ଚୋର ଡକାୟତଙ୍କ ଭୟ ଅଛି । ସେମାନଙ୍କଠାରୁ ଯିଏ ମୋତେ ରକ୍ଷା କରିପାରିବ, ସେହିପରି ଜଣେ କେହି ଗଲେ ହେବ ।"

ସ୍ୱାମୀ କହିଲେ, "ତେବେ ତୁମେ ବି ଅସଲ କଥା ବୁଝିପାରୁଛ । ମୁଁ ତ ଯାଇ ପାରିବ ନାହିଁ । ଏତେ ଦୂର ଯିବାକୁ ମୋର ବେଳ

କାହିଁ ? ଏଠାରେ ମୋର କେତେ କାମ । ତମ ସାଥିରେ ଯିବାଭଳି ଲୋକ ମୁଁ ପାଇ ପାରୁନାହିଁ ।”

ରବନ୍‌ର ମାଆ ଟିକଏ ଚୁପ୍ ରହିଲେ । ସେ ଜାଣନ୍ତି ଯେ ସ୍ୱାମୀ ଏହା କହିବେ । ଏବେ ସେ ମନ ଭିତରର କଥାଟି କହିବାର ସୁବିଧା ପାଇଲେ ।

ସେ କହିଲେ, ‘ଆମ ରବନ୍ ମୋ ସାଥିରେ ଗଲେ କପରି ହୁଅନ୍ତା ? ସେ ତ ଆଉ ଛୋଟ ପିଲା ନୁହେଁ । ମୋତେ ଆପଦ ବିପଦ ପଡ଼ିଲେ ସେ କଅଣ ସାହାଯ୍ୟ କରି ପାରିବ ନାହିଁ ? ଅବଶ୍ୟ ବାଟ ଟିକଏ ବେଶି, କୋଡ଼ିଏ କୋଶରୁ ଊଣା ହେବନାହିଁ । ତଥାପି ରବନ୍ ସାଥିରେ ଥିଲେ, ମୋର ଭୟ କରିବାର କିଛି କାରଣ ରହିବ ନାହିଁ ।’

ସ୍ୱାମୀ ଏଥର ହସି ପକାଇ କହିଲେ, ‘ହେଁ, ଅସଲ କଥାଟି କହୁନ କାହିଁକି ? ଭାଇଙ୍କ ପାଖକୁ ଯାଇ ପୁଅଟିକୁ ଦେଖାଇବା ମତଲବ ।’

ଏହା କହି ସେ ପୁଣି ଭାବିବାକୁ ଲାଗିଲେ—ପୁଅ ଉପରେ ନିର୍ଭର କରିହେବ କି ? ବାଟରେ ଚୋର ଡକାୟତଙ୍କ ଉପଦ୍ରବ ଅଛି । ଅବଶ୍ୟ ରବନ୍ ଦେହରେ ଯଥେଷ୍ଟ ବଳ । ହାତହତିଆର ମଧ୍ୟ ଚଳାଇ ଜାଣେ, ତେବେ ବି ସେ ପିଲା ।

ଶେଷରେ ସେ କହିଲେ, ‘ତୁମେ ପୁଅକୁ ଦେଖାଇବା ପାଇଁ ଭାଇ ପାଖକୁ ଯିବାକୁ ବସିଛ । ମୁଁ ମନାକରିବି କାହିଁକି ? ହେଉ ରବନ୍ ତୁମ ସାଥିରେ ଯାଉ । ତାକୁ ଦେଖି ତମ ଭାଇ ନିଶ୍ଚୟ ଖୁସି ହେବେ । ମୁଁ ମଧ୍ୟ ତୁମଠାରୁ ତାଙ୍କ ଖବର ପାଇପାରିବି ।’

• ଏହା ଶୁଣି ରବନ୍‌ର ମାଆଙ୍କ ଆନନ୍ଦ କହିଲେ ନସରେ । ରବନ୍‌କୁ ଏ ଖବରଟା ଦେବାକୁ ସେ ଧାଇଁଲେ । ତେଣୁ ରବନ

ଆସୁଥିଲ । ତାକୁ ଦେଖିଲା କ୍ଷଣି ସେ କହିଲେ, "ରବିନ୍ ଆମେ ନଟିଙ୍ଗହାମ୍ ଯିବା ।"

ରବିନ୍ ଆନନ୍ଦରେ ଚିତ୍କାର କଲା, "ନଟିଙ୍ଗ୍ ହାମ୍ !"

ମାଆ କହିଲେ, 'ହଁ, ନଟିଙ୍ଗହାମ୍ ଯିବା ।' ଖାଲି ତୁ ଓ ମୁଁ, ଏଇ ଦୁଇଜଣ ।

ରବିନ୍‌ର ଆନନ୍ଦ କହିଲେ ନ ସରେ । ସେ ପଚାରିଲା, "ମାଆ, କେତେବେଳେ ବାହାରିବା ?"

ରବିନର ଏତେ ଉତ୍ସାହ ଯିବା; କିନ୍ତୁ ଯିବାପାଇଁ ଅନେକ ବନ୍ଦୋବସ୍ତ କରିବାକୁ ହେବ । ସେକାଳରେ ଘୋଡ଼ାରେ ଚଢ଼ି ଦୂରକୁ ଯିବାଛଡ଼ା ଅନ୍ୟ ଉପାୟ ନଥିଲା । ତେଣୁ ବାଟରେ ଖାଇବା ପାଇଁ ଜିନିଷ ଓ ପିଇବା ପାଣି ସୁଦ୍ଧା ନେବାକୁ ପଡ଼ୁଥିଲା । ରବିନ୍ ପାଇଁ ସାରେ ଭଲ ପୋଷାକ ତିଆରି ହେଲା । ଘୋଡ଼ା ପାଦରେ ନୂଆ ନାଲ ମରାଗଲା; ତାର ଲଗାମ ସଫା କରାଗଲା ଓ ଜିନ୍‌ଟିକୁ ଏପରି ମରାମତି କରାଗଲା ଯେ ବସିଲେ ଆରାମ ଲାଗିବ ।

ରବିନ୍‌ର ବାପା ତାକୁ ଡାକି କହିଲେ, "ରବିନ୍, ତୁମେ କେଉଁବାଟେ ଯିବ, ତାହାର ଗୋଟିଏ ନକ୍‌ସା ଆଙ୍କି ଦେଉଛି ।"

ବାପା ନକ୍‌ସାଟିଏ ଆଙ୍କି ବାଟର ହାଲ ବୁଝାଉଥାନ୍ତି; ରବିନ୍ ନକ୍‌ସା ଉପରେ ଆଖି ରଖି ମନଦେଇ ଶୁଣୁଥାଏ । କେଉଁବାଟ ଦେଇ ଯିବାକୁ ହେବ, କେଉଁଠାରେ ଡକାଏତ ଥିବାର ସମ୍ଭବ, କେଉଁଠାରେ ବାଟ ବଦଳାଇ ବଣ ଭିତରେ ଗଲେ ସିଧା ପଡ଼ିବ, ଏହିପରି ସବୁ କଥା ବାପା ଗୋଟି ଗୋଟି କରି ବୁଝାଇ ଦେଲେ ।

ସବୁ ବନ୍ଦୋବସ୍ତ ଠିକ୍ ହେଲା । ବାଟରେ ପିଇବା ପାଇଁ କେତୋଟି ବୋତଲରେ ପାଣି ଭର୍ତ୍ତି ହେଲା । ଜିନିଷଭିକ ଗୋଟିଏ ଘୋଡ଼ା ପିଠିରେ ଲଦାହେଲା ।

ରେବନ୍‌ର ବାପା ବାହାରର ଘରଆଡ଼କୁ ଚାହିଁ କହିଲେ, "ଆଜ ଦିନଟି ଖୁବ୍ ଭଲ ପାଗ ହୋଇଛି । ଆକାଶରେ କେଉଁଠି ଖଣ୍ଡେ ହେଲେ ମେଘ ନାହିଁ । ଯିବାପାଇଁ ଏପରି ପାଗ ଖୁବ୍ ସୁବିଧା !"

ରେବନ୍‌ର ମାଆ ସବୁଠାରୁ ଭଲ ପୋଷାକ ପିନ୍ଧି ବାହାରି ପଡ଼ିଲେ । ସେତେବେଳକୁ ରେବନ୍ ଘୋଡ଼ାକୁ ଧରି ଛିଡ଼ା ହୋଇଥାଏ । ତାର ବାପା ତାକୁ ଗୋଟିଏ ଖଣ୍ଡା ଦେଲେ । ସେ ଆନନ୍ଦରେ ସେଇଟିକୁ ଅଣ୍ଟାରେ ଝୁଲାଇ ଦେଲା । ଆଉ ଗୋଟିଏ ଛୁରୀ ନିଜ କମରବନ୍ଧରେ ରଖିଲା ।

ରେବନ୍ ଜିନ୍ ଉପରେ ବସିଲା । ତାର ମାଆ ଘୋଡ଼ା ଉପରକୁ ଉଠିବାରେ ତାର ବାପା ଟିକିଏ ସାହାଯ୍ୟ କଲେ । ମାଆ ରେବନ୍‌ର ପଛରେ ଘୋଡ଼ା ଉପରେ ବସିଲେ ।

ମାଆପୁଅ ଦୁହେଁ ଘୋଡ଼ା ଉପରେ ବସି ଘରୁ ବାହାରିଲାବେଳେ ରେବନ୍‌ର ବାପା କହିଲେ, "ତୁମେ କୁଶଳରେ ପହଞ୍ଚିଲେ ମୋର ଆନନ୍ଦ । ଭଗବାନ୍‌ଙ୍କ ଦୟାରୁ ତୁମର କିଛି ଅସୁବିଧା ହେବ ନାହିଁ ।"

ଗଭୀର ଜଙ୍ଗଲ ଭିତରେ ଘୋଡ଼ା ଧୀର ଗତିରେ ଚାଲିଥାଏ । କିଛି ସମୟ ପରେ ସେମାନେ ଗୋଟିଏ ରାସ୍ତାରେ ପହଞ୍ଚିଲେ । ଏହି ରାସ୍ତା ନଟିଙ୍ଗହାମ୍‌କୁ ପଡ଼ିଛି । ମାଇଲ ପରେ ମାଇଲ ସେମାନେ ଚାଲିଲେ, କିନ୍ତୁ ବାଟରେ କାହାର ଭେଟ ପାଇଲେ ନାହିଁ । ଘରଠାରୁ ଅନେକ ବାଟ ଯିବା ପରେ ସେମାନେ ଦେଖିଲେ ଯେ ଦୁଇଜଣ ଲୋକ ସେମାନଙ୍କ ଆଡ଼କୁ ଆସୁଛନ୍ତି ।

ରେବନ୍ ହଠାତ୍ ଘୋଡ଼ାରୁ ଓହ୍ଲାଇ ପଡ଼ି ବାଁ ହାତରେ ଘୋଡ଼ାର ଲଗାମ ଧରିଲା । ଡାହାଣ ହାତରେ ଖଣ୍ଡା ଧରି ସେ ଦୁହିଁଙ୍କ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇ ରହିଲା ।

କିନ୍ତୁ ସେ ଲୋକ ଦୁଇଟି ଡକାୟତ ନୁହନ୍ତି । ନିରୀହ ବାଟୋଇ ଦୁଇ ଜଣ । ତେଣୁ ସେମାନେ ଏମାନଙ୍କୁ ଟିକିଏ ସମ୍ଭାଷଣ କରି ଧୀର ଭାବରେ ଚାଲିଗଲେ ।

ଏହାପରେ ସେମାନେ ଆହୁରି ଅନେକ ମାଇଲ୍ ଖୁଲିଲେ । ବାଟ ଧୂଳିରେ ପୂର୍ଣ୍ଣ ହୋଇଥାଏ । ବେଳେବେଳେ ଖରାର ତେଜ ବାଧୁଥାଏ । ମାତ୍ର ବାଟରେ କିଛି ବିପଦ ଘଟିନାହିଁ । ଏହାପରେ ସେମାନେ ଶେଷରେ ନଟିଙ୍ଗହାମ୍‌ରେ ପହଞ୍ଚିଲେ । ସେଠାରୁ ଗାମ୍-ଓୟେଲ ଅଳ୍ପ ଦୂର । ସେମାନେ କିଛି ସମୟ ପରେ ଗାମ୍‌ଓୟେଲ୍‌ରେ ପହଞ୍ଚିଗଲେ ।

ମାମୁଁ ରବିନ୍‌ଙ୍କୁ ଦେଖି ବଡ଼ ଆନନ୍ଦିତ ହେଲେ । ରବିନ୍‌ର ମାଆ ଘୋଡ଼ାରୁ ଓହ୍ଲାଇଲାବେଳେ ଟିକିଏ ସାହାଯ୍ୟ କରି କରି ସେ କହିଲେ, "ତେବେ ଏହି ହେଉଛି, ତୋ ପୁଅ । ଏତେ ଦିନେ ଯାହା ହେଉ ମୋ ଭଣଜାକୁ ଦେଖିଲି ।" ରବିନ୍‌ଙ୍କୁ ଦେଖିବା ମାତ୍ରେ ତାଙ୍କର ଧାରଣା ହେଲା ଯେ, ପିଲାଟି ବେଶ୍ ବଳୁଆ, ଆଉ ଖୁବ ବୁଦ୍ଧିମାନ୍ ହୋଇଥିବ । ସେ ନିଜ ପୁଅ ଉଇଲିୟମ୍‌କୁ ଡାକ ପକାଇଲେ "ହେ ଉଇଲ୍; ଆ, ତୋ ଭାଇକୁ ଦେଖିବୁ ।"

ଉଇଲ୍ ଦେଖିବାକୁ ଟିକିଏ ଡେଙ୍ଗା । ତାର ବୟସ ରବିନ୍‌ର ବୟସ ସଙ୍ଗେ ପ୍ରାୟ ସମାନ । ସେ ରବିନ୍ ପାଖକୁ ଆସିଲା । ଖୁବ୍ କମ୍ ସମୟରେ ଦୁହିଙ୍କ ଭିତରେ ବନ୍ଧୁତା ଜନ୍ମିଗଲା ।

ଗୋଟିଏ ଟେବୁଲ୍ ଚାରିପାଖେ ବସି ସମସ୍ତେ ଖାଉଥାନ୍ତି । ଏହି ସମୟରେ ମାମୁଁ କହିଲେ, "ରବିନ୍, କାଲି ବେଶ୍ ମଜା ହେବ । ଦେଖିବା, ତୋର ଦେହରେ କିପରି ବଳ ଅଛି ।"

ସେ ଦିନ ମାଆଙ୍କୁ ଏକୁଟିଆ ବେଳେ ରବିନ୍ କହିଲା, "ମାଆ, ମୁଁ କାଲି ଯାଏ ସମ୍ଭାଳି ପାରୁ ନାହିଁ । ମୋର ମନେ ହୁଏ ନିଶ୍ଚୟ ଗୋଟାଏ କିଛି ବଡ଼ କଥା ହେବାର ଅଛି । ନ ହେଲେ ମାମୁଁ ଏପରି କହନ୍ତେ କାହିଁକି ?"

———

( ୩ )

# ବଳ ପରୀକ୍ଷା

ତା ଆର ଦିନ ରବନ୍ ଖୁବ୍ ସକାଳୁ ବିଛଣାରୁ ଉଠିଲା । ତାର ବାଟରେ ଆସିବାର ସବୁ କ୍ଳାନ୍ତ ଦୂର ହୋଇ ଯାଇଥିଲା । ତେଣୁ ସେ ବେଶ୍ ଫୁର୍ତ୍ତିରେ ଯାହାତକୁ ପାହାଚ ଡେଇଁ ଜମିଦାରଙ୍କ ହଲ୍‌ରେ ପହଞ୍ଚିଲା । ସେତେବେଳକୁ ତାର ମାମୁଁ ପୁଅ ଭାଇ ଉଇଲ୍ ସେଠାରେ ବସି ଜଳଖିଆ ଖାଉଥିଲା । ରବନ୍ ସେଠାରେ ପହଞ୍ଚିବା ମାତ୍ରେ ଉଇଲ୍‌କୁ ସାଦର ସମ୍ଭାଷଣ କଲା ।

ଉଇଲ୍ ଟିକଏ ହସି କହିଲା, "ଭାଇ ରବନ୍, ଆଜ ଗୋଟାଏ ଖରାପ ଖବର ଦେବାକୁ ଅଛି ।"

ରବନ୍ ଟେବୁଲ ପାଖରେ ବସି ପଡ଼ି ପଚାରିଲା, "କଣ ମନ୍ଦ ଖବର ?"

ଉଇଲ୍—ମୋର ଗୋଟିଏ ସାଥୀ ଏଠାକୁ ଆସିବାର ଅଛି । ସେ ଏଠି ହପ୍ତାଏ କାଳ ରହିବ ।

ରବନ୍—ଏଥିରେ ମନ୍ଦ ଖବର କଅଣ ଅଛି ? ଆଉଜଣେ ଯୁବକ ଆମ ସଙ୍ଗେ ମିଶିଲେ ଆହୁରି ମଜା ହେବ ସିନା ।

ଉଇଲ୍—ଆରେ, ସେ ଯୁବକ ନୁହେଁ, ଜଣେ ଯୁବତୀ ।

ରବନ୍—ଓହୋ, ମୁଁ ତା ଜାଣି ନଥିଲା ।

ବାସ୍ତବରେ ଯୁବକଙ୍କ ସହିତ ଜଣେ ଯୁବତୀ ରହିବା ଭିନ୍ନ କଥା । ସାଧାରଣତଃ ଟୋକାମାନଙ୍କ ଭିତରେ ହସ ଖେଳ ଖୁବ୍ ଜମେ । ଝିଅ ପିଲାଙ୍କ ସ୍ୱଭାବ ବଡ଼ କଅଁଳ; ପୁଣି ବେଳେ ବେଳେ ବଡ଼ ବୋକାମି କରନ୍ତି ।

ସେଦିନ ଉପର ବେଳାକୁ ୱିଅଟି ଆସି ପହଞ୍ଚିଲି । ତାଙ୍କର ନାମ ମେରିଆନ୍ । ରବିନ୍ ସାଥିରେ ୱିଅଟିର ,ଦେଖା ହେଲା । ରବିନ୍ ଆଗରୁ ମନେ କରିଥିଲା ଯେ ୱିଅଟି ସଙ୍ଗେ ସେମାନେ ସୁବିଧାରେ ଚଳି ପାରିବେ ନାହିଁ । କିନ୍ତୁ ତା ସଙ୍ଗେ ଦେଖା ହେଲା ପରେ ରବିନ୍‌ର ତାକୁ ଆଦର କରିବାକୁ ମନ ହେଲା । ସେ ସୁନ୍ଦରୀ ଓ ତାର ବ୍ୟବହାର ଜଣେ ବେଶି ବୟସର ସ୍ତ୍ରୀ ଲୋକଙ୍କ ଭଳି । କିନ୍ତୁ ତା ଆଖିରୁ ଜଣା ଯାଉଥିଲା, ସତେ ଯେପରି କି କିଛି ଦୁଷ୍ଟାମି କରିବା ତାର ମତଲବ । ପୁଅ ପିଲାଙ୍କ ସାଥିରେ ଖେଳିବାରେ ତାର ମନ । ଦୌଡ଼ିବାରେ ସେ ଅନେକ ପୁଅଙ୍କୁ ପଛରେ ପକାଇ ଦେଉଥିଲା । ଧନୁ ଶର ଧରି ଲକ୍ଷ୍ୟ ଭେଦିବାରେ ମଧ୍ୟ ତାର ବେଶ୍ ହାତଯଶ ଥିଲା । ପ୍ରଥମରୁ ରବିନ୍‌କୁ ଏପରି ୱିଅଟି ଭଲ ଲାଗିଥିଲା ।

ସେଦିନ ସ୍କୋୟାର ଗାମଓ୍ୱେଲ ଗୋଟାଏ ବଡ଼ ଭୋଜିର ଆୟୋଜନ କଲେ । ତାଙ୍କର ବନ୍ଧୁବାନ୍ଧବ, ସାଙ୍ଗସାଥୀଙ୍କୁ ତ ନିମନ୍ତ୍ରଣ କରାଗଲା; ତା ସଙ୍ଗେ ସଙ୍ଗେ ଆଖପାଖ ଗ୍ରାମର ସବୁ ଲୋକଙ୍କୁ ମଧ୍ୟ ନିମନ୍ତ୍ରଣ ପଠାଗଲା ।

ନିମନ୍ତ୍ରିତ ଲୋକେ ଖୁବ୍ ଆନନ୍ଦ ପ୍ରକାଶ କଲେ । ସେମାନେ ଏପରି ହସ କୌତୁକରେ ମାତିଲେ ଯେ ତାଙ୍କ ଜମିଦାରିର ବାହାରକୁ ମଧ୍ୟ ଶୁଣାଗଲା ।

ଜମିଦାରଙ୍କ ହଲ୍‌ରେ ଖାଇବାର ବନ୍ଦୋବସ୍ତ ହୋଇଥିଲା । ଖାଇବା ପାଇଁ ନାନା ରକମର ଖାଦ୍ୟ ପ୍ରଚୁର ପରିମାଣରେ ତିଆରି ହୋଇଥିଲା । ସମସ୍ତେ ତୃପ୍ତିର ସହିତ ଭୋଜନ କରି ସାରିବା ପରେ ଜମିଦାର କହିଲେ, "ଏବେ ଆପଣମାନେ ପଡ଼ିଆକୁ ଚାଲନ୍ତୁ । ସେଠାରେ କିଛି ଖେଳ କସରତର ବ୍ୟବସ୍ଥା ଅଛି ।"

ଏହା ଶୁଣି ଅଭ୍ୟାଗତ ଲୋକେ ପଡ଼ିଆକୁ ଯାଇ ଅର୍ଦ୍ଧ ବୃତ୍ତାକାରରେ ଘାସ ଉପରେ ବସି ପଡ଼ିଲେ ।

ଜଣେ କଏ କହିଲେ, "ଏପରି ମଉଜମଜଲିସରେ ଜଣେ କାହାକୁ ଉତ୍ସବର ରାଣୀ କରିବା ଦରକାର।" ସଙ୍ଗେସଙ୍ଗେ ଉପସ୍ଥିତ ଯୁବକମାନେ ଚିତ୍କାର କଲେ, "ନିଶ୍ଚୟ, ନିଶ୍ଚୟ ! ତା ନହେଲେ ଏଡ଼େ ବଡ଼ ଉତ୍ସବ ମାଟି ହୋଇଯିବ ।"

ଏ ଉତ୍ସବରେ ଯେତେ ଯୁବତୀ ଥିଲେ ସେମାନଙ୍କ ଭିତରେ ମେରିଆନ୍ ସବୁଠାରୁ ସୁନ୍ଦରୀ; ତେଣୁ ତାକୁ ଉତ୍ସବର ରାଣୀ କରିବାରେ କାହାରି କିଛି କହିବାର ନଥିଲା। ସମସ୍ତେ ତାକୁ ଆଦରରେ ଆଣି ରାଣୀର ଆସନରେ ବସାଇ ଦେଲେ । ଯଥାବିଧି 'ରାଣୀ'ଙ୍କର ଅଭିଷେକ ହେଲା। ଗୋଟିଏ ଟେବୁଲ ଉପରେ ସୁନ୍ଦର ଚଉକିଟିଏ ରଖି ଜମିଦାର 'ରାଣୀ'ଙ୍କ ପାଇଁ 'ସିଂହାସନ' କରି ଦେଇଥିଲେ।

ସିଂହାସନରେ ବସିଲା ପରେ ମେରିଆନ୍ ହସ ହସ ମୁଖରେ କହିଲା, "ମୋର ଆଦେଶ ଯେ ଯୁବକମାନେ ପରସ୍ପର ମଧ୍ୟରେ ମଲ୍ଲଯୁଦ୍ଧ କରି ନିଜ ନିଜ ଶକ୍ତିର ପରିଚୟ ଦିଅନ୍ତୁ ।"

ଏହା ଶୁଣିଲାକ୍ଷଣି ରବିନ୍ ଉତ୍ତେଜିତ ହୋଇଉଠିଲା। ସେ ତା ନିଜ ଅଞ୍ଚଳରେ ଅନ୍ୟାନ୍ୟ ଯୁବକଙ୍କ ସହିତ ଅନେକବାର ମଲ୍ଲଯୁଦ୍ଧ ପ୍ରଭୃତି କ୍ରୀଡ଼ା କୌତୁକରେ ଯୋଗ ଦେଇଥିଲା । ଅବଶ୍ୟ ନଟିଙ୍ଗ୍-ହାମରେ ସେ ଏକବାରେ ଅପରିଚିତ; ସେ କାହାରି ବିଷୟରେ କିଛି ଜାଣେ ନାହିଁ। କିନ୍ତୁ ସୁନ୍ଦରୀ ମେରିଆନ୍ ଆଗରେ ଶକ୍ତି ଓ କୌଶଳ ଦେଖାଇବାକୁ ତାର ମନ ଅସ୍ଥିର ହୋଇ ଉଠିଲା ।

ସେ ଜାଣିଥିଲା ଯେ ତାର ବିପକ୍ଷମାନେ ଲଠି ଯୁଦ୍ଧରେ ଖୁବ୍ ପାରଦର୍ଶୀ। ତଥାପି ସେ ସାହସ ସହିତ ଭୀଷଣ ଯୁଦ୍ଧ କଲା । ସେ ପିଲା ଦିନେ ଏଥିରେ ଯେଉଁ ଶିକ୍ଷା ପାଇଥିଲା, ତାହା ବେଶ୍ କାମରେ ଆସିଲା ? ଜଣକ ପରେ ଜଣକୁ ସେ ଲଠି ଯୁଦ୍ଧରେ ହରେଇ ଦେଲା । ତାର ବିପକ୍ଷମାନେ ଏହା ଦେଖି ଯେତିକି ବିସ୍ମିତ ହେଲେ, ରବିନ୍

ସେତିକି ଆନନ୍ଦିତ ହେଲା । ରବିନ୍‌ର ଲାଠି ତାର ପ୍ରତିପକ୍ଷଙ୍କ ମୁଣ୍ଡ ଉପରେ ଠିକ ପରି ବୁଲୁଥାଏ; କିନ୍ତୁ ସେମାନଙ୍କ ଲାଠି ସେତେ ଚଞ୍ଚଳ ଚଳୁ ନଥାଏ । ଶେଷରେ ରବିନ୍ ଏପରି କୌଶଳରେ ଲାଠିମାରେ ଯେ ପ୍ରତିବାଦୀର ଲାଠି ତା ହାତରୁ ଖସିପଡ଼େ ।

ରବିନ୍‌ର ଏପରି ଯୁଦ୍ଧକୌଶଳ ଦେଖି ମେରିଆନ୍‌ର ବଡ଼ ଆନନ୍ଦ । ତାପରେ ତରବାରି ଖେଳ ହେଲା । ରବିନ୍ ଏଥିରେ ମଧ୍ୟ ଯୋଗ ଦେଲା । ମେରିଆନ୍‌ର ମନ ଗର୍ବ ଓ ଆନନ୍ଦରେ ଫୁଲିଗଲା । ତାର ସାଥୀ ରବିନ୍ କେଡ଼େ ବଳୁଆ, କେଡ଼େ କୌଶଳୀ ? ସେ ତରବାରି ଖେଳ ଦେଖୁଥାଏ । ମାତ୍ର ଦୁଇଜଣ ଖେଳରେ ସମାନ ହେଲେ ସିନା ଖେଳ ଦେଖିବାରେ ଆନନ୍ଦ । ରବିନ୍ ଯେପରି ପ୍ରଖର ଗତିରେ ବିଜୁଳି ପଡ଼ ଖଣ୍ଡା ଚଳାଉଥାଏ, ତାର ବିପକ୍ଷମାନେ ତା କରି ପାରୁନଥାନ୍ତି । ତେଣୁ ଅତି ଅଳ୍ପ ସମୟ ଭିତରେ ଜଣକ ପରେ ଜଣେ ରବିନ୍ ପାଖରେ ହାରିଗଲେ । ଅବଶ୍ୟ ସେମାନେ ପ୍ରାଣପଣେ ଚେଷ୍ଟା କରୁଥିଲେ । ସେମାନଙ୍କ ରାଗ ହେଲା ଯେ, କାହୁଁ ଗୋଟାଏ ଅଜଣା ଅଶୁଣା ଟୋକା ଆସି ସମସ୍ତଙ୍କୁ ହରେଇ ଦେଲା । ଯେତେ ଚେଷ୍ଟା କଲେ କଅଣ ହେବ ? ଯେତେ ପ୍ରକାରର ଖେଳ ହେଲା, ସବୁଥିରେ ରବିନ୍ ହିଁ ଜିଣିଲା ।

ଉତ୍ସବର ରାଣୀ ଉଚ୍ଚ ସ୍ୱରରେ କହିଲେ, "ସାବାସ୍ ରବିନ୍ ।"

ଶେଷରେ ଆଉ ଗୋଟିଏ ମାତ୍ର ଖେଳ ବାକି ଥାଏ—ଧନୁଶର ଖେଳ । ମେରିଆନ୍‌ର ଭାରି ଇଚ୍ଛା ଥାଏ, ଏଥିରେ ମଧ୍ୟ ଯେପରି ରବିନ୍‌ର ଜୟ ହୁଏ । ତାର ଖୁବ୍ ବିଶ୍ୱାସ ଥାଏ ଯେ ରବିନ୍ ଏଥିରେ ମଧ୍ୟ ଜିଣିବ । କିନ୍ତୁ ଜମିଦାରଙ୍କର ମନରେ ସନ୍ଦେହ ରହିଥାଏ । ସେଠାର ଯୁବକମାନେ ଶର ମାରିବାରେ କିପରି ନିପୁଣ, ତାଙ୍କୁ

ଜଣାଥିଲା । ତେଣୁ ତାଙ୍କ ଭଣଜା ରବନ୍ ଯେ ସେମାନଙ୍କୁ ପରାସ୍ତ କରି ପାରିବ, ଏପରି ଆଶା ତାଙ୍କର ନଥିଲା ।

ରବନ୍‌ର ମାଁଆ ଭାଇଙ୍କ ପାଖରେ ବସି ଖେଳ ଦେଖୁଥିଲେ । ଜମିଦାର ଚୁପ୍ ଚୁପ୍ କରି ତାଙ୍କ କାନରେ କହିଲେ, "ଅବଶ୍ୟ ରବନ୍ ଦେହରେ ବେଶ୍ ବଳଅଛି । ତାର ସମବୟସ୍କ ଯୁବକମାନେ ତାକୁ ପାରେଲେ ନାହିଁ । କିନ୍ତୁ ଶର ମାରିବା ଖାଲି ବଳର କଥା ନୁହେଁ । ଲକ୍ଷ ଠିକ୍ କରି ଶର ମାରିବା ଭିନ୍ନ କଥା ।

ପରୀକ୍ଷାର ସମୟ ହେଲା । ଶର ମାରିବାରେ ରବନ୍ ବହୁକାଳ ଧରି ଅଭ୍ୟାସ କରିଥିଲା । ତାର ପାଳି ପଡ଼ିବାରୁ ସେ ତାର ସବୁ କୌଶଳ ପ୍ରୟୋଗ କଲା । ପିଲାଟି ବେଳୁଁ ସାର୍ ଗାଏ ଏବଂ ତାଙ୍କ ବାର୍ହା ମାରିବା କଥା ଶୁଣିବା ଦିନୁଁ ସେ ଧନୁଶର ବ୍ୟବହାର କରିବା ଶିଖି ଆସିଥିଲା । ଏବେ ସେ ଅଭ୍ୟାସ ତାର କାମରେ ଲାଗିଲା ।

ରବନ୍‌ର ଶର ଲକ୍ଷ୍ୟ ସ୍ଥାନର ଠିକ୍ ମଧ୍ୟସ୍ଥଳରେ ଭେଦକଲା । ଗୋଟିଏ ଶ୍ୱେତ ଚନ୍ଦ୍ରାକାର ସ୍ଥାନ ଲକ୍ଷ୍ୟ ରୂପେ ସ୍ଥିର କରା ଯାଇଥିଲା । ଅନ୍ୟ କେତେ ଜଣଙ୍କର ଶର ସେହିପରି ଲକ୍ଷ୍ୟ ଭେଦ କରିବାରୁ କିଏ ଜିଣିଲା ସ୍ଥିର ହୋଇ ପାରିଲା ନାହିଁ । ତେଣୁ ଅନ୍ୟ ଏକ ଉପାୟରେ ଏହା ସ୍ଥିର କରିବା ଉଚିତ ବୋଲି ଅନେକେ କହିଲେ । ପ୍ରତିଦ୍ୱନ୍ଦୀ-ମାନେ ଉତ୍ସବର ରାଣୀ ମେରିଆନ୍‌ଙ୍କୁ କହିଲେ, "କିପରି ଏଥିରେ ଶ୍ରେଷ୍ଠ ବିଜେତା ବଛା ଯିବେ, ତାହା ଆପଣ ସ୍ଥିର କରି ଦିଅନ୍ତୁ ।"

ମେରିଆନ୍ କଅଣ କହିବେ ବିଚ୍ଛୁରୁଛନ୍ତି, ଏହି ସମୟରେ ରବନ୍ ମେରିଆନ୍‌ଙ୍କ ନିକଟକୁ ଯାଇ ତାଙ୍କ କାନରେ ଚୁପ୍ ଚୁପ୍ କରି କଣ କହିଲା । ସେ ଟେବୁଲରୁ ଡେଇଁ ପଡ଼ିବା ସଙ୍ଗେ ସଙ୍ଗେ

ମେରିଆନ୍ କହିଲେ, "ବେଶ୍, ଏ ତ ସୁନ୍ଦର ପ୍ରସ୍ତାବ ।" ତା' ପରେ ସେ ଲୋକମାନଙ୍କୁ ଲକ୍ଷ୍ୟ କରି କହିଲେ, "ମୋର ଆଦେଶ ଏହି ଯେ, ଗୋଟିଏ ସରୁ କାଣ୍ଡନଳ ସିଧା ହୋଇ ଭୂମିରେ ପୋତା ଯିବ । ଚାଳିଶ ପାହୁଣ୍ଡ ଦୂରରେ ରହି ପ୍ରତିଦ୍ୱନ୍ଦ୍ୱୀମାନେ ଶର ମାରିବେ । ଯାହାର ଶର କାଣ୍ଡନଳଟିକୁ ଭେଦ କରିବ ସେ ବିଜୟୀ ବୋଲି ଜଣାଯିବ ।"

ପ୍ରତିଦ୍ୱନ୍ଦ୍ୱୀ ଯୁବକମାନେ ବିସ୍ମୟରେ ଚାହିଁ ରହିଥାନ୍ତି । ରବିନ୍ ଗୋଟିଏ କାଣ୍ଡନଳ ଆଣି ଭୂଇଁରେ ପୋତିଦେଲି । ଦର୍ଶକମାନେ ଅନେକେ ହସୁଥାନ୍ତି ।

ଜଣେ କହିଲି, "ଏ ଗୋଟାଏ କଅଣ ? ଏପରି ଗୋଟାଏ ସରୁ କାଣ୍ଡନଳକୁ ଏତେଦୂରରୁ ଶରରେ ଭେଦିବା ଅସମ୍ଭବ ।" ଅନ୍ୟମାନେ ମଧ୍ୟ ସେହିପରି ମତ ପ୍ରକାଶ କଲେ ।

ରବିନ୍ କହିଲି, "ତେବେ ଆପଣମାନେ ଦେଖନ୍ତୁ ।"

ଏହା କହି ସେ କାଣ୍ଡନଳଠାରୁ ଚାଳିଶ ପାହୁଣ୍ଡ ପଛକୁ ଚାଲିଗଲି । ତା ପରେ ଅତି ସାବଧାନରେ ଲକ୍ଷ୍ୟ ସ୍ଥିର କରି ଶର ମାରିଲି । ସମସ୍ତେ ଚୁପ୍ ରହି କାଣ୍ଡନଳଟିକୁ ଚାହିଁ ରହିଥାନ୍ତି । କାହାରି ନିଶ୍ୱାସ ନେବା ଶବ୍ଦ ମଧ୍ୟ ଶୁଣାଯାଉ ନ ଥାଏ ।

ରବିନ୍‌ର ଶର କାଣ୍ଡନଳରେ ଏପରି ବାଜିଲି ଯେ ସେଇଟି ଠିକ୍ ମଝିରୁ ଦୁଇ ଫାଳ ହୋଇ ଫାଟିଗଲି । ସମସ୍ତେ ରବିନ୍‌ର ପ୍ରଶଂସା କରି ଜୟଧ୍ୱନି କଲେ ।

ସେଦିନ ରବିନ୍‌ର ମାଆଙ୍କ ମନରେ ଖୁବ୍ ଗର୍ବ । ପୁଅର ପ୍ରଶଂସା ଶୁଣିଲେ କେଉଁ ମାଆର ଗର୍ବ ନ ହେବ ? କିନ୍ତୁ ମେରିଆନ୍ ତାର ଏହି ନଆ ବନ୍ଧୁଟିର କୃତିତ୍ୱ ଦେଖି ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହୋଇ ପଡ଼ିଲି ।

---

( ୪ )

# ବନ୍ଦୀଶାଳାରୁ ପଳାୟନ

ରବନ୍ ଓ ତାର ମାଆ ଷ୍କୋୟାର ଗାମଓୟେଲଙ୍କ ଘରେ ସପ୍ତାହକରୁ ବେଶିଦିନ ରହିଲେ । ସେମାନେ ଆଉ କିଛି ଦିନ ସେଠାରେ ରହିଥାନ୍ତେ; କିନ୍ତୁ ଏପରି ଗୋଟିଏ ଘଟନା ଘଟିଲା ଯେ ଆଉ ବେଶିଦିନ ରହିବା ସେମାନଙ୍କ ପକ୍ଷେ ସମ୍ଭବପର ହେଲନାହିଁ । ସେମାନେ ନିଜ ଗ୍ରାମକୁ ଶୀଘ୍ର ଫେରି ଆସିବାକୁ ବାଧ ହେଲେ ।

ଜମିଦାରଙ୍କ ଘରେ ଯେଉଁ ଦିନ ଭୋଜି ହେଲା ତା ପରଦିନଠାରୁ ସେଠାର ଗ୍ରାମବାସୀମାନଙ୍କ ଭିତରେ ରବନ୍ ଅତି ପ୍ରିୟ ହୋଇ ଉଠିଲା । ସବୁ ପ୍ରକାର ଖେଳ ତାମସା ଓ ଦୁଷ୍ଟାମିରେ ରବନ୍ ନେତୃତ୍ୱ ନିଏ । ଜମିଦାର ମନେ କଲେ ଯେ ରବନ୍ ଗାଁରେ ରହୁଥିଲା । ତେଣୁ ତାର ସ୍ୱଭାବ ଏପରି ଉଗ୍ର ହୋଇଛି । କିନ୍ତୁ ରବନ୍‌ର ମାଆ ଜାଣିଥିଲେ ଯେ, ରବନ୍‌ର ପ୍ରକୃତି ହେଉଛି ଦୁଃସାହସିକ କାର୍ଯ୍ୟ କରିବା । ତାହାର ଏହି ପ୍ରକୃତି ସହଜରେ ମେଣ୍ଟିବାର ନୁହେଁ ।

ମେରିଆନ୍ ଅନେକ ସମୟରେ ରବନ୍‌ର ପାଖେ ପାଖେ ରହୁଥିଲା । ସେ ମଧ୍ୟ ତାହାର ମାମୁଁଙ୍କ ଘରେ ସପ୍ତାହେ ପର୍ଯ୍ୟନ୍ତ ରହିଲା । ରବନ୍ ଓ ମେରିଆନ୍ ଏକାଠି ରହିବା ସମୟରେ ନାନା କ୍ରୀଡ଼ା କୌତୁକରେ ସେମାନଙ୍କର ସମୟ ଆନନ୍ଦରେ କଟିଯାଉଥିଲା ।

ଦିନେ ରବନ୍ ଘର ଭିତରକୁ ପଶିଆସି ବଡ଼ପାଟିରେ କହିଲା, "ଆମେ ଏ ମେଳା ନଦେଖି ଛାଡ଼ିବା ନାହିଁ ।"

ରବନ୍ ଓ ମେରିଆନ୍ ଗ୍ରାମରୁ ଶୁଣିଥିଲେ ଯେ ସେଦିନ ନଟିଂହାମ୍‌ରେ ଗୋଟିଏ ବାର୍ଷିକ ମେଳା ହେବ ।

ଉଇଲ୍ କହିଲା, "ଏ ସହରର ଲୋକେ ତୋ ପ୍ରତି ଭଲ ବ୍ୟବହାର କରିବା ଆଶା ନାହିଁ । ଆମେ ପ୍ରତିବର୍ଷ ମେଳାକୁ ଯାଉଁ । ପ୍ରତିବର୍ଷ ସେହିକଥା ହେଉଅଛି । ନଟିଂହାମ୍ ସହରର ଲୋକେ ମୂର୍ଖ । ସେମାନେ ଆମପରି ଗାଉଁଲି ଲୋକମାନଙ୍କୁ ଘୃଣା ଦୃଷ୍ଟିରେ ଦେଖନ୍ତି । ଏହିଥିରୁ ପ୍ରତିବର୍ଷ କିଛି ନା କିଛି ଗୋଳମାଳ ହୁଏ ।"

ଏହା ଶୁଣି ରବନ୍ ହସି ହସି କହିଲା, "ଆଚ୍ଛା, ତେବେ ଏ ବର୍ଷ ଆମେ ସେମାନଙ୍କୁ ଆମ କରାମତି ନ ଦେଖାଇ ଛାଡ଼ିବା ନାହିଁ ।"

ମେଳା ପୂରା ଜମିଥାଏ । ରବନ୍ ଓ ମେରିଆନ୍ ଦଳେ ଯୁବକ ଯୁବତୀଙ୍କୁ ଘେନି ନଟିଂହାମ୍‌ରେ ପ୍ରବେଶ କଲେ । ମେଳାରେ ଦୋକାନ ଗୁଡ଼ିକ ଖୁବ୍ ଆଡ଼ମ୍ବରରେ ସଜା ହୋଇଥାଏ । ଦୋକାନିମାନେ ଏମାନଙ୍କ ଆଡ଼କୁ ଚାହିଁଲେ ନାହିଁ । କିନ୍ତୁ ନଟିଂହାମ୍‌ର କେତେକ ଯୁବକ ଏମାନଙ୍କୁ ଚିହ୍ନି ପାରିଲେ ଏବଂ ସଙ୍ଗେ ସଙ୍ଗେ ରବନ୍ ଓ ତାହାର ସଙ୍ଗୀମାନଙ୍କୁ ନାନା ପ୍ରକାର ଅପମାନ ଦେବାକୁ ଲାଗିଲେ ।

ଏଥି ପୂର୍ବରୁ ରବନ୍ କୌଣସି ମେଳା ଦେଖି ନଥିଲା । ନଟିଂହାମ୍‌ର ମେଳା ତା ପକ୍ଷରେ ସମ୍ପୂର୍ଣ୍ଣ ନୂଆ । ସେ ଏହିସବୁ ଅପମାନକୁ ଖାତିର ନକରି ମେଳାର କେଉଁଠାରେ କଣ ହେଉଛି ତାହା ଲକ୍ଷ୍ୟ କରୁଥାଏ ; କିନ୍ତୁ ଯେତେବେଳେ ସହରର ଲୋକେ ଏମାନଙ୍କ ପ୍ରତି ବିଦ୍ରୂପ କରି ଚିତ୍କାର କଲେ, ସେତେବେଳେ ରବନ୍ ଆଉ ସହି ପାରିଲା ନାହିଁ । ସେ ଏହାର ପ୍ରତିକାର କରିବାକୁ ସ୍ଥିର କଲା ।

ସେ ସାଥୀମାନଙ୍କୁ କହିଲା, "ସାଥୀମାନେ, ଆସ ଏ ଦୋକାନ-ଗୁଡ଼ାକ ଭାଙ୍ଗି ପକାଇବା ।" ଚାହିଁ ଚାହିଁ ତିନୋଟି ଦୋକାନର

ଜନଷପନ୍ଥ ଏଣେ ତେଣେ ଖେଳେଇ ହୋଇ ପଡ଼ିଲା । ଘଟଣା କଣ, ତାହା ସହରର ଲୋକେ ହଠାତ୍ ବୁଝି ପାରିଲେ ନାହିଁ । ଅତି ଅଳ୍ପ ସମୟ ପରେ ସେମାନେ ସାହାଯ୍ୟ ପାଇଁ ଡାକ ପକାଇଲେ । ସଙ୍ଗେ ସଙ୍ଗେ ସହରର ଅନେକ ଲୋକ ଠେଙ୍ଗା ବାଡ଼ି ଧରି ରବିନ୍‌ର ଦଳ ଉପରେ ଆକ୍ରମଣ କଲେ । ଏଥିରେ ସେ ଦବି ନଯାଇ ସେମାନଙ୍କ ସହିତ ଯୁଦ୍ଧ କରିବାକୁ ବାହାରି ପଡ଼ିଲା ।

ଜଣେ ମୋଟା ଲୋକକୁ ମାଡ଼ିବସି ରବିନ୍ ଚିତ୍କାର କଲା, "ଗାଉଁଲି ପିଲାମାନେ କପରି, ଏବେ ଦେଖ୍ ।"

ରବିନ୍ ଏହି ଗୋଳମାଳର ମଝିରେ ଥାଏ ଏବଂ ସମସ୍ତଙ୍କୁ ପ୍ରହାର କରୁଥାଏ । ହଠାତ୍ ଅଧିକାଂଶ ସହରୀ ଲୋକ ଆଉ ଲଢ଼େଇ ନକରି ଅନ୍ୟ ଦିଗରେ ପଳାଇବାକୁ ଲାଗିଲେ । ସତେ ଯେପରିକି ସେମାନେ ଗୋଟାଏ ଭୂତ ଦେଖି ଭୟରେ ପଳାଇଲେ ।

ସେମାନଙ୍କର ପଳାଇବାର କାରଣ ଥିଲା । ଅବଶ୍ୟ ଭୂତ ଭୟରୁ ନୁହେଁ । ସେମାନେ ଦେଖି ପାରିଲେ ଯେ ସହରର ଶେରିଫ୍ * ଦଳେ ସିପାହୀଙ୍କ ସହିତ ଘୋଡ଼ାରେ ଚଢ଼ି ମେଳାକୁ ଆସୁଛନ୍ତି ।

ରବିନ୍‌ର ସାଥୀମାନେ ଡାକଲେ, "ଆରେ ରବିନ୍ ଚାଲିଆ, ପଳାଇ ଯିବା ।" କିନ୍ତୁ ରବିନ୍ ସେମାନଙ୍କ କଥା କାନକୁ ନେଲାନାହିଁ । ସେତେବେଳକୁ ସେଠାରେ ଆଉ ଯେତେଜଣ ସହରର ଲୋକଥିଲେ, ସେ ସେମାନଙ୍କୁ ମାଡ଼ ଦେବାରେ ଲାଗିଥାଏ ।

ରବିନ୍‌ର ପାହାରରେ ଜଣେ ଲୋକ ଭୂଇଁରେ ପଡ଼ିଗଲା । ଏହା ଦେଖି ଶେରିଫ୍ ହୁକୁମ ଦେଲେ, "ଏଇ ଲୋକଟାକୁ ଧରି ଆଣ ।"

---

* ଶେରିଫ୍—ରାଜାଙ୍କ ଦ୍ୱାରା ନିଯୁକ୍ତ ଜିଲାର ଶାସନକର୍ତ୍ତା । ଶାନ୍ତିରକ୍ଷା କରିବା, ଦୋଷୀକୁ ଧରି ଦଣ୍ଡଦେବା ଇତ୍ୟାଦି ତାଙ୍କର କାର୍ଯ୍ୟ ।

ଶେରିଫ୍‌ଙ୍କ ସିପାହୀମାନେ ରବିନ୍ ଆଡକୁ ଧାଇଁଲେ । ସମସ୍ତେ ମିଳି ରବିନ୍‌କୁ କୌଣସି ମତେ ଜବତ କରି ଶେରିଫ୍‌ଙ୍କ ପାଖକୁ ଧରି ଆଣିଲେ । ତଥାପି ରବିନ୍ ସେମାନଙ୍କ ହାତରୁ ଖସି ଯିବାକୁ ଚେଷ୍ଟା କରୁଥାଏ ।

ଶେରିଫ୍ ଗର୍ଜନ କରି କହିଲେ, "ତୁ ବେଆଇନ୍ କାମ କରିଛୁ । ତୁ ଗୋଟାଏ ଲୋକକୁ ମାଡ଼ ଦେଇଛୁ । ସେଥିପାଇଁ ତୋର ଉପଯୁକ୍ତ ବିଚାର ହେବ ।" ତାପରେ ସିପାହୀମାନଙ୍କୁ ଚାହିଁ କହିଲେ, "ଏ ଲୋକଟାକୁ ନେଇ କଏଦୀଖାନାରେ ରଖ ।"

ଶେରିଫ୍‌ଙ୍କର ଏତେ ଗୁଡ଼ାଏ ସିପାହୀଙ୍କ ବିରୁଦ୍ଧରେ ରବିନ୍ କିଛି କରି ପାରିବାର ଉପାୟ ନଥିଲା । ସିପାହୀମାନେ ତାକୁ ଟାଣି ଟାଣି ସହରର କଏଦୀଖାନାକୁ ନେଲେ ଓ ସେଠାରେ ଗୋଟିଏ ଛୋଟ କୋଠରୀରେ ବନ୍ଦୀ କରି ରଖିଲେ ।

କୋଠରୀ ଭିତରେ କିଛି ନଡ଼ା ବିଛା ହୋଇଥିଲା । ତାହାରି ଉପରେ ବସି ରବିନ୍ ଭାବିଲା, "ମୁଁ ତ ଧରା ପଡ଼ିଲି । ଅନ୍ୟମାନଙ୍କର ଅବସ୍ଥା କଣ ହେଲା ? ମେରିଆନ୍ ଖସି ଗଲା କି ନାହିଁ ?"

ବର୍ତ୍ତମାନ ରବିନ୍ ଚାରିଆଡ଼କୁ ନିରେଖି ଦେଖିଲା । ସେ ଯେଉଁ ଘରେ ବନ୍ଦୀ ହୋଇଥିଲା, ତାହା ଲମ୍ବ ଓସାରରେ ଆଠଫୁଟ ଲେଖାଏ ହେବ । ସେ କାଳରେ କଏଦୀଖାନା ସବୁ କାଠ ପଟାରେ ତିଆରି ହେଉଥିଲା । ଛାତପାଖରେ ଗୋଟିଏ କଣା ଥାଏ । ସେହି କଣା ବାଟେ ଘର ଭିତରକୁ ଆଲୁଅ ଆସେ । ରବିନ୍ ଦେଖିଲା ଯେ ତାହାର କଏଦୀ-ଘରଟି ଅତି ପୁରୁଣା । ଛାତରେ ଅନେକ କଣା ହୋଇଛି । ସେହି କଣା ବାଟେ ଚାହିଁଲେ ଉପରେ ଥିବା ନଡ଼ା ଛପର ଗୁଳ ଦିଶୁଥାଏ ।

ରବିନ୍ ମନେମନେ ବିଚାରିଲା, "ମୁଁ ଯେବେ ଏ ଘରୁ ପଳାଇ ନପାରେ, ତାହା ହେଲେ ମୋ ପରି କେହି ବୋକା ନଥିବେ ।"

ରାତ୍ର ଆସିଲା । ଅନ୍ଧାର ହେବାରୁ ରବନ୍ ସେଇ କଏଦୀ ଘରର ଉପରକୁ ଚଢ଼ିଲା । ଗ୍ୟଲର କେତେକ ଅଂଶ ଭାଙ୍ଗି ଗୋଟିଏ ଫାଙ୍କ କରିଦେଲା । ଏହି ଫାଙ୍କ ବାଟେ ସେ ସହଜରେ ଗ୍ୟଲ ଉପରେ ଉଠିଯାଇ ଧୀରେ ତଳକୁ ଓହ୍ଲାଇ ପଡ଼ି ପଳାଇ ଗଲା ।

ରବନ୍‌ର ପଳାଇ ଯିବା ଖବର ଶେରିଫ୍ ଶୁଣି ପାରିଲେ । ସେ ହୁକୁମ ଦେଲେ, "ଯେକୌଣସି ମତେ ରବନ୍‌କୁ ଧରି ଆଣିବାକୁ ହେବ । ଜୀବନ୍ତ ହେଉ ବା ମୃତ ହେଉ ଯେକୌଣସି ଅବସ୍ଥାରେ ରବନ୍‌କୁ ଆଣିବା ଦରକାର ।"

ଏଣେ ରବନ୍ ବନ୍ଦୀଶାଳାରୁ ପଳାଇ ଆସି ସ୍କୋୟାର ଗାମ‌ଓୟେଲଙ୍କ ଘରେ ପହଞ୍ଚିଲା । ସେ ମନ ଦୁଃଖରେ ମେରିଆନ୍ ଠାରୁ ବିଦାୟ ନେଇ ନିଜ ଗ୍ରାମକୁ ବାହାରିଲା । ମାଆଙ୍କୁ ଘୋଡ଼ା ଉପରେ ବସାଇ ସେ ଚାଳିଶ ମାଇଲରୁ ବେଶୀ ବାଟ ଚାଲିଲା । ସେ ଭାବୁଥାଏ, "ବିନା ଦୋଷରେ ମୋତେ ବନ୍ଦୀ ଘରେ ରଖିବା ଘୋର ଅନ୍ୟାୟ ! ମୋର ଅପରାଧ ବା କଣ ? ମୁଁ କାହାକୁ ମାରି ପକାଇ ନାହିଁ ।"

ଶେଷରେ ସେ ନିଜ ଘରେ ପହଞ୍ଚିଲା; କିନ୍ତୁ ସେଠାରେ ମଧ୍ୟ ସେ ଶାନ୍ତିରେ ରହି ପାରିଲା ନାହିଁ । ସେ ଖବର ପାଇଲା ଯେ ଶେରିଫ୍‌ଙ୍କର ସିପାହୀମାନେ ତାକୁ ଖୋଜି ବୁଲୁଛନ୍ତି । ତାହାର ବାପା ଓ ଶେରିଫ୍‌ଙ୍କ ଭିତରେ ଯେପରି କୌଣସି ଝଗଡ଼ା ନହୁଏ, ତାହାହିଁ ରବନ୍‌ର ପ୍ରଧାନ ଚିନ୍ତା ଥିଲା । ତେଣୁ ସେ ସ୍ଥିର କଲା ଯେ ସେ ଘର ଛାଡ଼ି କୁଆଡ଼େ ଚାଲିଯିବ । ଏହିପରି ବିଚାର କରି ସେ ପ୍ରତିଜ୍ଞା କଲା ଯେ ଗୋଳମାଳ ତୁଟି ନଯିବା ଯାଏ ସେ ବଣ ଭିତରେ ଲୁଚି ରହିବ । ତାହା ହେଲେ ତାର ବାପାଙ୍କର କିଛି ଅସୁବିଧା ହେବନାହିଁ ।

ସେହିଦିନ ରବନ୍ ଘରୁ ଚାଲି ଗଲା । ଏଣିକି ତାହା ଜୀବନରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେଲା ।

( ୫

# ରବିନ୍ ହୁଡ଼ ଦରକାର—ଜୀବନ୍ତ ହେଉ ବା ମୃତ ହେଉ

ପରଦିନ ଦ୍ୱିପ୍ରହର ବେଳେ ଶେରିଫ୍‌ଙ୍କର ସିପାହୀମାନେ ସ୍କୋୟାର ଗାମଓ୍ୱେଲ୍‌ଙ୍କ ଘରେ ପହଞ୍ଚିଲେ । ସେମାନଙ୍କର ନେତା କହିଲେ, "ସମ୍ରାଟ୍‌ଙ୍କ ନାମରେ ମୁଁ ଆଦେଶ ଦେଉଛି, ଆପଣ ରବିନ୍‌ହୁଡ଼୍‌କୁ ମୋ ହସ୍ତରେ ଅର୍ପଣ କରନ୍ତୁ ।"

ସ୍କୋୟାର ଗାମଓ୍ୱେଲ ଉତ୍ତର କଲେ, "ରବିନ୍‌ହୁଡ଼୍ ମୋ ଘରୁ କାଲିଠାରୁ ଚାଲିଗଲାଣି । ତାର ନିଜ ଘର ଏଠାରୁ ଚାଳିଶ ମାଇଲ ହେବ ।"

ଚାଳିଶ ମାଇଲ ଦୂର ବୋଲି ସିପାହୀମାନେ ଦବି ଯିବାର ପାତ୍ର ନଥିଲେ । ଶେରିଫ୍ ହୁକୁମ ଦେଇଥିଲେ ଯେ ଯେକୌଣସି ମତେ ରବିନ୍‌ହୁଡ଼୍‌କୁ ଆଣିବାକୁହିଁ ହେବ ।

ସେଦିନ ସକାଳେ ଶେରିଫ୍ ସିପାହୀମାନଙ୍କୁ କହିଥିଲେ, "ତୁମ୍ଭେମାନେ ଯେକୌଣସି ମତେ ରବିନ୍‌ହୁଡ଼୍‌କୁ ଧରିଆଣ । ଜୀଅନ୍ତା ଆଣି ନପାରିଲେ ତାର ଶବକୁ ଆଣି ଆସ । ମୁଁ ନଟିଂହାମ୍‌ର ଶେରିଫ୍ । ସେ କଣ ମତେ ବୋକା ବନାଇ ଚାଲିଯିବ ! ମୋର ଜେଲଖାନାରୁ ବନ୍ଦୀ ପଳାଇଯିବ ? ଯେଉଁମାନେ ଦେଶରେ ବେଆଇନ୍ କାମ କରିବେ ସେମାନଙ୍କୁ ଦଣ୍ଡ ଦେବା ମୋର କାର୍ଯ୍ୟ । ତା କରି ନପାରିଲେ, ମୁଁ ଖୋଦ୍ ରାଜାଙ୍କ ପାଖେ ଦାୟୀ ହେବି । ଯାଅ, ମୋର ହୁକୁମ—ରବିନ୍‌ହୁଡ଼୍‌କୁ ଧରିଆଣ । ଜୀଅନ୍ତା ଆଣି ନପାରିଲେ, ତାର ଶବକୁ ଆଣି ଆସ ।"

ସିପାହୀମାନେ ଚାଲିଲେ ମାଇଲ ବାଟ ଯାଇ ରବିନ୍‌ର କୁଡ଼ିଆ ପାଖରେ ପହଞ୍ଚିଲେ । ସେଠାରେ ରବିନ୍‌ର ବାପାଙ୍କୁ ଦେଖି ସିପାହୀମାନଙ୍କର ନେତା କହିଲେ, "ରବିନ୍‌ହୁଡ଼୍‌କୁ ଧରି ନେବାକୁ ଆମ୍ଭମାନଙ୍କୁ ହୁକୁମ୍ ହୋଇଅଛି । ରାଜାଙ୍କ ନାମରେ ଆମ୍ଭେ ଆଦେଶ କରୁଅଛୁ—ତାହାକୁ ଆମ ହାତରେ ଅର୍ପଣ କର ।"

ରବିନ୍‌ର ବାପା ଉତ୍ତର କଲେ, "ସେ ତ ଘରେ ନାହିଁ । ସେ ଜଙ୍ଗଲକୁ ପଳାଇ ଯାଇଅଛି । ତୁମେ ଯଦି ଜଙ୍ଗଲ ଭିତରକୁ ତାକୁ ଖୋଜିବାପାଇଁ ଯାଅ ତେବେ ଖୁବ୍ ସାବଧାନ ରହିବ । ଜଙ୍ଗଲର ସରୁ ବାଟରେ ଗଲାବେଳେ ଭୟଙ୍କର ବିପଦ ଅଛି । ବଣର ଲୋକେ ଜଙ୍ଗଲ ଭିତରେ ରହି ଶର ମାରି ପାରନ୍ତି । ସେମାନେ ଏ ବିଦ୍ୟାରେ ବଡ଼ ନିପୁଣ । ସେମାନଙ୍କ ଲାଗରୁ ବଞ୍ଚିବା ସହଜ ନୁହେଁ । ସାବଧାନ ନ ରହିଲେ ତୁମ୍ଭମାନଙ୍କ ମଧ୍ୟରୁ ହୁଏତ ଅନେକେ ଆଉ ନଟିଂହାମ୍‌କୁ ଫେରି ଯାଇ ପାରିବେ ନାହିଁ ।"

ରବିନ୍ ଯାହା କିଛି ଅନ୍ୟାୟ କରି ଥାଉ ନା କାହିଁକି, ତାର ବାପା ତାକୁ ରକ୍ଷା କରିବାକୁ ଚେଷ୍ଟା କରୁଥିଲେ । ତେଣୁ ସିପାହୀ-ମାନେ ଯେପରି ଜଙ୍ଗଲ ଭିତରକୁ ନ ଯିବେ ସେଥିପାଇଁ ସେ ଏପରି କହିଲେ ।

ସିପାହୀମାନେ ମନ ଦେଇ ତାଙ୍କ କଥା ଶୁଣିଲେ । ତଥାପି ତାଙ୍କ ଘର ଓ ଚାରିପାଖ ଖାନ୍‌ତଲାସ୍ କରି ଦେଖିଲେ ଯେ ରବିନ୍ କୌଣସିଠାରେ ଲୁଚି ରହି ନାହିଁ । ସିପାହୀମାନଙ୍କର ନେତା ତାଙ୍କ ଦଳକୁ କହିଲେ, "ଲୋକଟି ଯାହା କହିଲା ତାହା ସତ, କିନ୍ତୁ ଆମ୍ଭମାନଙ୍କୁ ନିଜର କର୍ତ୍ତବ୍ୟ କରିବାକୁ ହେବ । ଚାଲ, ଜଙ୍ଗଲକୁ ଯାଇ ରବିନ୍‌ହୁଡ଼୍‌କୁ ଖୋଜିବା ।" ଅବଶ୍ୟ ଏହା କହିଲା ବେଳେ ତାହାଙ୍କ ସ୍ୱରରୁ ନୈରାଶ୍ୟ ଜଣାପଡ଼ୁଥିଲା । ସେମାନେ ଯେ ଗୋଟିଏ

ଅପ୍ରିୟ ଓ ବିପଦ ପୂର୍ଣ୍ଣ କାର୍ଯ୍ୟ କରିବାକୁ ଯାଉଛନ୍ତି, ତାହା ସେମାନେ ବେଶ୍ ବୁଝି ପାରିଥିଲେ ।

ଜଙ୍ଗଲ ପାଖରେ ପହଞ୍ଚି ସେମାନେ ବସି ପଡ଼ିଲେ । ଜଙ୍ଗଲକୁ ଦେଖି ସେମାନେ ଏବେ ବୁଝି ପାରିଲେ ଯେ ଏଡ଼େ ନିଘଞ୍ଚ ଜଙ୍ଗଲ ଭିତରେ ପଶି ରବିନ୍‌କୁ ଖୋଜିବା କେତେ ବିପଜ୍ଜନକ । ବଣର ଗଛ ଉହାଡ଼ରେ ଯେ ସେମାନଙ୍କୁ ମାରିବା ପାଇଁ ଧନୁଶର ଧରି ଲୋକ ନ ଥିବେ, କିଏ କହିବ ? ସେତେବେଳେ ଆତ୍ମରକ୍ଷାର କିଛି ଉପାୟ ରହିବ ନାହିଁ । ଏହିପରି ବିଚାର କରି ସେମାନେ ସେଠାରୁ ବୁଲି ବାଟରେ ଯାଇ ନଟିଙ୍ଗହାମକୁ ଫେରିଗଲେ । କିଏ କାହିଁକି ଜାଣି ଶୁଣି ନିଜ ଉପରକୁ ବିପଦ ଆଣିବ ?

ଏଣେ ସେଦିନ ରବିନ୍ ଘରୁ ପଳାଇ ଯାଇ ସନ୍ଧ୍ୟାବେଳକୁ ଜଙ୍ଗଲ ପାଖରେ ପହଞ୍ଚିଲା । ଘୋର ଅନ୍ଧାର ମାଡ଼ି ଆସିଲା । ସେ ଏଣିକି କେଉଁଠାକୁ ଯିବ, କଅଣ କରିବ, ଏହି ସବୁ କଥା ଚିନ୍ତା କରି କରି ବଣ ଭିତରେ ବୁଲିବାକୁ ଲାଗିଲା ।

ସେ ମନେ ମନେ ଭାବିଲା, "ଯାହା ହେବାର ହେବ । ସେଥି-ପାଇଁ ଚିନ୍ତା କଅଣ ? ମୁଁ ତ ସ୍ୱାଧୀନ ଭାବରେ ପଦାରେ ଜୀବନ କଟାଇବାକୁ ଚାହୁଁଥିଲି । ଏଠାରେ ତ ସେ ସୁବିଧା ମିଳିବ । ତେବେ ଦୁଃଖ କଅଣ ?"

କିଛି ସମୟ ବୁଲିବା ପରେ ସେ ଗୋଟିଏ ସ୍ଥାନରେ ଗୁଡ଼ିଏ ଶୁଖିଲା ପତ୍ର ଓ ଡାଳ ଏକାଠି ଜମା କଲା । ସେ ସାଥିରେ ଝିକିମିକି ପଥର ଓ ସୋଲ ନେଇ ଥିଲା । ତାର ସାହାଯ୍ୟରେ ନିଆଁ ବାହାର କରି ସେହି ଡାଳ ପତ୍ରରେ ଲଗାଇଲା । ନିଆଁ ଜଳି ଉଠିଲା । ସେଥିରେ ତାର ଚାରିପାଖ କିଛି ଦୂର ପର୍ଯ୍ୟନ୍ତ ଉଜ୍ଜ୍ୱଳ ଦେଖାଗଲା ।

ରବନ୍ ଭାବୁଥିଲା ଯେ ସେ ବଣ ଭିତରେ ଏକାକୀ; ଆଉ କେହି ତାକୁ ଦେଖି ନାହାନ୍ତି କି ତା କଥା ଜାଣି ନାହାନ୍ତି । କିନ୍ତୁ ପ୍ରକୃତ ପକ୍ଷରେ ବଣ ଭିତରେ ଯେଉଁମାନେ ଆଇନକୁ ଏଡ଼ିବା ପାଇଁ ଲୁଚି ରହିଥିଲେ, ସେମାନେ ରବନ୍‌ର ଗତିବିଧି ଲକ୍ଷ୍ୟ କରୁଥିଲେ । ସେମାନେ ନିଆଁ ଦେଖିପାରି ଲୁଚି ଲୁଚି ରବନ୍‌ର ପାଖରେ ପହଞ୍ଚିଲେ । ରବନ୍‌ର ବୋଟିଏ ଲମ୍ବା କୁରୁତା ଥିଲା । ସେ ତାକୁ ପିନ୍ଧି ନିଆଁଠାରୁ ଅଳ୍ପ ଦୂରରେ ଭୂଇଁରେ ଶୋଇଲା । ତାକୁ ଭଲ ହୋଇ ନିଦ ହେଉ ନ ଥିଲା; କିନ୍ତୁ ସେଠାକୁ ଯେ ଅନ୍ୟ କେହି ଲୋକ ଆସିବ ସେ କଥା ତାର କଳ୍ପନାରେ ନ ଥିଲା । ବଣର ଲୋକମାନେ ହଠାତ୍ ତାକୁ ବେଢ଼ିଗଲେ । ରବନ୍ ଦେଖିଲା ଯେ ଦଳେ ଲୋକ ତାକୁ ଆକ୍ରମଣ କରିବାକୁ ଉଦ୍ୟତ ।

ସେମାନଙ୍କ ମଧ୍ୟରୁ ଜଣେ କହିଲା, "ଏଠାରେ ତୁ କଅଣ କରୁଛୁ ?" ଆଉ ଜଣେ ପଚାରିଲା, "ତୁ କିଏ ? ଚୋର ଘର କେଉଁଠି ?"

ଏଥି ଭିତରେ ରବନ୍‌ର ନିଦ ପୂରା ଭାଙ୍ଗି ଯାଇଥିଲା । ସେ ବସିପଡ଼ି ଲୋକମାନଙ୍କ ଆଡ଼କୁ ଚାହିଁ କହିଲା, "ମୁଁ ଏଠିକି ଆସିବାର କାରଣ ହେଉଛି ଯେ ଯେଉଁ ଭଦ୍ରଲୋକଙ୍କୁ ଆମ୍ଭେମାନେ ଶେରିଫ୍ ବୋଲି କହୁଁ, ସେ ମୋତେ ନଟିଙ୍ଗ୍‌ହାମର ଜେଲଖାନାରେ ଅତିଥି ହେବାକୁ ନିମନ୍ତ୍ରଣ ପତ୍ର ପଠାଇଥିଲେ । ମୁଁ ମନା କରି ଦେଲି । ତହୁଁ ମୋତେ ସାଥିରେ ନେଇ ଯିବା ପାଇଁ ତାଙ୍କର ଦଳେ ଚାକରଙ୍କୁ ପଠାଇ ଥିଲେ ।"

ଲୋକମାନେ ହସି ଉଠିଲେ । ସେମାନଙ୍କ ମଧ୍ୟରୁ ଜଣେ ପଚାରିଲା, "ତୁମେ କଅଣ ତାଙ୍କ ସାଥିରେ ଗଲ ?" ରବନ୍ ଉତ୍ତର କଲା, "ନା, ମୁଁ ନଟିଙ୍ଗହାମ୍ ନଯାଇ ଏଠାକୁ ଚାଲିଆସିଛି । ମୁଁ

ଶୁଣିଲି ଯେ ମୋ ସଙ୍ଗେ ସାକ୍ଷାତ୍ କରିବାକୁ ଶେରିଫଙ୍କର ଘୋର ଇଚ୍ଛା । ମୁଁ ଜାଣିଥାଏଁ ବା ମରେଁ ସେଥିପାଇଁ ତାଙ୍କର ଚିନ୍ତା ନାହିଁ । ମୋତେ ଜୀଅନ୍ତା ନ ପାଇଲେ ମୋର ମଡ଼ାକୁ ଦେଖିଲେ ମଧ୍ୟ ତାଙ୍କର ସନ୍ତୋଷ । ମୋର ମରିବାକୁ ଇଚ୍ଛା ନାହିଁ; ତେଣୁ ମୋତେ ମୋର ଆସ୍ଥାନ ବଦଳାଇବାକୁ ପଡ଼ିଲା । ଏହିପରି ଅବସ୍ଥାରେ ପଡ଼ି ମୁଁ ଏଠାକୁ ଆସିଛି, ଆଜି ଏଇଠାରେ ମଧ୍ୟ ରହିବି ।"

ଲୋକଙ୍କ ଭିତରେ ହସର ରୋଳ ଉଠିଲା । ତାପରେ ଏମାନେ ରବିନ୍‌କୁ କିଛି ଖାଇବା ପାଇଁ ଡାକନେଲେ । ସାଉ ଥୋଉ ଜଣେ କହିଲା—"ଆମ୍ଭେମାନେ ରାଜାଙ୍କ ହରିଣ ମାରି ତାର ମାଂସ ଖାଉଁ । ଗଛମାନଙ୍କରେ ପକ୍ଷୀର ମଧ୍ୟ ଅଭାବ ନାହିଁ । ବେଳେବେଳେ ପକ୍ଷୀମାରି ରାନ୍ଧି ଖାଉଁ ।"

ରବିନ୍ ଏମାନଙ୍କର ଦଳଭୁକ୍ତ ହୋଇ ରହିଲା ।

ଜଙ୍ଗଲର ଯେଉଁଠାରେ ରବିନ୍ ରହୁଥିଲା, ତାର ଆଖପାଖ ଅଞ୍ଚଳର ଗ୍ରାମମାନଙ୍କରେ ଲୋକେ ରବିନ୍ କିପରି ନଟିଂହାମ୍ କଏଦଖାନାରୁ ପଳାଇ ଆସିଥିଲା ସେ ବିଷୟରେ କଥାବାର୍ତ୍ତା ହୁଅନ୍ତି । କ୍ରମେ ତାହା ଗ୍ରାମରୁ ଗ୍ରାମାନ୍ତରକୁ ବ୍ୟାପିଲା । ଶେଷରେ ଡ୍ୟୋଫ୍ଟ୍ରିର ଗାମଓ୍ୱେଲ ମଧ୍ୟ ଏହା ଶୁଣିବାକୁ ପାଇଲେ । ରବିନ୍ କିପରି ତାଙ୍କ ଘରେ କେତୋଟି ଦିନ କଟାଇ ନିଜର ଅଦ୍ଭୁତ ଶକ୍ତି ଓ କୌଶଳର ପରିଚୟ ଦେଇଥିଲା, ତାହା ସ୍ମରଣ କରି ଜମିଦାର ଗର୍ବ ଅନୁଭବ କରୁଥିଲେ ।

ନାଇଟ ଓ ସ୍କୋୟାରମାନେ ଆଇନ ବଳରେ ସାଧାରଣ ଲୋକଙ୍କ ଉପରେ ଭୟଙ୍କର ଅତ୍ୟାଚାର କରୁଥିଲେ । ଗ୍ରାମବାସୀଙ୍କର କଷ୍ଟର ସୀମା ନ ଥିଲା । କୌଣସି ଗ୍ରାମବାସୀ ପକ୍ଷରେ ଅତ୍ୟାଚାର

ଅସହ୍ୟ ହେଲେ ସେ ଗ୍ରାମ ଛାଡ଼ି ଜଙ୍ଗଲକୁ ପଳାଇବାକୁ କୁଣ୍ଠିତ ହେଉ ନ ଥିଲେ । ଏପରି ପଳାତକ ଗ୍ରାମବାସୀମାନେ ସହଜରେ ରବିନ୍‌ର ଦଳରେ ଯୋଗ ଦେଉଥିଲେ । ଜଣକ ପରେ ଜଣେ ରବିନ୍‌ର ଦଳରେ ମିଶିବା ଫଳରେ ଅଳ୍ପକାଳ ମଧ୍ୟରେ ତାର ଦଳଟି ଖୁବ୍ ବଡ଼ ଆକାର ଧାରଣ କଲା । ଯେଉଁମାନେ ଆଗରୁ ବଣରେ ରହୁଥିଲେ, ସେମାନେ ଦେଖିଲେ ଯେ ରବିନ୍‌ର ଅନେକ ବନ୍ଧୁ ଓ ସହଚର ତା ସାଥିରେ ରହିବାକୁ ଆସୁଛନ୍ତି । ତେଣୁ ସେମାନଙ୍କର ଦୃଢ଼ ବିଶ୍ୱାସ ହେଲା ଯେ ରବିନ୍ ଜଣେ କ୍ଷମତାଶାଳୀ ଲୋକ; କୌଣସି ଧନୀ ଉଚ୍ଚ ପରିବାରରେ ତାର ଜନ୍ମ ହୋଇଥିବ ।

ଅବଶ୍ୟ ଭଦ୍ର ପରିବାରରେ ରବିନ୍‌ର ଜନ୍ମ । ଉଚ୍ଚ ପରିବାର ସହିତ ତାର ସମ୍ବନ୍ଧ। ତାର ମାଆ ଷ୍ଟୋପ୍ସାର ଗାମ୍‌ଓ୍ୱେଲଙ୍କ ଘର ଝିଅ । ତାର ମାତୃକୁଳରେ ଅନେକ ବିପଦ ଘଟି ଯାଇଥିଲା । କିଏ ମରିଗଲା ତ କିଏ ଜମିଦାର ଘର ଛାଡ଼ି ସାଧାରଣ ଲୋକ ଘରେ ବିବାହ କଲା । ତା ହୋଇ ନ ଥିଲେ ତ ରବିନ୍ ହଣ୍ଟିଙ୍ଗ-ଡନ୍‌ର ଅର୍ଲ * ହୋଇ ପାରି ଥାଆନ୍ତା । କିନ୍ତୁ ରବିନ୍ କେବେହେଲେ ବଡ଼ ଘରର ପୁଅ ବୋଲି ଗର୍ବ କରୁ ନ ଥିଲା ।

ଆସ୍ତେ ଆସ୍ତେ ସମସ୍ତେ ରବିନ୍‌କୁ ନେତା ବୋଲି ମାନି ନେଲେ । ଖାଲି ଯେ ରବିନ୍ ଭଦ୍ର ପରିବାରରେ ଜନ୍ମିଥିଲା, ତା ନୁହେଁ । ତା ଦେହରେ ଯଥେଷ୍ଟ ବଳ ଥିଲା । ତା ପରି କେହି ଲାଠି ବା ଖଣ୍ଡା ଚଳାଇ ପାରୁ ନ ଥିଲେ । ଧନୁରେ ଶର ମାରି ଲକ୍ଷ୍ୟ ଭେଦିବାରେ କେହି ତାର ସମକକ୍ଷ ନ ଥିଲେ ।

---

* ଅର୍ଲ୍ ସମ୍ଭ୍ରାନ୍ତ ପଦବୀ ବିଶେଷ; ଏକ ଶ୍ରେଣୀର ଜମିଦାର ଓ କ୍ଷମତାଶାଳୀ ବ୍ୟକ୍ତି ।

ସମସ୍ତେ ମିଳି ସ୍ଥିର କଲେ ଯେ ରବିନ୍ ସେମାନଙ୍କର ସର୍ଦ୍ଦାର୍ ହେବ । ତାହାର ହୁକୁମରେ ସମସ୍ତେ ଚଳିବେ ।

ଦିନେ ରାତିରେ ରବିନ୍ ଓ ତା'ର ଦଳର ଲୋକେ ଖାଇସାରି ଗୋଟିଏ ଧୂନି ଜାଳି ତା ଚାରିପାଖେ ବସିଥିଲେ । ରବିନ୍ ସେମାନଙ୍କୁ କହିଲା, "ଦେଖ, ଆମର ସବୁଠାରୁ ଭଲ ଧନୁ ଓ ଶର ଦରକାର । ଯଉକାଠ ଯେପରି ଟାଣ ସେହିପରି ଚେମଡ଼ା । ସେଥିରେ ଧନୁ ତିଆରି କରିବା । ଶରଗୁଡ଼ିକ ମଧ୍ୟ ଆହୁରି ଭଲ କରି ତିଆରି କରିବା"

ରବିନ୍ ତାର ଦଳଟିକୁ ଗଢ଼ିବାରେ ଲାଗି ପଡ଼ିଲା । ସେ ସେମାନଙ୍କୁ ଏପରି ଶିକ୍ଷା ଦେଲା ଯେ ସେମାନେ ଅଳ୍ପ ଦିନ ଭିତରେ ହତିଆର ଚଳାଇବାରେ ଧୁରନ୍ଧର ହୋଇ ଉଠିଲେ । ସେମାନେ ଧନୁଶର ତ ବ୍ୟବହାର କରୁଥିଲେ । ତାହାଛଡ଼ା ରବିନ୍‌ର ଉପଦେଶରେ ସେମାନେ ଛୁରୀର ବ୍ୟବହାର ମଧ୍ୟ ଶିଖିଗଲେ ।

ଦିନେ କଥା ପ୍ରସଙ୍ଗରେ ରବିନ୍ କହିଲା, "ଆଚ୍ଛା, ଆମର ସମସ୍ତଙ୍କର ଗୋଟିଏ ପ୍ରକାର ପୋଷାକ ହେଲେ ଭଲ ହୁଅନ୍ତା ନାହିଁ ? ଆମେ ତ ବଣରେ ରହିବା ଲୋକ । ଆମେ ବଣର ଗଛପତ୍ର ରଙ୍ଗର ପୋଷାକ ପିନ୍ଧିବା ।"

ସେମାନେ ନାନା ରଙ୍ଗର ମଇଳା, ଚିରା ପୋଷାକ ପିନ୍ଧୁଥିଲେ । ବଣର ଘାସ ପତ୍ର ସବୁଜ । ସେମାନେ ସବୁଜ ରଙ୍ଗର ପୋଷାକ ପିନ୍ଧିବାକୁ ସ୍ଥିର କଲେ । ଏପରି ପୋଷାକର ଗୋଟିଏ ସୁବିଧା ଏହି ଯେ ଏହାକୁ ପିନ୍ଧି ବଣରେ ବୁଲିବା ବେଳେ କେହି ହଠାତ୍ ଦେଖି ପାରିବ ନାହିଁ ।

ଏହାପରେ ରବିନ୍ ବିଚାରିଲା—ଆପଣା ଭିତରେ ଖବର ଦିଆନିଆ ପାଇଁ ଗୋଟାଏ କିଛି ଉପାୟ କରିବା ଦରକାର । ସେ

ଦଳର ଲୋକମାନଙ୍କୁ ଶିଙ୍ଘାରେ ଭିନ୍ନ ଭିନ୍ନ ପ୍ରକାର ଶବ୍ଦ କରି ବିଭିନ୍ନ ଖବର ଦେବାର ଉପାୟ ଶିଖାଇଲା । କାହାରି ସାହାଯ୍ୟ ଦରକାର ହେଲେ ଖୁବ୍ ଜୋରରେ ଚଞ୍ଚଳ ଚଞ୍ଚଳ ଶିଙ୍ଘା ବଜାଇବାକୁ ହେବ । ଚଞ୍ଚଳ ଚଞ୍ଚଳ କରି ଦୁଇଥର ବଜାଇଲେ ଜଣା ଯିବ ସେ କେହି ଜଣେ ଦଳର ଅନ୍ୟ ଜଣଙ୍କୁ ଖୋଜୁଛି । ରବିନ୍ ତିନଥର ଲଗାଲଗି କରି ଶିଙ୍ଘା ବଜାଇଲେ ସମସ୍ତେ ତା ପାଖରେ ପହଞ୍ଚିବେ । ଏହିପରି ଭିନ୍ନଭିନ୍ନ ଖବରପାଇଁ ଭିନ୍ନଭିନ୍ନ ପ୍ରକାର ଶିଙ୍ଘା ବଜାଇବାର ସ୍ଥିର ହେଲା ।

ଦିନେ ସନ୍ଧ୍ୟାବେଳେ ରବିନ୍ ତାହାର ସାଥୀମାନଙ୍କୁ ଡାକି କହିଲା, ମୋ ମନରେ ଗୋଟାଏ ବଡ଼ ପ୍ରସ୍ତାବ ଅଛି । ମୁଁ ସେ ପ୍ରସ୍ତାବଟି ତୁମ ଆଗରେ କହୁଛି, ମନ ଦେଇ ଶୁଣ । ଆମ୍ଭେମାନେ ଏ ବଣ ଭିତରେ ଚୋର ଡକାୟତଙ୍କ ପରି ଲୁଚି ରହିବା ବୃଥା । ଆଜିକାଲି କାଳ ବିଚିତ୍ର । ଧନୀମାନଙ୍କ ପାଇଁ ଗୋଟାଏ ଆଇନ୍ ତ ଗରିବ ମାନଙ୍କପାଇଁ ଆଉ ଗୋଟାଏ । ରାଜା ଧନୀମାନଙ୍କୁ ସୁଖରେ ରଖିବା କଥା ବିଚାରୁଛନ୍ତି । ଗରିବମାନଙ୍କୁ ପଚାରୁ ନାହାନ୍ତି । ବରଂ ସେମାନଙ୍କୁ କୁକୁରଠାରୁ ହୀନ ବ୍ୟବହାର କରୁଅଛନ୍ତି । ବାରନମାନେ ✽ ନିଜ ନିଜ ଗଡ଼ରେ ରହି ଯାହା ଇଚ୍ଛା ତାହା କରୁଛନ୍ତି । ଆମ୍ଭେମାନେ କଣ ଚାହୁଁ ସେ କଥା ସେମାନଙ୍କୁ ଶିକ୍ଷା-ଦେବା ଦରକାର ।

ଏହା ଶୁଣି ଦଳର ଲୋକମାନେ ହସି ହସି ଗଡ଼ିଗଲେ ।

ରବିନ୍ ପୁଣି କହିଲା, "ତୁମ୍ଭେମାନେ ହସୁଛ ଯିନା, ଆମେ ଏଠାରେ ଶହେ ଚାଳିଶ ଜଣ ଲୋକ ଅଛୁଁ । ଧନୁରେ ଶର

✽ ବାରନ—ରାଜଦତ୍ତ ବଂଶାନୁକ୍ରମିକ ପଦବୀ । ପ୍ରତ୍ୟେକ ବାରନ ପାର୍ଲିଆମେଣ୍ଟର ଜଣେ ସଭ୍ୟ । ସମାଜରେ ତାଙ୍କର ବିଶିଷ୍ଟସ୍ଥାନ ।

ମାରିବାରେ ଆମେ କେହି କାହାକୁ ଡ଼ରୁ ନାହୁଁ ! ଆମେ ବଣ ଭିତରେ ରହୁଛୁଁ ଅଥଚ ଏଇ ବଣର ବାହାରେ କେତେ ଖରାପ ଲୋକ ଅଛନ୍ତି ! ସେମାନେ କେତେ ଖରାପ କାର୍ଯ୍ୟ କରୁ ନାହାନ୍ତି ? କେତେ ଅନ୍ୟାୟ ହେଉ ନାହିଁ ? ଚାଲ, ଆମେମାନେ ଏ ସବୁ ବଦଳାଇ ଦେବା । ଗରିବ ପ୍ରତି ଯେଉଁ ଅତ୍ୟାଚାର ହେଉଛି, ତାହା ବନ୍ଦ କରିବା । ମୋ ଆଗରେ ସମସ୍ତେ ଶପଥ କର ଯେ ଆଜିଠାରୁ ଆମେ ପ୍ରତ୍ୟେକ ଗରିବକୁ ସାହାଯ୍ୟ କରିବା ।”

ରବିନ୍‌ର ଏହି ମହତ୍ ଉଦ୍ଦେଶ୍ୟ ଜାଣିପାରି ସମସ୍ତେ ଏହି ପ୍ରସ୍ତାବରେ ରାଜି ହେଲେ । ସମସ୍ତେ ରବିନ୍‌କୁ ଏହି କାର୍ଯ୍ୟରେ ସାହାଯ୍ୟ କରିବାକୁ ପ୍ରତିଜ୍ଞା କଲେ ।

## ଲିଟିଲ୍ ଜନ୍

ରବିନ୍ ଓ ତାହାର ସାଥୀମାନେ ଯେଉଁ ଜଙ୍ଗଲରେ ରହିଥିଲେ, ତାହାର ନାମ ଶେର୍‌ଉଡ୍ । ରବିନ୍ ସବୁଜ ରଙ୍ଗର ପୋଷାକ ପିନ୍ଧି ସେମାନେ ରହୁଥିବା ସ୍ଥାନର ଚାରିଆଡ଼େ ବୁଲୁଥିଲା; ସେତେବେଳକୁ କେହି ଶର ତିଆରି କରୁଥିଲା, କେହି ଧନୁରେ ଗୁଣ ସଜାଡ଼ୁ ଥିଲା, କେହି ଅବା ତାହାର ହତିଆରକୁ ମାଜି ସଫା କରୁଥିଲା । ରବିନ୍ ବୁଲିବୁଲି ଏ ସବୁ ଦେଖୁଥାଏ । ସେ ଭାବିଲା, “ଏମାନଙ୍କୁ ଦେଖିଲେ ମନେ ହେବ, ସତେ ଯେପରିକି କୁଆଡ଼ୁ ଗଡ଼ ଜିଣି ଫେରି ଆସିଛନ୍ତି । କିନ୍ତୁ ଦୁଇ ହପ୍ତା ହେଲା କେହି କୌଣସି ସାହାସିକ କାର୍ଯ୍ୟ ଦେଖାଇ ନାହାନ୍ତି ।”

ରବିନ୍ ଭବିଷ୍ୟତ ଚିନ୍ତା କରି ବଡ଼ ଅସ୍ଥିର ହେଉଥାଏ । ଗୋଟିଏ ଯୁବକ ନୂଆ ହୋଇ ଏହି ଦଳରେ ମିଶିଥାଏ । ତାହାକୁ ଡାକି ରବିନ୍ କହିଲା, “ଏପରି ଗୋଟିଏ ଦଳର ନେତା ହେବା

ଖୁବ୍ ଭଲ କଥା । ଦଳଟ ପୁଣି ଦିନକୁ ଦିନ ବଢ଼ିବାରେ ଲାଗିଛି । କିନ୍ତୁ ଶିକ୍ଷିତ ଯୋଦ୍ଧାମାନଙ୍କୁ କାମ ଦେଇ ନ ପାରିଲେ ଲାଭ କଣ ?"

ଯୁବକଟି ରବିନ୍‌ର କାନ୍ଧ ଉପରେ ହାତ ପକାଇ କହିଲା, "ସରଦାର, ଏଥିପାଇଁ ଚିନ୍ତା କଣ ? ଆମେ ବେଶ୍ ଖୁସିରେ ଅଛୁଁ । ଜାଣିଶୁଣି ତ ଆମେ ଏପରି ଜୀବନ ବାଛି ନେଇଛୁ ।" କିନ୍ତୁ ରବିନ୍ କିଛି ଗୋଟାଏ କରିବା ପାଇଁ ଚଞ୍ଚଳ ହୋଇ ଉଠୁଥାଏ । ସେ କହିଲା, "ଆମର ସାହସ ଦେଖାଇବା ପାଇଁ ଚୁପ୍ହୋଇ ରହିବାରେ ଫଳ ନାହିଁ । ଏଠାରେ ବସି ବସି ମୋତେ ବିରକ୍ତି ଲାଗିଲାଣି । ମୁଁ ବାହାରକୁ ଯାଇ ଗୋଟାଏ କିଛି କଷ୍ଟସାଧ୍ୟ କରିବ ।"

ରବିନ୍ ସେଦିନ ଏକୁଟିଆ ବାହାରିଲା । ଯିବା ଆଗରୁ ସେ ଦଳର ଲୋକମାନଙ୍କୁ କହିଲା, "ସମସ୍ତେ ଜାଗ୍ରତ ଥିବ । କିଛି ଆପଦ ବିପଦ ଘଟିଲେ ମୁଁ ଶିଙ୍ଘା ବଜାଇବି । ସେଥିପାଇଁ ପ୍ରସ୍ତୁତ ଥିବ ।" ଏହିପରି କହି ରବିନ୍ ବଣ ବୁଦା ମଧ୍ୟରେ ଚାଲିଲା । କିଛିଦୂର ଯିବା ପରେ ସେ ଗୋଟିଏ ଗଳି ରାସ୍ତା ଦେଖିଲା ! ଏହିପରି ଯାଉ ଯାଉ ସେ ଆଉ ଗୋଟିଏ ସରୁ ରାସ୍ତାରେ ପହଞ୍ଚିଲା । ସେ ଦେଖିଲା ଯେ ଏହି ରାସ୍ତାଟି କେତେକ ପଡ଼ିଆ ବାଟେ ଯାଇଛି । ଦୂରରେ ଗୋଟିଏ ଗାଁ ଦିଶୁଛି । ତାର ବାଁ ପାଖରେ ଗୋଟିଏ ନାଳ । ସେ ନାଳର ଅଙ୍କାବଙ୍କା ଧାରରେ କିଛି ଦୂର ଗଲା । ସେଠାରେ ସେ ଦେଖିଲା ଯେ ନାଳ ପାରି ହେବାପାଇଁ ଗୋଟିଏ କାଠ ପୋଲ ଅଛି । ସେ ଏହି କାଠପୋଲ ଉପରକୁ ଉଠିଲା । କିନ୍ତୁ ହଠାତ୍ ଚମକି ପଡ଼ି ଠିଆ ହୋଇ ଗଲା । ପୋଲର ଆରପାଖେ ଜଣେ ପ୍ରକାଣ୍ଡ ଲୋକ ଠିଆ ହୋଇଥିଲା । ଠିକ୍ ଯେତିକିବେଳେ ରବିନ୍ ଏପାଖରୁ ଯିବାକୁ ବାହାରିଥିଲା, ସେତିକିବେଳେ ସେ ମଧ୍ୟ ଆର ପାଖରୁ

ଅସିବାକୁ ବସିଥିଲା । ରବନ୍ ଟିକଏ ରହିଯାଇ ପୋଲ ଉପରେ ଏହି ଲୋକଟି ପର୍ଯ୍ୟନ୍ତ ଚାଲିଗଲା । କିନ୍ତୁ ସାହସ ପରି ସେହି ବଳିଷ୍ଠ ଲୋକଟି ତାହାକୁ ଆଗେଇବାରେ ବାଧା ନ ଦେଇ ପୋଲର ଠିକ୍ ମଝିରେ ଠିଆ ହୋଇଗଲା ଏବଂ ଉଦ୍ଧତ ସ୍ୱରରେ ରବନ୍‌ଙ୍କୁ ଚାହିଁଲା, ଯେତେ ଯେପରି କ ଏହି ଚାହାଣି ଦ୍ୱାରା ସେ କହୁଥିଲା, "ତୋର ଏତେ ସାହାସ ଯେ ତୁ ମତେ ଠେଲି ଚାଲିଯିବୁ ।"

ଯାହାହେଉ ରବନ୍ ଯେଉଁ କଥା ଚାହୁଁଥିଲା, ତାହା ମିଳିଗଲା । ଏପରି ଜଣେ ବଳିଷ୍ଠ ଲୋକ ସଙ୍ଗେ ଯୁଦ୍ଧ କରିବା କମ୍ ସାହାସର କଥା ନୁହେଁ । ସେ ଏଡ଼େ ସୁବିଧା ଛାଡ଼ିବ କିପରି ?

ରବନ୍ ହସି ଉଠିଲା । ତାକୁ ପୋଲ ପାରି ହେବାକୁ ନ ଦେବା ଯେ ତା'ର ଇଚ୍ଛା ଏହା ସ୍ପଷ୍ଟ ଜଣା ଯାଉଥିଲା । ତଥାପି ଜଣେ ପଛକୁ ନ ଫେରିଲେ ଆଉ ଜଣକ ଆଗେଇବାର ଉପାୟ ନଥିଲା । ଶେରଉଡ୍ ଜଙ୍ଗଲର ସରଦାର ରବନ୍ ପଛକୁ ଫେରିଯାଇ ଏହି ଲୋକଟିକୁ ବାଟ ଛାଡ଼ି ଦେବାକୁ ଆଦୌ ପ୍ରସ୍ତୁତ ନ ଥିଲା । ସେ ଦେଖିଲା ଯେ ତଳେ ନାଳର ପାଣି ଖୁବ୍ ବେଗରେ ବହୁଛି । ସେ ମନେ ମନେ ଗୋଟାଏ ଉପାୟ ସ୍ଥିର କରି ସେହି ଲୋକଟିକୁ କହିଲା, "ପାଖେଇଯାଅ, ମୁଁ ଯାଏଁ ।"

ମାତ୍ର ଲୋକଟି ଟିକିଏ ହେଲେ ଘୁଞ୍ଚିଲା ନାହିଁ । ତହୁଁ ରବନ୍ କହିଲା, "ଆରେ ଭୂତ : ମୋ ଆଗରୁ ଉଠ୍ । ତା ନ ହେଲେ ମୁଁ ତୋତେ ଏଠାରୁ ତଡ଼ି ଦେବ ।"

ଲୋକଟା କିଛି ନ କହି କେବଳ ମୁଖ ବକ୍ରିତ କଲା । ରବନ୍ ଆଉ ସମ୍ଭାଳି ପାରିଲା ନାହିଁ । ସେ କାନ୍ଧରୁ ଧନୁକୁ ଆଣି ହାତରେ ଧରିଲା । ସେ ପୁଣି ଥରେ ଲୋକଟାକୁ ସାବଧାନ କରି କହିଲା,

"ଦେଖ୍, ତୁ ଯଦି ନ ଯାଉ ଦେଖିବୁ, ତୋ ଭଳି ଲୋକଙ୍କୁ ମୁଁ କିପରି ଶିକ୍ଷା ଦେବି ।"

ରବିନ୍ ଗୋଟିଏ ଶର ଆଣି ଧନୁରେ ଯୋଖୁ ଯୋଖୁ ସେହି ରାକ୍ଷସ ମୂର୍ତ୍ତିଟି ତାହା ଆଡ଼କୁ କିଛି ଦୂର ଆଗେଇ ଆସିଲା । ତାହା ହାତରେ ଏକ ପ୍ରକାଣ୍ଡ ଲଠି । ସେ ଗମ୍ଭୀର ହୋଇ କହିଲା, "ତୁ ଶର ମାରିବାକୁ ଯାଉଚ, ଏକା ପାହାରକେ ତୋ ମୁଣ୍ଡ ଛେଚି କରିଦେବି ।"

ରବିନ୍‌ର ହାତରେ ଧନୁଶର । ଇଚ୍ଛା କରିଥିଲେ ସେ ସହଜରେ ଲୋକଟାର ପ୍ରାଣ ନେଇ ପାରିଥାନ୍ତା । କିନ୍ତୁ ଏହା ଜାଣି ମଧ୍ୟ ସେ ଯେପରି ଭାବରେ ଉତ୍ତର ଦେଲା ସେଥିରୁ ରବିନ୍ ବୁଝିଲା ଯେ ସେ ଜଣେ ସାହସୀ ଲୋକ । ଧନୁଶର ଦେଖି ସେ ଟିକିଏ ସୁଦ୍ଧା ଭୟ କରିନଥିଲା । ତାର ସାହସ ବିଷୟରେ ସନ୍ଦେହ କଣ ? ଏହି ସାହସ ଦେଖି ରବିନ୍ ମନେମନେ ତାକୁ ପ୍ରଶଂସା କଲା । ସେ ଟିକିଏ ପଛେଇ ଆସିଲା, କିନ୍ତୁ ଧନୁଶରକୁ ଏପରି ଧରିଥାଏ ଯେ ମୂହୂର୍ତ୍ତକେ ଶରମାରି ଲୋକଟାର ପ୍ରାଣ ନେଇପାରିବ ।

ସେ କହିଲା, "ତୁ ମୂର୍ଖଙ୍କ ଭଳି କଥା କହୁଛୁ । ଇଚ୍ଛାକଲେ ମୂହୂର୍ତ୍ତକେ ଗୋଟିଏ ଶରରେ ମୁଁ ତୋର ପ୍ରାଣ ନେଇପାରିବି ।"

ରାକ୍ଷସ ମୂର୍ତ୍ତିଟି ଘୃଣା ପ୍ରକାଶ କରି କହିଲା, 'ତୁ ଘୋର କାପୁରୁଷ । ତୋ ହାତରେ ଧନୁଶର ଅଛି । ମୋ ହାତରେ ତ ଏହି ଲଠି ଛଡ଼ା ଆଉ କିଛି ନାହିଁ ।"

ରବିନ୍ ହସିହସି କହିଲା, 'ମୁଁ ଘୋର ! ମୁଁ ଧନୁଶର ବ୍ୟବହାର କରିବାକୁ ଭଲ ପାଏଁ । ସେଥିପାଇଁ ଧନୁଶର ଧରିଛି, ମୁଁ ଯେ ଯୁଦ୍ଧ ବୁଝେଁ, ଏକଥା ଏହିକ୍ଷଣି ତୋତେ ଦେଖାଇ ଦେଉଛି ।'

ରବନ୍ ଚଳକୁ ଡେଇଁପଡ଼ ଗୋଟାଏ ଶାଳଗଛରୁ ଡ଼ାଳଟାଏ ଭାଙ୍ଗି ଆଣିଲା । ସଙ୍ଗେ ସଙ୍ଗେ ସେଥିରୁ ଷ୍ଟେଟ ଡାଳ ଓ ପତ୍ରଗୁଡ଼ାକ ଛଣ୍ଡାଇ ପକାଇ ପୁଣି ପୋଲ ଉପରକୁ ଉଠିଆସିଲା ।

ପୋଲ ମଝିରେ ଦୁହେଁଯାକ ଠିଆହୋଇ ପରସ୍ପରକୁ ଆକ୍ରମଣ କଲେ । ରବନ୍ ଲୋକଟିର କାନ୍ଧରେ ଗୋଟିଏ ପାହାର ବସାଇଲା । ସେ ମଧ୍ୟ ରବନ୍‌ର ମୁଣ୍ଡରେ ପାହାରେ ଦେଲା । ଦୁହେଁଯାକ କେହି କାହାକୁ ଊଣା ନୁହଁନ୍ତି । ଏ ପ୍ରକାର ଲଠି ଯୁଦ୍ଧରେ ରବନ୍‌ର ବେଶ୍ ଅଭିଜ୍ଞତା ଥିଲା । ଆଉ ଅପରିଚିତ ଲୋକଟିର ଦେହର ଶକ୍ତି ମଧ୍ୟ ଅସାଧାରଣ ।

ରବନ୍ ତାହାର ବାଡ଼ରେ ମାଡ଼ ଦେବାରେ ଲାଗିଥାଏ । ଲୋକଟା ଜାଣିଶୁଣି ଟିକଏ ହଟି ଯାଉଥାଏ । ରବନ୍ ଭାବିଲା ଯେ, ଲୋକଟା ଏକବାରେ ହାରିଗଲାଣି । ଏହି ସମୟରେ ରବନ୍‌ର ଗୋଡ଼ ଖସିଗଲା ଓ ସେ ନାଳ ଭିତରେ ପଡ଼ିଗଲା । ସେ ପାଣି ଉପରକୁ ମୁଣ୍ଡ ଟେକିଲା । ନାଳରେ ବଢ଼ି ପାଣି ପଡ଼ିଥିବାରୁ ମଝିରେ ଖୁବ୍ ବେଶୀ ପାଣି ଥାଏ । ଲୋକଟା ତାହାକୁ ଉପହାସ କରି କହିଲା, 'କରେ ! ତୁ ଏବେ କେଉଁଠି ?'

ରବନ୍ ପାଣିରେ ଥାଇ କହିଲା, 'ମୁଁ ଏଇ ପାଣି ଭିତରେ ଅଛି । ଯାହାହେଉ ତୁ ମୋତେ ବଳିଗଲୁ ।' ଲୋକଟି ଉତ୍ତର କଲା, 'ବେଶ୍, ତୁ ଯେବେ ହାରିଯାଇଛୁ ବୋଲି ମାନିବୁ, ତାହା ହେଲେ ତୋତେ ପୋଲ ପାର ହେବାକୁ ଦେବି ।'

ରବନ୍ ପାଣିରୁ ଉଠିଆସିଲା । ସେ କାଦୁଅରେ ଲଟପଟ ହୋଇ ଓଦାହୋଇ ଯାଇଥାଏ । ସେ ଲୋକଟି ପାଖକୁ ଆସି ପଚାରିଲା 'ଆଚ୍ଛା ! ତୁମର ବ୍ୟବସାୟ କଣ ? ତୁମର କଣ କାମ ଅଛି ?'

ଅସୁର ମୂର୍ତ୍ତି ଟି କେବଳ ମୁଣ୍ଡ ହଲାଇ କହିଲା, "ଏ ଅଞ୍ଚଳରେ କଏ ଅଛି ଯେ ଜନ୍‌କୁ ଦିନେ ହେଲେ କାମ ଯୋଗାଇବ । ମୋତେ କାମରେ ଲଗାଇବାକୁ ସମସ୍ତଙ୍କର ଭୟ । ଅସଲ କଥା ହେଉଛି, ମୁଁ ମୋ ଇଚ୍ଛା ଅନୁଯାରେ ଯାହା ପାରିବ, ତାହା କରିବ । କିନ୍ତୁ ଲୋକେ ଚାହାନ୍ତି ଯେ ସେମାନଙ୍କ ଇଚ୍ଛା ଅନୁସାରେ ମୁଁ କାମ କରିବ । କିନ୍ତୁ ମୁଁ ଯାହା କରିବାକୁ ଚାହିଁବ ନାହିଁ, ତାହା ମୋ ହାତରେ କରାଇବା ଭଳି ଲୋକ କେହି ନାହାନ୍ତି । ତେଣୁ ମୁଁ ଯାହାର କାମ କରିବାକୁ ଯାଏ, ତା ସାଥିରେ ମୋର କଳି ଓ ମାଡ଼ଗୋଳ ହୁଏ । ମୋତେ ଉପାସରେ ଏଣେ ତେଣେ ବୁଲିବାକୁ ପଡ଼େ । ବର୍ତ୍ତମାନ ଖାଇବାକୁ ମିଳିଲେ ମୋତେ ଭଲ ଲାଗନ୍ତା ।"

ଲୋକଟି ଏହିପରି କହୁଥିବାବେଳେ ରବିନ୍ ତାହାର ଶାଗୁଆ ପୋଷାକରୁ କାଦୁଅ ଧୋଇବାରେ ଲାଗିଥିଲା । ସେ ଟିକିଏ ସଫା ହୋଇସାରି ନଜର ଧନୁଟିରେ ଧରିଲା ଓ ସେହି ଲୋକଟିକୁ ଲକ୍ଷ୍ୟ କରି କହିଲା, 'ବେଶ୍; ତାହା ହେଲେ ମୋ ସାଥିରେ ଆସ । ଅଳ୍ପଦୂରରେ ଦଳେ ଲୋକ ଅଛନ୍ତି,ସେମାନେ ବଡ଼ ସୁନ୍ଦର ଲୋକ । ତୁମକୁ ଦେଖିଲେ ସେମାନେ ଆନନ୍ଦରେ ତୁମେ ଆଛା ଭୋଜନ ଦେବେ ।' ରବିନ୍ ଯେଉଁବାଟେ ଯାଇଥିଲା ସେହିବାଟେ ଫେରିଲା । ଅପରିଚିତ ଲୋକଟି ତା ପଛେ ପଛେ ଚାଲିଥାଏ ।

ଦୁହେଁଯାକ ଶେର୍‌ଉଡ୍ ଜଙ୍ଗଲର ଧାରରେ ପହଞ୍ଚିଲାକ୍ଷଣି ରବିନ୍ ତାହାର ଶିଙ୍ଘାଟି ଧରି ଫୁଙ୍କିବାକୁ ବସିଲା; କିନ୍ତୁ କୌଣସି ସ୍ୱର ନ ବାହାରି କେବଳ କିଛି କାଦୁଅ ଓ ମଇଳା ପାଣି ବାହାରି ଆସିଲା । ନାଳରେ ପଡ଼ିଗଲା ବେଳେ ତାର ଶିଙ୍ଘାରେ ପାଣି କାଦୁଅ ପଶି ଯାଇଥିଲା, ସେ କଥା ତାର ଖିଆଲ ନ ଥିଲା । ତାକୁ ଖୁବ୍ ହସ ମାଡ଼ିଲା । ନୂତନ ସାଥୀଟି ମଧ୍ୟ ଏହି ହସରେ ଯୋଗଦେଲା ।

ରବନ୍ ଭଲ କରି ଶିଙ୍ଘାରୁ ପାଣି କାଢ଼ୁଅ ବାହାର କରି ପୋଛିଲା; ପୁଣି ବଜାଇଲା । ତିନିଥର ଶିଙ୍ଘାର ସ୍ୱର ଶୁଣାଗଲା । ଜଙ୍ଗଲରେ ଏହାର ପ୍ରତିଧ୍ୱନି ଶୁଣା ଯାଉଥାଏ । ମୁହୂର୍ତ୍ତକ ଭିତରେ ଜଙ୍ଗଲ ଭିତରୁ ଅନେକ ଗୁଡ଼ିଏ ଶିଙ୍ଘାର ଶବ୍ଦ ଶୁଣାଗଲା ଓ କିଛି ସମୟ ପରେ ରବନ୍ ପରି ଶାଗୁଆ ପୋଷାକ ପିନ୍ଧିଥିବା ଦଳେ ଲୋକ ଜଙ୍ଗଲର ଭିନ୍ନ ଭିନ୍ନ ସ୍ଥାନରୁ ବାହାରି ରବନ୍ ଓ ତାହାର ସାଥୀକୁ ବେଢ଼ିଗଲେ ।

ସେ ନିଜର ଲୋକମାନଙ୍କୁ ଦେଖାଇ ଜନ୍‌କୁ କହିଲା, "ଏମାନେ ହେଉଛନ୍ତି ମୋର ସାଥୀ ।" ତା ପରେ ଜନ୍‌କୁ ଦେଖାଇ ହସି ହସି କହିଲା, "ସାଥୀମାନେ, ଏ ଭଦ୍ର ଲୋକଙ୍କ ନାମ ହେଉଛି ଜନ୍ । ଆଜି ସେ ମୋତେ ଗୋଟାଏ ପୋଲ ଉପରେ ଯିବାକୁ ଛାଡ଼ି ଦେଉ ନ ଥିଲେ । ଆଉ କଅଣ କଲେ ଜାଣିଛ ? ମୋତେ ଠେଲି ନାଳ ଭିତରକୁ ପକାଇ ଦେଲେ । ଏବେ ତାଙ୍କୁ କଅଣ କରିବା ।"

ସମସ୍ତେ ଏକ ସଙ୍ଗରେ ଚିତ୍କାର କଲେ, "ସେ ଯେପରି ତୁମକୁ ପାଣିକି ପକାଇ ଦେଇଥିଲା, ତାକୁ ସେହିପରି ପାଣିକି ପକାଇ ଦେବା । ତା ପରେ ପାଣିରେ ସିଝିବୁଡ଼ା ଦେବା ।"

ରବନ୍ କହିଲା, "ନା, ନା । ତା ନୁହେଁ । ସେ ଲାଠି ଯୁଦ୍ଧରେ ଖୁବ୍ ବାହାଦୁରି ଦେଖାଇଛି । ସେ ଆମ ଦଳରେ ରହୁ । ତାପରେ ଜନ୍‌କୁ ଲକ୍ଷ୍ୟ କରି କହିଲା, "ବନ୍ଧୁ, ଆସ । ତୁମେ ଆମ ଦଳରେ ରହ । ଆମର ଖାଇବା ପିଇବାର କୌଣସି ଅଭାବ ନାହିଁ । ଆମର କାମ କଥା କହୁଥାଏଁ । ଆମର କାମ ହେଉଛି– ଅନ୍ୟାୟ ଦେଖିଲେ ତାର ପ୍ରତିକାର କରିବା, ଯଦି କେଉଁଠି କୌଣସି ଅତ୍ୟାଚାରୀ ଲୋକକୁ ଦେଖୁଁ, କିମ୍ବା କେହି ଗରିବଠାରୁ ଲୁଟି କରୁଥାଏ, ତେବେ

ତା ସାଥିରେ ଆମର ସ୍ୱଭାବ ନିକାଶ ହୁଏ । ଏଠାରେ ରହିଲେ ଲଢ଼େଇ କରିବା ପାଇଁ ଯଥେଷ୍ଟ ସୁଯୋଗ ମିଳିବ । ଅବଶ୍ୟ ଏପରି ଜୀବନ କଷ୍ଟକର; କିନ୍ତୁ ଏଥିରେ ବେଶ୍ ମଜା ଅଛି । କଅଣ କହୁଛ ?"

ଏ ଦଳରେ ମିଶିବାକୁ ଜନ୍‌ର ଭାରି ଆଗ୍ରହ । ସମସ୍ତେ ଦଳର ଆଡ୍‌ଡ଼ାକୁ ଗଲେ । ସେଠାରେ ପହଞ୍ଚି ରବିନ୍ ଟିକିଏ ରହସ୍ୟ କରି ତାର ସାଥୀମାନଙ୍କୁ କହିଲା, "ଦଳରେ ଏ ଯେଉଁଟି ନୂଆ ହୋଇ ଯୋଗ ଦେଲା, ତାକୁ ଗୋଟାଏ ନୂଆ ନାମ ଦେବାକୁ ହେବ । ସେ କହୁଛି ଯେ ତାର ନାମ ଜନ୍ ଲିଟିଲ୍ ।"

ଦଳର ଲୋକେ ହସି ଉଠିଲେ । ସେମାନେ ଜନ୍‌ର ଚାରିପାଖେ ବେଢ଼ିଯାଇ ତାକୁ ଟାଣି ଓଟାରି ପକାଇଲେ । ସେମାନଙ୍କ ଦଳରେ ଜଣେ ପହିଲମାନ୍ ଥିଲା । ତାର ନାମ ଉଇଲ୍ । ସେ ଗୋଟାଏ ନାମ ପ୍ରସ୍ତାବ କରି କହିଲା, "ସେ କହୁଛି ଯେ ତାର ନାମ ଜନ୍ ଲିଟିଲ । ଆମେ ତାର ନାମ ଓଲଟାଇ ଦେଇ ଡାକିବା—ଲିଟିଲ୍ ଜନ୍ ।"

ଏହି ନାମକରଣ ଉତ୍ସବ ଦିନ ତା ଉପରେ ସେମାନେ ମାଠିଆ ଭର୍ତ୍ତି କରି ପାଣି ଆଣି ଢାଳିଲେ । ସେହି ଦିନଠାରୁ ତାର ନାମ ହେଲା ଲିଟିଲ୍ ଜନ । ତା ପାଇଁ ସାରେ ସବୁଜ ରଙ୍ଗର ପୋଷାକ ଦିଆଗଲା । ଅନ୍ୟମାନଙ୍କ ପରି ସେ ମଧ୍ୟ ଶରମାରିବା ଏବଂ ଖଣ୍ଡା ଓ ଛୁରି ବ୍ୟବହାର କରିବା ଶିଖିଗଲା । ଏବେ ତାର ଆଉ ଖାଇବା ଚିନ୍ତା ରହିଲା ନାହିଁ; କାରଣ ରବିନ୍ ଓ ତାହାର ଦଳର ଲୋକେ ରାଜାଙ୍କ ବଣରୁ ଯେତେ ଇଚ୍ଛା ହରିଣ ମାରି ଆଣୁଥିଲେ ଏବଂ ଆଡ୍‌ଡ଼ାରେ ରାନ୍ଧି ଖାଉଥିଲେ ।

କ୍ରମେ ଦଳର ଲୋକେ ଲିଟିଲ୍‌ଜନ୍‌କୁ ଅଧିକରୁ ଅଧିକ ଆଦର ଦେଖାଇଲେ । ତାର ପ୍ରକୃତି ଟିକିଏ ରୁକ୍ଷ ଥିଲା । କିନ୍ତୁ ସେମାନେ ସେଥିରେ ଅଭ୍ୟସ୍ତ ହୋଇଗଲେ । ରବିନ୍ କେତେବେଳେ ବାହାରକୁ ଚାଲିଗଲେ ଦଳର ଭାର ଲିଟିଲ୍‌ଜନ୍‌କୁ ଦେଇଯାଏ । ଜନ୍ ଦେଖିବାକୁ ଯେପରି ଗୋଟିଏ ପ୍ରକାଣ୍ଡ ରାକ୍ଷସ ପରି; ତାର ବଳ ମଧ୍ୟ ଯଥେଷ୍ଟ । ତେଣୁ ରବିନ୍ ନଥିଲା ବେଳେ ତାକୁ ସରଦାର ଭଳି ମାନିବାରେ କାହାରି କିଛି ଆପତ୍ତିର କାରଣ ନଥିଲା ।

---

(୭)

# ଦଳର ଆଇନ

ଥରେ ଜଣେ ଲୋକ ଶେରଉଡ଼ ଜଙ୍ଗଲ ଭିତରେ ଘୋଡ଼ାରେ ବସି ଯାଉ ଯାଉ ରବିନ୍‌ର ଲୋକଙ୍କ ହାବୁଡ଼େ ପଡ଼ିଲା । ସେମାନେ ତାହାକୁ ଧରି ତାର ହାତ ଦୁଇଟା ପଛପଟେ ଟାଣିକରି ବାନ୍ଧି ପକାଇଲେ । ଲିଟିଲ୍ ଜନ୍ କହିଲା, 'ବେଶ୍, ଏଥର ଯିବ କୁଆଡ଼େ ? ଚାଲ ଏହାକୁ ସରଦାରଙ୍କ ପାଖକୁ ନେଇଯିବା ।'

ଘୋଡ଼ାଟିକୁ ଆଗରେ ଚଳାଇ ଓ ବାଟୋଇର କାନ୍ଧରେ ତାହାର ବୋଝଟି ଲଦିଦେଇ ସେମାନେ ବଣ ଭିତରେ ଚାଲିଲେ । ଏହିପରି ଯାଇ ସେମାନେ ନିଜ ଆଡ୍ଡାରେ ପହଞ୍ଚିଲେ ।

ରବିନ୍ ଲୋକଟିର ଅବସ୍ଥା ଦେଖିଲା । ତାହାର ବନ୍ଧା ହୋଇଥିବା ହାତକୁ ପରୀକ୍ଷାକରି ସେ ରାଗିଯାଇ କହିଲା, 'ଏ ଲୋକର ହାତକୁ ପିଠି ପଟେ ଏପରି କିଏ ବାନ୍ଧିଲା ?' ଦଳର ଲୋକମାନେ ଏଥିରେ ବିସ୍ମିତ ହୋଇ ଆପଣା ଭିତରେ ଚାହାଁଚାହିଁ ହେଲେ । ଲିଟିଲ୍ ଜନ୍ ସାହସ ବାନ୍ଧି କହିଲା, 'ମୁଁ ବାନ୍ଧିଛି । ମୁଁ ଭାବୁଛି ଯେ ତାକୁ ଏପରି ବାନ୍ଧିବା ଠିକ୍ ହୋଇଛି ।'

ରବିନ୍ ଅଧିକ ରାଗିଯାଇ କହିଲା, 'ତାହା ହେଲେ ତୁ ବାନ୍ଧିଛୁ । ଅଚ୍ଛା ମୁଁ ଦେଖୁଛି ।' ତାହା ପରେ ନିଜର ଲୋକମାନଙ୍କୁ କହିଲା, 'ଲିଟିଲ୍ ଜନ୍‌କୁ ଧରି ଠିକ୍ ସେହି ଲୋକପରି ତାହାର ହାତକୁ ବାନ୍ଧ ।'

ଅବଶ୍ୟ ଜନ୍ ଟିକଏ ଟାଣି ଓଟାରି ହେଲା, କିନ୍ତୁ ଅଳ୍ପ ସମୟ ପରେ ସମସ୍ତେ ମିଳି ତାକୁ ମାଡ଼ି ବସିଲେ । ତାହାର ଦୁଇ ହାତକୁ ପଛବୁହା କରି ଖୁବ୍ ଜୋରରେ ବାନ୍ଧି ପକାଇଲେ । ଦଉଡ଼ିଟା ତାହାର କଚଟିକୁ କାଟୁଥାଏ । ସେମାନେ ଯାହା ସର୍ଦ୍ଦାରଠାରୁ ହୁକୁମ ପାଇଲେ ତାହା କଲେ । କିନ୍ତୁ ସର୍ଦ୍ଦାର ଯେ କାହିଁକି ଏପରି ହୁକୁମ ଦେଲେ ତାହା ଆଦୌ ବୁଝିପାରିଲେ ନାହିଁ । ଦଳ ମଧ୍ୟରୁ କେତେଜଣ ରବିନ୍‌ର ଏହି କାର୍ଯ୍ୟରେ ଅସନ୍ତୋଷ ପ୍ରକାଶ କରି ମୁହଁ ବୁଲାଇ ଦେଲେ । ଏହା ରବିନ୍‌କୁ ଅଛପା ରହିଲା ନାହିଁ । ସେ ଜନ୍‌କୁ ଚାହିଁ କହିଲା, 'ଏବେ ତୋତେ କିପରି ଲାଗୁଛି ଭାବି ଦେଖ୍ । ସେ ଲୋକଟିର ହାତ ଦୁଇଟିକୁ ଏତେ ଜୋରରେ ବାନ୍ଧିବାର କିଛି ଦରକାର ଥିଲା କି ? କାହାରିକୁ ବନ୍ଦୀକରି ଆଣିଲେ ତାହା ଯଥେଷ୍ଟ । ବୃଥା କଷ୍ଟ ଦେବା କି ଦରକାର ? ମନେରଖିଥାଅ, କାହାରିକୁ ଏତେ ଜୋରରେ ବାନ୍ଧିବ ନାହିଁ, ଯେ ମୋ ହୁକୁମ ଅମାନ୍ୟ କରିବ ତାକୁ ଏହିପରି ବନ୍ଧାଯିବ । ଲୋକମାନଙ୍କ ସହିତ ବୃଥା ଏପରି କଠୋର ବ୍ୟବହାର ଦେଖାଇଲେ ମୋ ଦଳରେ ରହି ପାରିବ ନାହିଁ । ଅବଶ୍ୟ ମୁଁ ଚାହେଁ ଯେ ଆମ ଦଳର ଲୋକେ ଖୁବ୍ ବଳୁଆ ହୁଅନ୍ତୁ । କିନ୍ତୁ ସେମାନଙ୍କ ହୃଦୟରେ ଦୟା ମଧ୍ୟ ରହିବା ଉଚିତ ।'

ଏହି କଥାଟି ଦଳର ସମସ୍ତଙ୍କୁ ଲକ୍ଷ୍ୟକରି କୁହାଯାଉଥିଲା । ତାପରେ ରବିନ୍ ଜନ୍‌କୁ କହିଲା, 'ଲିଟିଲ୍ ଜନ୍ ! ତୋର ବେଶ୍ ଶିକ୍ଷା ହୋଇ ଯିବଣି । ଏଣିକି ତୋତେ ଛାଡ଼ି ଦିଆଯିବ । ଆମେ ଦୁହେଁ ପରସ୍ପରକୁ ଭଲ ରୂପେ ଜାଣୁ । ମୋର ତୋ ପ୍ରତି ଏହି ରୁକ୍ଷ ବ୍ୟବହାରର କାରଣ ତୁ ବୁଝି ପାରୁଥିବୁ । ଏଥିରୁ ସମସ୍ତେ ଶିଖନ୍ତୁ, କିପରି ଭାବରେ ଲୋକକୁ ବନ୍ଦୀ କରି ଆଣିବାକୁ ହୁଏ ।'

ଲିଟିଲ୍ ଜନ୍‌ର ବନ୍ଧନ ଫିଟାଇ ଦିଆଗଲା । ସେ ବିଷଣ୍ଣ ମୁଖରେ ନିଜର କଚଟିକୁ ଚାହିଁଲା । ତାପରେ ସେହି ଲୋକଟି ଆଡ଼କୁ

ରୁହିଁ ରହିଲା, 'ମୁଁ ତୁମକୁ ଏତେ ଜୋରରେ ବାଧା ଦେଇଥିଲି ବୋଲି ଜାଣି ପାରି ନଥିଲି । ମୋତେ ସେଥିପାଇଁ କ୍ଷମାକର ।'

ରବିନ୍ କହି ଉଠିଲେ, 'ସାବାସ୍ ଜନ୍ ! ଏତ ଉଚିତ କାମ ।' ତା ପରେ ବନ୍ଦୀକୁ ରୁହିଁ କହିଲେ, 'ଏବେ ତମେ ଏ ଘାସ ଉପରେ ବସି ସବୁକଥା ଆମକୁ କହ । ତୁମେ କେଉଁଠାରୁ ଆସିଲ ? ଏ ବୋଝରେ କଣ ନେଉଛ ? କେଉଁଠିକି ନେଉଥିଲ ?'

ତାହାର ବନ୍ଧନକୁ ଫିଟାଇ ଦିଆଗଲା ଓ ସେ ତଳେ ଘାସ ଉପରେ ବସିପଡ଼ିଲା ।

ସେ କହିଲା, 'ଆଜ ସକାଳେ ସୂର୍ଯ୍ୟ ଉଇଁଲାବେଳକୁ ମୁଁ ନଟିଂହାମ୍‌ରୁ ମୋର ଜିନିଷ ଘେନି ବାହାରିଲି । ଆପଣମାନେ ଦେଖୁଥିବେ ଯେ ମୋର ବୟସ ସେତେ ବେଶୀ ନୁହେଁ । ନୂଆ ହୋଇ ବ୍ୟବସାୟରେ ପଶିଛି । ମୁଁ ଦେଖିଲି ଯେ ନଟିଂହାମ୍‌ରେ ଗ୍ରାହକଙ୍କୁ ରୁହିଁ ରହିଲେ ଭଲ ବିକି ହେବନାହିଁ । ଦିନକ ଭିତରେ ଜଣେ ଦୁଇଜଣ ଗ୍ରାହକ ଆସିବେ । ତେଣୁ ମୁଁ ବିଚାରିଲି ଯେ କିଛି ମୋଟା କପଡ଼ା ଘୋଡ଼ାରେ ଲଦି ଗାଁମାନଙ୍କୁ ବିକିବାକୁ ଯିବି । ସେଠାରେ ମୂଲିଆ, ମୂଲିଆଣୀଙ୍କ ଭିତରେ କିଛି ଲୁଗା ବିକି ହୋଇଯିବ ବୋଲି ମୋର ଆଶା ଥିଲା । ବଣୁଆ ବାଟରେ ଆସୁ ଆସୁ ଆପଣଙ୍କ ଲୋକମାନେ ମୋତେ ଧରି ଏଠାକୁ ଆଣି ଅଛନ୍ତି । ଏପରି ଧରା ପଡ଼ିବି ବୋଲି ମୁଁ ଆଗରୁ ଜାଣିନଥିଲି । ତାହାହେଲେ ମୁଁ ନିଶ୍ଚୟ କିଛି ସବୁଜ ରଙ୍ଗର କପଡ଼ା ଆଣିଥାନ୍ତି । ଆପଣମାନେ ସେଥିରୁ କିଛି କିଣିଥାନ୍ତେ ।'

ରବିନ୍ ଓ ଦଳର ଲୋକେ ଏହାଶୁଣି ନ ହସି ରହିପାରିଲେ ନାହିଁ । ଲୋକଟା ଧରି ନେଇଥିଲା ଯେ ସବୁଜ କନା ଆଣିଥିଲେ,

ତାହାର କିଛି କ୍ଷତି ହୋଇଥାନ୍ତା । ତାହା ହୋଇ ନ ପାରିବାରୁ ତା ମନରେ ଦୁଃଖ ।

ରବିନ୍ ପଚାରିଲେ, "ତାହାହେଲେ ତୁ ଏ ଅଞ୍ଚଳର ସ୍କୋୟାର ଓ ସେମାନଙ୍କ ସ୍ତ୍ରୀମାନଙ୍କ ପାଇଁ ସରୁ ପାଟଲୁଗା ନେଇ ଯାଉ ନ ଥିଲୁ ?"

ଲୋକଟି ଉତ୍ତର କଲା, "ନା ! କଦାପି ନୁହେଁ । ମୁଁ ଯେବେ ବଡ଼ ଲୋକଙ୍କ ପାଇଁ ସରୁ କପଡ଼ା ନେଇ ଆସିଥାନ୍ତି, ତାହାହେଲେ ସେମାନେ ଯାହା ଲୁହାଇନ୍ତେ ନେଇ ଯାଆନ୍ତେ । କିନ୍ତୁ ଦାମ୍ ଦେବାକୁ କେହି ଶୁଣନ୍ତେ ନାହିଁ । ଆପଣ ତ ଜାଣନ୍ତି, ବଡ଼ ଲୋକଙ୍କୁ ଉତ୍ତର ନାହିଁ । ବଳ ଯାହାର ମୂଲକ ତାହାର ।"

ଲୋକଟି ଯାହା କହିଲା, ସେ କଥା ସତ । ରବିନ୍‌କୁ ଏହା ଜଣାଥିଲା । ସେ ଦଳର କେତେଜଣଙ୍କୁ କହିଲା, "ତାହାର ବୋଝକୁ ଖୋଲି ଦେଖ । ଯଦି ସେ ସତ କହୁଥାଏ ଯେ ଗରିବ ଲୋକଙ୍କ ପାଇଁ ମୋଟା କପଡ଼ା ବିକିବା ପାଇଁ ନେଉଛି, ତାହା-ହେଲେ ତାକୁ ଖୁସିରେ ଛାଡ଼ି ଦିଆଯିବ । କେହି ତାର କିଛି କ୍ଷତି କରିବେ ନାହିଁ ।"

ବୋଝ ଖୋଲା ହେବାରୁ ଦେଖାଗଲା ଯେ ସେଥିରେ କେତେଗୁଡ଼ିଏ ମୋଟା ମାଟିଆ କନା ଅଛି । ସାଧାରଣତଃ ଗରିବ ଲୋକେ ଏ ଭଳି କପଡ଼ା ବ୍ୟବହାର କରନ୍ତି । ଧନୀ ସ୍କୋୟାରଙ୍କ ଉପଯୁକ୍ତ ଲୁଗା ଆଦୌ ବାହାରିଲା ନାହିଁ ।

ଏହା ଦେଖି ରବିନ୍ କହିଲା, "ଲୋକଟାର କଥା ସତ ।"

ଗରିବ ଲୋକଙ୍କୁ ହଇରାଣ କରିବା ଆମର ଆଦୌ ଇଚ୍ଛା ନୁହେଁ । ସେମାନେ ସାଧୁ ଉପାୟରେ କିଛି ଉପାର୍ଜନ କରିବାରେ

ମଧ୍ୟ ଆମର ଆପତ୍ତି ନାହିଁ । ଲୋକଟିକୁ ଛାଡ଼ି ଦେବା ମୋର ଇଚ୍ଛା । ତୁମ୍ଭେମାନେ କଣ କହୁଛ ?"

ସମସ୍ତେ ଉଚ୍ଚ ସ୍ୱରରେ ଏଥିରେ ସମ୍ମତି ପ୍ରକାଶ କଲେ । ବାଟୋଇ ଜଣକ ମୁକ୍ତି ପାଇଥିବାର ଦେଖି ମନେ ମନେ ଆନନ୍ଦିତ ହେଲା । ସେ କହିଲା, ମୁଁ ପୁଣି ଏଠାକୁ ଆସିବି । କିଛି ସବୁଜ ରଙ୍ଗର କପଡ଼ା ଆଣିବି । ଏଠାରେ ଅନ୍ତତଃ ଶହେଜଣ ଲୋକ ଅଛନ୍ତି । ସେମାନେ ମୋର ଲୁଗା କିଣିବେ । କିଛି ଲାଭ ହୋଇଯିବ ।

ଲିଟିଲ୍ ଜନ୍ କହିଲା, "ତାହାହେଲେ ତୁମର ଦୃଢ଼ ବିଶ୍ୱାସ ଯେ ତୁମଠାରୁ ଆମେ ଯାହା ନେବୁ, ତାର ଦାମ୍ ଦେବୁ ।"

ବାଟୋଇ ଉତ୍ତର କଲା, "ଏଥିରେ ମୋର ଲବେମାତ୍ର ସନ୍ଦେହ ନାହିଁ । ଦୁଇ ସପ୍ତାହ ମଧ୍ୟରେ ଆପଣମାନେ ମୋତେ ପୁଣି ଏଠାରେ ଦେଖିବାକୁ ପାଇବେ ।" ରବିନ୍ ଲୋକଟିକୁ ଉଦର ପୂରାଇ ହରିଣ ମାଂସର ତରକାରୀ ଖାଇବାକୁ ଦେଲା । ବେପାରୀଟି ଗ୍ରାମମାନଙ୍କରେ ଲୁଗା ବିକିବାକୁ ପଡ଼ିଥିବା ବଣରେ ଯାହା ଯାହା ଘଟିଥିଲା, ସେ ସବୁ ବର୍ଣ୍ଣନା କଲା । ଲୋକେ ତାହାଠାରୁ ଶୁଣିଲେ ଯେ ରବିନ୍ ଗରିବ ଲୋକଙ୍କ ପ୍ରତି ଭାରି ଦୟାଳୁ । ମଫସଲ ଗାଉଁଲି ଲୋକଙ୍କୁ ସାହାଯ୍ୟ କରିବା ପାଇଁ ତାର ଲୋକ-ମାନେ ପ୍ରସ୍ତୁତ । ସେମାନଙ୍କର ଧାରଣା ହେଲା ଯେ ରବିନ୍ ଓ ତାହାର ଦଳ ପ୍ରକୃତରେ ଗରିବମାନଙ୍କର ବନ୍ଧୁ ।

ସେ ଦିନ ରବିନ୍‌ର ଲୋକେ ବୁଝିପାରିଲେ ଯେ ଗରିବ ଜନସାଧାରଣଙ୍କର କିଛି କ୍ଷତି କରିବା ଆଦୌ ଉଚିତ ନୁହେଁ ।

ତିନି ସପ୍ତାହ ପରେ ସତକୁ ସତ ସେହି ବେପାରୀ କିଛି ସବୁଜ ରଙ୍ଗର କପଡ଼ା ଘୋଡ଼ାରେ ଲଦି ରବିନ୍‌ର ଆଡ୍‌ଡାରେ ଉପସ୍ଥିତ

ହେଲା । ଦଳର ଲୋକେ କିଛି କପଡ଼ା କିଣିଲେ ଓ ପୂରା ଦାମ୍ ଦେଇ ପକାଇଲେ । ବେପାରୀ ମନ ଖୁସିରେ ଚାଲିଗଲା ।

ଏହାର ଅଳ୍ପ କେତେ ଦିନ ପରେ ବେପାରୀ ପୁଣି ସେଠାରେ ଉପସ୍ଥିତ ହେଲା । କୌଣସି ବିପଦରେ ପଡ଼ିଥିଲା ପରି ତାର ମୁହଁ ଶୁଖି ଯାଇଥାଏ, ଆଖି ଯୋଡ଼ିକ ଛଳଛଳ ।

ସେ କହିଲା, "ସେଦିନ ଆପଣଙ୍କ ପାଖରୁ ଯାଇ ମୁଁ ନଟିଂହାମ୍ ପାଖରେ ପହଞ୍ଚିଲା ବେଳକୁ ବାଟ ଭୁଲିଗଲି । ସନ୍ଧ୍ୟା ହୋଇ ଆସିଥିଲା । ଦଳେ ଡକାଏତ ମୋତେ ମାଡ଼ ଦେଇ ମୋର ସବୁଯାକ ଟଙ୍କା ଛଡ଼ାଇ ନେଲେ । ମୋ ଘୋଡ଼ାଟାକୁ ମଧ୍ୟ ନେଇ ଚାଲିଗଲେ । ଅତି କଷ୍ଟରେ ମୁଁ ନିଜ ଘରକୁ ଫେରିଗଲି ।"

ରବିନ୍ କହିଲା, "ଆମକୁ ନେଇ ସେ ଜାଗାଟା ଦେଖାଇ ଦିଅ ।" ଲୋକଟି ଟିକିଏ କୁଣ୍ଠିତ ହୋଇ ଚାଲିଲା । ଗୋଟିଏ ସ୍ଥାନରେ ପହଞ୍ଚି କହିଲା, "ମୋର ମନେହେଉଛି, ଏହିଠାରେ ମୁଁ ଠିକ୍ ବାଟ ଛାଡ଼ି ଭୁଲ୍ ବାଟରେ ଚାଲିଗଲି ।"

ରବିନ୍ ଓ ତାହାର ସାଥୀମାନେ ସେ ଜାଗାଟିର ଆଖପାଖ ଭଲକରି ପରୀକ୍ଷା କଲେ । ଦେଖିଲେ ଯେ ସେଠାରେ ଲୋକମାନଙ୍କ ମଧ୍ୟରେ ଟଣା ଓଟରା ଲାଗିଥିବାର କିଛି ହେଲେ ସଙ୍କେତ ନାହିଁ । ତହୁଁ ସେ ନିଜ ଲୋକଙ୍କ ସହିତ ସେହି ବେପାରୀକୁ ଆପଣାର ଆଡ଼୍ଡ଼ାକୁ ପଠାଇ ଦେଲେ ଏବଂ ଆଉ ଦୁଇ ଜଣଙ୍କୁ କହିଲେ ଯେ ସେମାନେ ସେହି ବେପାରୀର ଘରକୁ ଯାଇ ଦେଖନ୍ତୁ । ସହରରେ ତାର ଦୋକାନ ଘର ମଧ୍ୟ ଦେଖିବେ । ରବିନ୍‌ର ମନରେ ସନ୍ଦେହ ହୋଇଥିଲା ଯେ ଲୋକଟା ମିଥ୍ୟା କହୁଅଛି । କିନ୍ତୁ ବାଟୋଇକୁ ସେ ଏହା ଜାଣିବାକୁ ଆଦୌ ସୁବିଧା ଦେଇ ନଥିଲା ।

ରବନ୍ ବେପାରୀକୁ କହିଲା, "କଏ ତୁମର ଜନିଷ ଓ ଘୋଡ଼ା ଚୋରାଇଛି, ତାକୁ ନ ଧରିବା ଯାଏ ତୁମେ ଆମର ଅତିଥି ହୋଇ ରହିବ । ଏହାଛଡ଼ା ଅନ୍ୟ ଉପାୟ ନାହିଁ ।"

ପ୍ରକୃତରେ ଆଡ୍‌ଡ଼ାରେ ରହିବା ଛଡ଼ା ଲୋକଟିର ଅନ୍ୟ ଉପାୟ ନଥିଲା । ରବନ୍ ଯେଉଁ ଦୁଇଜଣଙ୍କୁ ସହରକୁ ପଠାଇଥିଲା, ସେମାନେ ତହିଁ ଆରଦିନ ଫେରି ଆସିଲେ । ସେମାନଙ୍କୁ ଦୂରରୁ ଦେଖିପାରି ରବନ୍ ତାଙ୍କ ପାଖକୁ ଚାଲିଗଲା । ସେମାନେ ରବନ୍‌କୁ କହିଲେ, "ଲୋକଟା ଭୟଙ୍କର ମିଛ କହୁଛି । ସେ କହୁଥିଲା ଯେ ଘୋଡ଼ା ଚୋରି ଯାଇଛି । ଆମେ ଦେଖିଲୁ ଯେ ଘୋଡ଼ାଟା ତା ଘୋଡ଼ାଶାଳରେ ବନ୍ଧା ହୋଇଛି ।"

ରବନ୍‌ର ଆଗରୁ ସନ୍ଦେହ ହୋଇଥିଲା । ଏବେ ତାହାର ସନ୍ଦେହ ସତ ହୋଇ ଥିବାର ଜାଣି ସେ ରାଗି ଉଠିଲା । ବେପାରୀ ପାଖକୁ ଯାଇ ସେ କହିଲା, "ତୁ ଗୋଟିଏ ଅସଲ ଠକ । ତୁ ଭାବିଥିଲୁ—ରବନ୍ ଓ ତାର ଲୋକଙ୍କର ଘର ଦସ୍ୟୁ । ମୁଁ ସେମାନଙ୍କ ପାଖକୁ ଯାଇ କହିବି ଯେ ଡକାଏତମାନେ ମୋର ସବୁ ନେଇ ଯାଇ ଅଛନ୍ତି । ଏହା ଶୁଣି ସେମାନେ ନିଶ୍ଚୟ ମୋତେ କିଛି ଟଙ୍କା ଦେବେ—ତୋର ଦୁର୍ଭାଗ୍ୟ ଯେ ଘୋଡ଼ା ଚୋରି ଯାଇଛି ବୋଲି କହିଲୁ । ମୋର ଲୋକେ ଯାଇ ଦେଖି ଆସିଛନ୍ତି ଯେ ତୋର ଘୋଡ଼ା ଘୋଡ଼ାଶାଳରେ ବନ୍ଧା ହୋଇଛି ।"

ଏହା ଶୁଣିଲା କ୍ଷଣି ବେପାରୀର ଦେହ ଥରି ଉଠିଲା । ସେ ଗୋଡ଼ତଳେ ପଡ଼ିଯାଇ କହିଲା, "ହଜୁର ! ମୋତେ କ୍ଷମା ଦିଅନ୍ତୁ । ମୁଁ ଆଉ କେବେ କାହାରିକୁ ଠକିବି ନାହିଁ । ମୋତେ ଏଥର ଥରକ ଛାଡ଼ି ଦିଅନ୍ତୁ ।" ତାର ଭିତରି କୌଶଳ ଜଣା ପଡ଼ିଥିବାର ଦେଖି

ତାର ବଡ଼ ଭୟ ହୋଇଗଲା । ଗାଁକୁ ସେ ଫେରିବାର ଆଶା ଆଉ ରହିଲା ନାହିଁ ।

ରବିନ୍ ଟିକିଏ ଚୁପ୍ ରହି କହିଲା, "ଆଚ୍ଛା, ତୋତେ ଛାଡ଼ି ଦିଆଯିବ ! କିନ୍ତୁ ଗୋଟି ସର୍ତ୍ତରେ । ତୁ ଟଙ୍କା ପାଇଁ ମିଛ କହିଛୁ ତୋତେ ସେଥିପାଇଁ ଟଙ୍କା ଦେବାକୁ ପଡ଼ିବ । ତୋର ଘରକୁ ଖଣ୍ଡିଏ ଚିଠି ଲେଖ । ତୋର ନିଜର ଲୋକ ଟଙ୍କା ଆଣି ଆମକୁ ଦେଲେ ତୋତେ ଛାଡ଼ି ଦିଆଯିବ । ଯେତେବେଳ ପର୍ଯ୍ୟନ୍ତ ତୋତେ ଏହିଠାରେ ରହିବାକୁ ହେବ । ସେଦିନ ଲୁଗାବାଲା ଆମଠାରୁ ଯେତିକି ଲାଭ ନେଇଛୁ ସେତିକ ପାହୁଲାକିଯାଏ ଫେରାଇବାକୁ ହେବ । ଅବଶ୍ୟ ତୁ ଯେଉଁ ମୂଳଧନରେ ତାକୁ କିଣି ଥିଲୁ ଆମେ ତାହା ଛୁଇଁବୁ ନାହିଁ ।"

ବେପାରୀ ବିଚାରର ଅନ୍ୟଗତି ନଥିଲା । ସେ ବଣ ଭିତରେ ଥାଇ ଘରକୁ ଚିଠି ଲେଖିଲା । ତା ଘରୁ ଟଙ୍କା ଆସିବାରୁ ତାକୁ ଛାଡ଼ି ଦିଆଗଲା ।

କି ପ୍ରକାରେ ନ୍ୟାୟ ବିଚାର ହେବା ଉଚିତ ବୋଲି ରବିନ୍ ହୁଡ଼୍ ବିଚାରୁ ଥିଲା, ଏହି ଘଟଣାରୁ ଦଳର ଲୋକେ ଜାଣି ପାରିଲେ । ସେମାନେ ବୁଝି ପାରିଲେ ଯେ ଚଷା ମଜୁରିଆଙ୍କର କ୍ଷତି କରିବା ଆଦୌ ତାର ଉଦ୍ଦେଶ୍ୟ ନୁହେଁ । ଏପରିକି ଧନୀ ଓ ଜମିଦାରୀ ଶ୍ରେଣୀର ଲୋକେ ସତ୍ୟ ଓ ନ୍ୟାୟରେ ଚଳୁଥିଲେ ସେମାନଙ୍କର କ୍ଷ କରିବା ତାର ଇଚ୍ଛା ନଥିଲା ; କିନ୍ତୁ କେହି ମିଛ କହିଲେ ; ଠକେ ଲୋକର ଉପକାର କଲେ, ତାକୁ ଉପଯୁକ୍ତ ଦଣ୍ଡ ଦେବାପାଇଁ ସେ ପ୍ରସ୍ତୁତ ଥିଲା । ତା ଦଳର ଲୋକେ କାହାରିକୁ ଧରି ଆଣିଲେ ସେ ଯଦି କହେ ଯେ ତାଠାରେ କିଛି ଟଙ୍କା ପଇସା ନାହିଁ, ମାତ୍ର ତଲାସ କଲା ବେଳକୁ ଟଙ୍କା ପଇସା ବାହାରେ ; ତାହାହେଲେ ମିଛ

କରିଥିବା ଅପରାଧରେ ତାହାଠାରୁ ଦୁଇଗୁଣ ଟଙ୍କା ଆଦାୟ କରା-
ଯାଉଥିଲା ।

ରବିନ୍ ତାର ସାଥୀମାନଙ୍କୁ କହୁଥିଲା, "ଯେଉଁମାନେ ଗରିବ,
ଚଳିବାରେ କଷ୍ଟ ପାଉଛନ୍ତି, ସେମାନଙ୍କୁ ସବୁମତେ ସାହାଯ୍ୟ କର
କିନ୍ତୁ ନଟିଂହାମ୍‌ର ଶେରିଫ୍ ଭଳି ଯେଉଁମାନେ ଗରିବମାନଙ୍କୁ କଷ୍ଟ
ଦେଉଅଛନ୍ତି । ସେମାନେ ହେଉଛନ୍ତି ଆମର ଅସଲ ଶତ୍ରୁ ।"

———

(୮)

# ରାତରେ ଆକ୍ରମଣ

ମେରିଆନ୍ ସଙ୍ଗରେ ଥରେ ଦେଖାକରିବାକୁ ରବିନ୍‌ର ବଡ଼ ଇଚ୍ଛା ଥାଏ । ସେ ଜାଣିଥିଲା ଯେ ମେରିଆନ୍ ଷ୍ଟୋପ୍ସାର ଗାମୱେଲ୍ସଙ୍କ ଘରେ ଅତିଥି ହୋଇ ରହିଛି । ରବିନ୍ ମଧ୍ୟ ଖବର ପାଇଥିଲା ଯେ ମାଆକୁ ଘେନି ତାଙ୍କ ଘରୁ ପଳାଇ ଆସିବା ପରେ ଶେରିଫଙ୍କର ଦଳେ ସିପାହୀ ସେଠାକୁ ଆସି ତାଙ୍କ ଉପରେ ଅଭିଯୋଗ କରିଥିଲେ ଯେ ସେ ରଜାଙ୍କର ଗୋଟିଏ ହରିଣକୁ ମାରି ବେଆଇନ କାମ କରିଛନ୍ତି ।

ଏହି ଘଟଣାରେ ଷ୍ଟୋପ୍ସାର ଗାମୱେଲଙ୍କ ଭୃତ୍ୟ ଓ ଶେରିଫଙ୍କ ସିପାହୀମାନଙ୍କ ଭିତରେ ଗୋଟାଏ ଖଣ୍ଡଯୁଦ୍ଧ ହୋଇ ଯାଇଥିଲା । ଷ୍ଟୋପ୍ସାରଙ୍କ ଘରେ ଯେଉଁ ଅତିଥିମାନେ ରହୁଥିଲେ, ସେମାନେ ମଧ୍ୟ ତାଙ୍କ ପକ୍ଷରେ ଭୃତ୍ୟମାନଙ୍କ ସଙ୍ଗେ ଯୋଗ ଦେଇଥିଲେ । ସେମାନଙ୍କ ଭିତରେ ମେରିଆନ୍‌ର ବାପା ମଧ୍ୟ ଜଣେ ।

ଦୁଇ ଦଳ ମଧ୍ୟରେ ଘମାଘୋଟ ମାଡ଼ଗୋଳ ଲାଗିଥିଲା ବେଳେ ମେରିଆନ୍‌ର ବାପା ଘରର ଝରକା ପାଖକୁ ଯାଇ ଧନୁଶର ଧରି ଛିଡ଼ା ହୋଇଗଲେ । ତାଙ୍କର ଶର ମାରିବାରେ ବେଶ୍ ସୁନାମ ଥିଲା । ସେ ସେହିଠାରେ ରହି ଏପରି କୌଶଳରେ ଶର ମାରିଲେ ଯେ ଶେରିଫଙ୍କର ଅନେକ ସିପାହୀ ଟଳି ପଡ଼ିଲେ । ଶେଷରେ ଜଣେ ସିପାହୀର ଶର ଆସି ତାଙ୍କ ଛାତିରେ ବାଜିଲା । ସେ ତଳେ ପଡ଼ିଗଲେ । ଜଣେ ଭୃତ୍ୟ ତାଙ୍କୁ ଟେକି ନେଇ ସେବା ଶୁଶ୍ରୂଷା କଲେ । କିଛି ସମୟ ପରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ଏସ୍ୱାପର ପିତାଙ୍କୁ ହରାଇ ଥିବାରୁ ଜମିଦାର ମହାଶୟଙ୍କର ମେରିଆନ୍ ପ୍ରତି ଆଦର ବଢ଼ି ଯାଇଥିଲା । ସେ ମେରିଆନ୍‌ର ପିତାଙ୍କ ମୃତ୍ୟୁ ଲାଗି ବିଶେଷ ଦୁଃଖ ପ୍ରକାଶ କଲେ ଏବଂ ଯେତେ ଦିନ ଇଚ୍ଛା ସେତେ ଦିନ ଯାଏ ତାଙ୍କ ଘରେ ରହିବାକୁ ମେରିଆନ୍‌କୁ କହିଲେ ।

ପିଲାଦିନର ସାଥୀ ମେରିଆନ୍‌କୁ ଦେଖିବା ପାଇଁ ରବିନ୍ ଲିଟିଲ ଜନ୍‌କୁ ସାଙ୍ଗରେ ନେଇ ଗାମଓୟେଲଙ୍କୁ ଗଲା । ରବିନ୍‌କୁ ଏତେଦିନ ପରେ ପୁଣି ଦେଖିବାକୁ ପାଇ ସ୍କୋୟାର ଗାମଓୟେଲ ଖୁବ୍ ଆନନ୍ଦିତ ହେଲେ । ରବିନ୍ ଜନ୍‌କୁ ନେଇ ତାଙ୍କ ସଙ୍ଗେ ପରିଚୟ କରାଇ ଦେଲା ଏବଂ ଦୁହିଁଙ୍କ ଭିତରେ ବନ୍ଧୁତା ହେଲା । ରବିନ୍‌ର ମାମୁଁ ପୁଅ ଭାଇ ୱିଲ୍ ମଧ୍ୟ ରବିନ୍‌କୁ ଦେଖି ଆନନ୍ଦ ପ୍ରକାଶ କଲା । ରବିନ୍ ମାଆ ସହିତ ଚାଲିଯିବା ଦିନଠାରୁ ଯାହା ଯାହା ସବୁ ଘଟିଥିଲା, ସେ ସବୁ ୱିଲ୍‌କୁ କହିଲା । ତାହା ଶୁଣି ୱିଲ୍‌ର ଇଚ୍ଛା ହେଲା ଯେ ସେ ମଧ୍ୟ ରବିନ୍ ସହିତ ଶେରଉଡ଼ରେ ରହିବ । ତାହା ହେଲେ ସ୍ୱାଧୀନ ଭାବରେ ଜୀବନ କଟାଇ ପାରିବ ଓ କେତେ ସାହସିକ କାର୍ଯ୍ୟ କରିବାକୁ ସୁବିଧା ପାଇବ ।

ଦିନେ ରବିନ୍, ୱିଲ୍, ଲିଟିଲ୍ ଜନ୍ ଓ ମେରିଆନ୍ ସମସ୍ତେ ଗଳ୍ପ କରି କରି ସ୍କୋୟାର ଗାମଓଏଲଙ୍କ ହଲରେ ବୁଲୁଥିଲେ । ଗତ କଥା କହି ବେଳେ ବେଳେ ହସି ଉଠୁଥିଲେ । ହଠାତ୍ ସ୍କୋୟାର ଗାମଓଏଲ ସେଠାକୁ ଦଉଡ଼ି ଆସି କହିଲେ, "ବିପଦ ଉପସ୍ଥିତ । ସେମାନେ ଆମ ଗଡ଼କୁ ଘେରି ଗଲେଣି । ଶେରିଫ୍‌ର ଲୋକେ ବୋଧହୁଏ ଜାଣିସାରିଲେଣି ଯେ ତୁମ୍ଭେମାନେ ଏଠାରେ ଅଛ ।" ଚିନ୍ତାରେ ଜମିଦାରଙ୍କ ମୁଖ ମଳିନ ଦିଶୁଥାଏ ।

ରବିନ୍ ଝରକା ପାଖକୁ ଦଉଡ଼ି ଯାଇ ବଣ ଆଡ଼କୁ ଚାହିଁରହିଲା । ବୁଦା ଭିତରେ ଶେରିଫଙ୍କ ସିପାହୀମାନେ ଲୁଚି ରହିଥିବାର

ସେ ଦେଖି ପାରିଲା । ସିପାହୀଙ୍କ ସଂଖ୍ୟା ଅନେକ । ସେମାନେ ହାତ-ହତିଆରରେ ସଜ୍ଜିତ ଥିଲେ । ରବିନ୍ ବୁଝିପାରିଲା ଯେ ଏଥର ସିପାହୀମାନେ ସହଜେ ଛାଡ଼ିଯିବେ ନାହିଁ ।

ସ୍କୋୟାର ଗାମଓଏଲ କହିଲେ, "ସର୍ବନାଶ ଉପସ୍ଥିତ । ଏଥର ଉଦ୍ଧାରର ଉପାୟ ଦିଶୁନାହିଁ ।"

ଏହାଶୁଣି ରବିନ୍ ଓ ଜନ୍ ହସି ଉଠିଲେ ।

ଲିଟିଲ୍ ଜନ୍ କହିଲା, "ଏପରି କିଛି ଘଟିଲେ ଯିନା ମନୁଷ୍ୟ ବଞ୍ଚିରହିବ । ଆପଦବିପଦ ନ ଥାଇ ଯେଉଁ ଜୀବନ ସେ ଜୀବନ କାହିଁରେ ଲେଖା ?"

ଏହି ସମୟରେ ଜଣେ ଡେଙ୍ଗା ବଳୁଆ ଲୋକ ଜମିଦାରଙ୍କ ଘର ଆଡ଼କୁ ଗୋଟାଏ ଶର ମାରିଲା । ରବିନ୍ କହିଲା, "ତେବେ ଯୁଦ୍ଧର ଆରମ୍ଭ ହେଲା ।"

ସେତେ ବେଳକୁ ସନ୍ଧ୍ୟା ହୋଇ ଆସୁଥାଏ । କୌଣସି ପକ୍ଷ ଅପର ପକ୍ଷର କିଛି ବିଶେଷ କ୍ଷତି କରି ପାରିଲେ ନାହିଁ । ରବିନ୍ ବୁଝି ପାରିଲା ଯେ ତା ଆର ଦିନ ଅସଲ ଯୁଦ୍ଧ ହେବ । ଶେରିଫଙ୍କର ଲୋକଙ୍କୁ ପରାସ୍ତ କରିବା ପାଇଁ ସବୁଠାରୁ ସୁବିଧା ହେଉଛି ରାତି । ରାତିର ଅନ୍ଧାରରେ ସିପାହୀମାନଙ୍କୁ ମାରିବା ସହଜ ।

ସେ ମନେ ମନେ ଗୋଟାଏ ଉପାୟ ଚିନ୍ତିଲା । ସଙ୍ଗେ ସଙ୍ଗେ ସେହି ଅନୁସାରେ କାର୍ଯ୍ୟ କରିବାକୁ ସ୍ଥିର କଲା ।

ସେ କହିଲା, "ଆମର ଏଗୁଡ଼ାକୁ ଡର ନାହିଁ; ସେଗୁଡ଼ାକୁ ଦେଖେଇ ଦେବାକୁ ହେବ, ଆମେ କେଡ଼େ ବୀର । ଆମର ଗଡ଼ ଗୁହାପାଖେ ଗୋଟାଏ ଜଳୀ ଅଛି । ମୁଁ ପହିଁରି ଜଳୀ ମାରି ହୋଇ ଯିବି । ମୋ ସାଙ୍ଗରେ ଯିବାକୁ କିଏ ପ୍ରସ୍ତୁତ ଅଛି ?"

ରବିନ୍ ନିଜେ ଯାହା କରିବାକୁ କୁଣ୍ଠିତ ସେପରି କାର୍ଯ୍ୟ କରିବାକୁ କେବେ କାହାକୁ କହୁ ନଥିଲା । ତେଣୁ ତାର ଦଳର ଲୋକେ ତାକୁ ଶ୍ରଦ୍ଧା କରୁଥିଲେ ।

ରବିନର କଥା ଶୁଣିଲାମାତ୍ରେ ଲିଟିଲ୍ ଜନ ବାହାରି ପଡ଼ିଲା ।

ସେ କାଳର ବଡ଼ଲୋକମାନେ ଗଡ଼ ଭିତରେ ଘରକରି ରହୁଥିଲେ । ଗଡ଼ର ଚାରିପାଖେ ଗଭୀର ଜଳୀ ଖୋଳା ଯାଇଥାଏ । ଜଳୀରେ ପାଣି ପୂର୍ଣ୍ଣ ଥାଏ । ତେଣୁ ଶତ୍ରୁ ସହଜେ ଗଡ଼ ମଧ୍ୟରେ ପଶି ପାରୁ ନଥିଲା ।

ରାତି ବେଶି ହୋଇଯିବାରୁ ଶେରିଫଙ୍କ ସିପାହୀମାନେ ବଣଭିତରକୁ କିଛିଦୂର ପଶିଯାଇ ଗୋଟିଏ ଜାଗାରେ ସମସ୍ତେ ଶୋଇଲେ । ସେମାନେ ଭାବିଥିଲେ ଯେ ସକାଳନ ହେବାଯାଏ କିଛି କରି ହେବନାହିଁ ।

ରବିନ୍ ଓ ଲିଟିଲ୍ ଜନ ଜଳୀରେ ପଶିବାର ଦେଖି ଉଇଲ୍ ଓ ଜମିଦାରଙ୍କର ଦୁଇଜଣ ଚାକର ମଧ୍ୟ ପାଣିକି ଡେଇଁ ପଡ଼ି ସେ ଦୁହିଁଙ୍କ ସାଥିରେ ମିଶିଲେ ।

ରାତିର ଅନ୍ଧାରରେ ରବିନ୍ ଓ ତାର ସଙ୍ଗୀ ଚାରିଜଣ ସହଜରେ ଜଳୀ ପାର ହୋଇ ବଣ ଆଡ଼କୁ ଚାଲିଲେ । କେହି ସେମାନଙ୍କୁ ଦେଖି ପାରିଲେ ନାହିଁ ।

ଶେରିଫଙ୍କର ଲୋକମାନେ ଯେଉଁଠାରେ ଶୋଇଥିଲେ, ସେଠାରେ ପହଞ୍ଚିଲାକ୍ଷଣି ରବିନ୍ ତାହାର ସାଥୀମାନଙ୍କୁ କଣ କରିବାକୁ ହେବ ପରାମର୍ଶ ଦେଲା । ଶୋଇଥିବା ସିପାହୀମାନଙ୍କ ଉପରେ ଏକା ବେଳକେ ଆକ୍ରମଣ ନ କଲେ ସେମାନେ ଉଠି ପଡ଼ିବେ । ତାହାହେଲେ ଏମାନଙ୍କ ଅବସ୍ଥା ଶୋଚନୀୟ ହେବ । ରବିନ୍ ଓ ତାହାର ସଙ୍ଗୀମାନେ ହଠାତ୍ ସିପାହୀମାନଙ୍କୁ ଆକ୍ରମଣ କଲେ । ସେମାନଙ୍କର ଖଣ୍ଡା ଅନ୍ଧାରରେ ଝଲସି ଉଠିଲା ।

ଆକ୍ରମଣ ହେଲା ମାତ୍ରକେ ସିପାହୀମାନେ ଉଠି ପଡ଼ିଲେ । ଅନ୍ଧାର ହୋଇଥିବାରୁ ସେମାନେ ଘଟଣା କଣ ବୁଝି ପାରିଲେ ନାହିଁ । ଗୋଟାଏ ବଡ଼ ଗୋଳମାଳ ହେଲା । ଅନ୍ଧାରରେ ଶତ୍ରୁ କିଏ, ମିତ୍ର କିଏ ଜାଣି ନ ପାରି ସିପାହୀମାନେ ଆପଣା ଭିତରେ ଧରାଧରି ହେଲେ । ହାତରେ ଯାହା ପଡ଼ିଲା ତାହାକୁ ଧରି ପ୍ରତ୍ୟେକ ସିପାହୀ ଏହି ଗୋଳମାଳରେ ଯୋଗଦେଲା । ଏହି ଗୋଳମାଳ ଭିତରେ ରବିନ୍ ଓ ତାହାର ସାଥୀ ଚାରିଜଣ ଖସି ପଳାଇଲେ । ସେମାନେ ଜଙ୍ଗଲୀ ପାରି ହୋଇ ଯିବାକୁ ବସିଲେ । ଚାରିଜଣଯାକ ନିରାପଦରେ ଜଙ୍ଗଲୀ ପହଁରି ଗଡ଼ ଭିତରକୁ ଚାଲିଗଲେ । କିନ୍ତୁ ପଞ୍ଚମ ଜଣକ ଜଙ୍ଗଲୀ ପାଖରେ ପହଞ୍ଚି ପାରିଲା ନାହିଁ । ସେ ହେଉଛି ସ୍କୋୟାର ଗାମ୍‌ଓଏଲ୍‌ଙ୍କ ଚାକର ଦୁଇଜଣଙ୍କ ଭିତରୁ ଜଣେ । ଦୁଇଜଣ ସିପାହୀ ଦୌଡ଼ି ଆସି ତାହାକୁ ଧରି ପକାଇଲେ ।

ରବିନ୍ ଦେଖିଲା ଯେ, ଚାକରଟି ଶତ୍ରୁ ହାତରେ ପଡ଼ିଛି । ତାହାକୁ ଉଦ୍ଧାର କରିବା ପାଇଁ ରବିନ୍ ପୁନରାୟ ଜଙ୍ଗଲ ଆଡ଼କୁ ଯିବାକୁ ବସିଥିଲା । କିନ୍ତୁ ସ୍କୋୟାର ଗାମ୍‌ଓଏଲ୍ କୌଣସି ମତେ ରବିନ୍‌କୁ ଛାଡ଼ିଲେ ନାହିଁ । ଅବଶ୍ୟ ଚାକରଟିକୁ ଉଦ୍ଧାର କରିବା ପାଇଁ ତାଙ୍କର ଇଚ୍ଛା ଥିଲା, କିନ୍ତୁ ସେଥି ସକାଶେ ରବିନ୍‌ର ଜୀବନକୁ ବିପନ୍ନ କରିବାକୁ ସେ ଇଚ୍ଛା କରି ନ ଥିଲେ । ବିଶେଷତଃ ସକାଳ ନ ହେବାଯାଏ ସିପାହୀମାନେ ଚାକରଟି ଉପରେ ଅତ୍ୟାଚାର କରିବେ ନାହିଁ ବୋଲି ତାଙ୍କର ବିଶ୍ୱାସ ହୋଇଥିଲା । ତେଣୁ ସେ ରବିନ୍‌କୁ କହିଲେ, "ବର୍ତ୍ତମାନ ଫେରିଯିବା ଆବଶ୍ୟକ ନାହିଁ । ସକାଳ ଯାଏ ଅପେକ୍ଷା କର ।"

ରବିନ୍ ବନ୍ଦୋବସ୍ତ କଲା ଯେ ରାତିଯାକ ଜଣକ ପରେ ଜଣେ ପାଳି କରି ଗଡ଼ରୁ ଚାହିଁ ରହି ଦେଖିବେ ଯେ ଶେରିଫ ଓ ତାଙ୍କ

ଲୋକେ ଜ୍ଞାଣ କରୁଛନ୍ତି । ଆଉ ଯେଉଁମାନେ ଜଗି ରହି ନ ଥିବେ, ସେମାନେ ନିଶ୍ଚିନ୍ତରେ ଶୋଇବେ । ତାହାହେଲେ ସକାଳକୁ ସେମାନେ କାମ କରିବାକୁ କଷ୍ଟ ବୋଧ କରିବେ ନାହିଁ ।

ଭୋର ହେଲା । ମେରିଆନ୍ ପ୍ରଥମେ ବିଛଣାରୁ ଉଠି ଅନ୍ୟ-ମାନଙ୍କୁ ଉଠାଇଲା । ସେ ରବିନ୍‌କୁ ଡାକି କହିଲା, "ଚଞ୍ଚଳ ଆସ । ଦେଖ, ଆମ ଶୂକରକୁ ନେଇ ସିପାହୀମାନେ କଅଣ କରୁଛନ୍ତି ।"

ରବିନ୍ ଉଠି ପଡ଼ି ଝରକାବାଟେ ଚାହିଁ ଦେଖିଲା ଯେ ସିପାହୀ ମାନେ ଶୂକରଟିକୁ ଫାଶୀ ଦେଇ ମାରିବାର ବନ୍ଦୋବସ୍ତ କରୁଛନ୍ତି । ସେତେବେଳକୁ ଗଡ଼ର ଜଗୁଆଳମାନେ ଖାଇବାରେ ଲାଗିଥାନ୍ତି । ସେ ସେମାନଙ୍କୁ ଡାକି କହିଲା, "ଅତିଶୀଘ୍ର ଖାଇବା ଶେଷକରି ଶତ୍ରୁକୁ ଆକ୍ରମଣ କରିବାକୁ ପ୍ରସ୍ତୁତ ହୋଇଯାଅ ।"

ରବିନ୍ ପୁଣି ଝରକା ପାଖକୁ ଯାଇ ଦେଖିଲା ଯେ ଜଣେ ସିପାହୀ ଲମ୍ବ ଦଉଡ଼ିଟିଏ ନେଇ ଗୋଟିଏ ଗଛ ଉପରକୁ ଚଢ଼ିଲା । ଦଉଡ଼ିର ଗୋଟିଏ ମୁଣ୍ଡ ଗଛର ଡାଳରେ ବାନ୍ଧି ଦେଇ ଛାଡ଼ି ଦେଲା । ଗଛ ତଳେ ଆଉ ଜଣେ ସିପାହୀ ଶୂକରକୁ ଧରି ଛିଡ଼ା ହୋଇଥାଏ । ଶୂକରକୁ ଯେ ଫାଶୀ ଦେଇ ମାରିବା ସେମାନଙ୍କର ଉଦ୍ଦେଶ୍ୟ ଏଥିରେ କିଛି ସନ୍ଦେହ ନ ଥିଲା । ଶୂକରଟି ବିକଳ ହୋଇ ଚିଁଆ ହୋଇଥାଏ ।

ଏହା ଦେଖି ରବିନ୍ ବିଚାର କଲା ଯେ ଆଉ ଅପେକ୍ଷା କଲେ ଚଳିବ ନାହିଁ । ସେ ଉଇଲ୍‌କୁ କହିଲା, "ଦେଖ । ଗଛ ଉପରେ ଯେଉଁ ଲୋକଟା ଅଛି, ତାକୁ ଏକା ଶରକେ ମାରିବାକୁ ହେବ ଲକ୍ଷ୍ୟରେ ଯେପରି ଟିକିଏ ହେଲେ ଭୁଲ ନ ହଏ ।"

ଉଇଲ୍ ଲକ୍ଷ୍ୟ ଠିକ୍ କରି ଗଛ ଉପରେ ଥିବା ଲୋକର ଛାତିକୁ ଏକ ଶର ମାରିଲା । ଠିକ୍ ସେତିକି ବେଳକୁ ରବିନ୍ ଗଛ

ମୂଳରେ ଥିବା ସିପାହୀକୁ ଗୋଟିଏ ଶର ମାରିଲା । ଏକାବେଳକେ ଦୁଇ ଜଣ ଯାକ ମରି ଗଛମୂଳେ ଟଳି ପଡ଼ିଲେ ।

ଏହାପରି ରୁକରଟି ଘାତକ ଦୁଇ ଜଣଙ୍କ ହାତରୁ ଉଦ୍ଧାର ପାଇ ଜଲୀ ଆଡ଼କୁ ଦୌଡ଼ିଲା; ସଙ୍ଗେ ସଙ୍ଗେ ଜଲୀ ପହଁରି ଗଡ଼ପାଖ କୂଳରେ ପହଞ୍ଚିଲା । ଗଡ଼ର ଲୋକେ ତାର ହାତ ଧରି ଉପରକୁ ଉଠାଇ ନେଲେ ।

ସିପାହୀମାନେ ଏଥିମଧ୍ୟରେ ଯଥେଷ୍ଟ ଶିକ୍ଷା ପାଇଥିଲେ । ସେମାନେ ବୁଝିପାରିଲେ ଯେ ରବିନ୍ ଓ ତାର ସାଥୀମାନଙ୍କୁ ଧରିବାକୁ ହେଲେ ଗଡ଼କୁ ଆକ୍ରମଣ କରିବା ଦରକାର । ସେଥିପାଇଁ ବହୁ ସଂଖ୍ୟକ ସିପାହୀ ଆବଶ୍ୟକ । ପୁଣି ଆକ୍ରମଣ ଅନେକ ଦିନ ଧରି ଚାଲିପାରେ । ଏଭଳି ପରିସ୍ଥିତି ପାଇଁ ସେମାନେ ପ୍ରସ୍ତୁତ ହୋଇ ଆସି ନ ଥିଲେ । ତେଣୁ ସେମାନେ ଆପାତତଃ ପଳାଇ ଯିବାକୁ ବୁଦ୍ଧିମନ୍ତର କାର୍ଯ୍ୟ ମନେ କରି ଶେରିଫଙ୍କ ଦୁର୍ଗକୁ ଫେରିଗଲେ ଓ ତାଙ୍କୁ ସମସ୍ତ ଘଟଣା ଜଣାଇଲେ । ସିପାହୀମାନେ ରବିନ୍ କିମ୍ବା ତାର କୌଣସି ସାଥୀକୁ ଧରି ପାରି ନାହାନ୍ତି, ବରଂ ଦୁଇ ଜଣ ସିପାହୀ ପ୍ରାଣ ହରାଇଛନ୍ତି, ଏହାଶୁଣି ଶେରିଫ କ୍ରୋଧରେ କମ୍ପି ଉଠିଲେ ।

ସେ ଚିତ୍କାର କଲେ, "ତୁମ ଭଳି ବୋକା, ଅପଦାର୍ଥ କେହି ନାହିଁ । ରବିନ୍ ହୁଡ଼କୁ କୌଣସିମତେ ଧରି ଆଣିବାକୁ ହେବ । ତୁମ ହାତରେ ହେଲା ନାହିଁ ତ ମୁଁ ନିଜେ ଯାଇ ତାକୁ ଧରି ଆଣିବି ।"

ଅଳ୍ପ ଦିନ ଭିତରେ ଶେରିଫଙ୍କୁ ନିଜର ବାହାଦୁରି ଦେଖାଇବାର ସୁଯୋଗ ମିଳିଗଲା ।

(୯)

# କଂସେଇ ରବିନ୍‌ହୁଡ୍

ନଟିଙ୍ଗହାମ୍ ସହରର ଲୋକଙ୍କ ଭିତରେ ସିପାହୀମାନେ ପ୍ରଚାର କରିଦେଲେ ଯେ ଶେରିଫ ନିଜେ ଏକୁଟିଆ ଯାଇ ରବିନ୍‌କୁ ଧରି ଆଣିବେ ବୋଲି ପ୍ରତିଜ୍ଞା କରିଛନ୍ତି । ଜଣକଠାରୁ ଆଉ ଜଣେ ଏହି କଥା ଶୁଣିଲା । ତେଣୁ କେତୋଟି ଦିନ ଭିତରେ ରବିନ୍ ମଧ୍ୟ ଏ ଖବର ପାଇଗଲା ।

ସେତେବେଳକୁ ରବିନ୍ ସ୍କୋୟାର ଗାମଓଏଲଙ୍କ କୋଠାରେ ରହୁଥାଏ । ଦିନେ ରବିନ୍ ଓ ମେରିଆନ୍ ଗୋଟିଏ ପ୍ରକାଣ୍ଡ ବରଗଛ ତଳେ ବସି କଥାବାର୍ତ୍ତା ହେଉଥିଲେ । ରବିନ୍ କହିଲା, "ଶେରିଫ ତାର କଥା ରଖୁ । ସେ ଯେତେବ ମୋର ସାକ୍ଷାତ ଚାହୁଁଛି, ମୁଁ ଚେଷ୍ଟା କରିବି ସେ ଯେପରି ମୋର ଦେଖାପାଏ ।"

ମେରିଆନ୍ ରବିନ୍‌କୁ ଖୁବ୍ ଭଲ ପାଉଥିଲା । ତେଣୁ ରବିନ୍‌ର ଉଦ୍ଦେଶ୍ୟ ଜାଣିପାରି ସେ ଚିନ୍ତିତ ହୋଇ କହିଲା, "ଦେଖ, ଏଠାରୁ ଗୋଟାଏ କିଛି କରି ନାହିଁ । ଏଠାରୁ ବାହାରକୁ ଯାଇ ଗୋଟାଏ କିଛି ବିପଦକୁ ଆମନ୍ତ୍ରଣ କରି ଆଣିବାରେ କିଛି ଲାଭ ନାହିଁ ।"

ରବିନ୍ ହସି ହସି କହିଲା, "ଶେରିଫଙ୍କର ଏପରି ଗୋଟାଏ ଶୁଭ ନିମନ୍ତ୍ରଣକୁ କି ଛାଡ଼ିବାର କଥା ?" ସେହି ଦିନ ସେ ସ୍କୋୟାର ଗାମଓଏଲଙ୍କ ଘରୁ ବାହାରି ଯିବା ପାଇଁ ପ୍ରସ୍ତୁତ ହେଲା । ଯିବା ଆଗରୁ ସେ ମେରିଆନ୍‌କୁ କହିଲା, "କିଛି ଚିନ୍ତା କରିବାର କାରଣ ନାହିଁ । ମୁଁ ଅଳ୍ପଦିନ ପରେ ପୁଣି ଆସିବି । ଲିଟିଲ୍‌ଜନ୍ ରହୁଛି । ସେ ସବୁ ସୁବିଧା ଅସୁବିଧା ବୁଝିବ ।"

ରବିନ୍ ଯେପରି ସାହସୀ ସେହିପରି ଦୁର୍ଦ୍ଦାନ୍ତ । ସେ କାହାର ଉପଦେଶ ଶୁଣିବାର ପାତ୍ର ନୁହେଁ । ସେ ଶେରଉଡ଼ ଜଙ୍ଗଲ ଆଡ଼କୁ ଚାଲିଲା । ମେରିୟାନ ରବିନଠାରୁ ବିଦାୟ ନେଲାବେଳେ ଭାବିଲା, "ରବିନ୍ ନିଶ୍ଚୟ ବଞ୍ଚିଲ ଫେରି ଆସିବ ଯେ ।"

ରବିନ ଯାଉ ଯାଉ ଦେଖିଲା ଯେ ଜଣେ କଂସେଇ ନଟିଙ୍ଗହାମ୍ ବଜାର ଆଡ଼କୁ ଆସୁଛି । ତାକୁ ଦେଖିଲାକ୍ଷଣି ରବିନ୍ ମନରେ ଗୋଟାଏ ବୁଦ୍ଧି ଖେଳିଗଲା । ସେ ଆଦର ଦେଖାଇ କଂସେଇକୁ କହିଲା, "ବାଃ, ତୁମେ ତ ଗାଡ଼ିରେ ଭଲ ମାଂସ ଗୁଡ଼ାଏ ନେଉଛ ? କୁଆଡ଼େ ଯିବ ?"

କଂସେଇ ଉତ୍ତର କଲା, "ନଟିଙ୍ଗହାମ୍ ଯାଉଛି । ଏତେ ବାଟ ଯିବାକୁ ମନ ହେଉନାହିଁ । ମାତ୍ର ନ ଗଲେ କଅଣ ଚଳିବ ? ମାଂସତକ ବିକିଲେ ଦୁଇ ପଇସା ଲାଭ ମିଳିବ । ତା ନ କଲେ ଚଳିବ କିପରି ?

ରବିନ କହିଲା, "ତାହା ହେଲେ ମାଂସତକ ମୋତେ ବିକି-ଦିଅ । ମୁଁ ସବୁଯାକ ମାଉଁସ କିଣିବି । ତୁମର ଗାଡ଼ି ଆଉ ଘୋଡ଼ାକୁ ମଧ୍ୟ କିଣି ନେବା ପାଇଁ ମୋର ଇଚ୍ଛା ।"

କଂସେଇ ଆଶ୍ଚର୍ଯ୍ୟ ହୋଇଗଲା । ସେ ଭାବି ଚିନ୍ତି କହିଲା, "ଆଚ୍ଛା, ତୁମେ କେତେ ଟଙ୍କା ଦେଇ ପାରିବ ?"

ରବିନ୍ ସଙ୍ଗେ ସଙ୍ଗେ ଉତ୍ତର କଲା, "ତୁମେ ଯାହା ଚାହିଁବ, ମୁଁ ତାହା ଦେବାକୁ ପ୍ରସ୍ତୁତ ।"

ଘୋଡ଼ା, ଗାଡ଼ି ଓ ଗାଡ଼ିରେ ଥିବା ମାଉଁସ ପାଇଁ ଯଥେଷ୍ଟ ଦାମ୍ ଦେଇ ରବିନ୍ ସେଗୁଡ଼ିକ କିଣିଲା । କଂସେଇର ଛିଣ୍ଡା ମଇଳା ପୋଷାକତକ ରବିନ୍ କିଣି ନେଲା । ତାର ଦାମ୍ ମଧ୍ୟ ଅଧିକା

ଦେଲା । ଉପୃରେ ରବନ୍ ସେ ଗୁଡ଼ିକ ପିନ୍ଧି ନିଜର ଶାଗୁଆ ପୋଷାକ ତାକୁ ଦେଲା ।

କଂସେଇକୁ ତାର ନୂଆ ପୋଷାକରେ ଦେଖି ରବନ ହସି-ହସି କହିଲା, "ଭାଇ, ଦେଖ, ଯେପରି ଲୋକେ ତମକୁ ସନ୍ଦେହ ନ କରନ୍ତି ଯେ ତମେ ରବନ୍‌ହୁଡ୍ ଦଳର ଜଣେ ସାଥୀ ।"

କଂସେଇ ଏତେଗୁଡ଼ିଏ ଟଙ୍କା ପାଇଥିବାରୁ ବଡ଼ ଆନନ୍ଦିତ ହୋଇଥାଏ । ସେ ଟଙ୍କା ଥଳି ଧରି ସବୁ ଭୁଲି ଯାଇଥାଏ । ସେ ଭାବିଲା ଯେ ଏ ଲୋକଟି କାହୁଁ ଆସି ପହଞ୍ଚିଲା ଯେ କ୍ଷଣକ ଭିତରେ ତାକୁ ବଡ଼ଲୋକ କରି ଦେଇଗଲା ।

କଂସେଇର ଛଦ୍ମବେଶ ଧରି ରବନ୍ ନଟିଙ୍ଗହାମ୍ ଆଡ଼କୁ ଗାଡ଼ି ଚଳାଇଲା । ବହୁତ ବାଟ ଯିବାକୁ ହେବ; କିନ୍ତୁ ସେଥିପାଇଁ ରବନ୍‌ର ଚିନ୍ତା ନ ଥାଏ । ଯାଇ ଯାଇ ସେ ନଟିଙ୍ଗହାମ୍‌ର ବଜାରରେ ପହଞ୍ଚିଲା । ସେଠାରେ ଗୋଟିଏ ପାଖେ ଅନେକ କଂସେଇ ମାଂସ ବିକୁଥାନ୍ତି । ସେମାନେ କିପରି ବିକୁଛନ୍ତି, ତାହା ରବନ୍ ଭଲକରି ଦେଖିଲା । ତହୁଁ ସେ ଗୋଟାଏ ଜାଗାରେ ମାଂସତକ ଓହ୍ଲାଇ ବଜାରର ଗ୍ରାହକମାନଙ୍କୁ ଡାକ ପକାଇ କହିଲା, "କିଏ ନେବ ଆସ । ଅସଲ ମାଂସ । ମୁଣ୍ଡା ମୁଣ୍ଡା ଗୋରୁମାଂସ । ମେଣ୍ଢା ମାଂସ । ଘୁଷୁରି-ମାଂସ । ଯିଏ ଯାହା ନେବ, ନିଅ । ମୁଣ୍ଡାକୁ ଅଣାଏ । ଆସ ।"

ମାଂସର ଦରଦାମ କଥା ରବନ୍‌କୁ କିଛି ଜଣା ନ ଥିଲା; କିନ୍ତୁ ସେ ଗ୍ରାହକମାନଙ୍କ ସଙ୍ଗେ କଥାବାର୍ତ୍ତା ହୋଇ ଅନେକ କଥା ଜାଣିଗଲା । ଗୋଟାଏ ବଡ଼ ଚଟପଟ୍ଟ ଧରି ସେ ମୁଣ୍ଡା ମୁଣ୍ଡା ମାଂସ ହାଣୁ-ଥାଏ । ସେଇ ଚଟପଡ଼ ଅଗରେ ଖଣ୍ଡେ ଖଣ୍ଡେ ବଢ଼ାଇ ଦେଉଥାଏ । ଅଣାକୁ ମୁଣ୍ଡାଏ ଲେଖାଏ ।

ଏତେ ଶସ୍ତାରେ ମାଂସ କଣିବାକୁ ତା ପାଖେ ଗ୍ରାହକମାନେ ଭିଡ଼ ହୋଇଗଲେ । ସମସ୍ତେ ଏହି ନୂଆ କଂସେଇକୁ ଆପଣାର ବନ୍ଧୁଭଳି ବିଚାର କଲେ । କିନ୍ତୁ ଅନ୍ୟ କଂସେଇମାନେ ମନେ କଲେ ଯେ, ଏ ହେଉଛି ସେମାନଙ୍କ ଶତ୍ରୁ । ତାଙ୍କର ବ୍ୟବସାୟ ମାଟି ହୋଇଗଲା । ସେମାନେ ରାଗି ଉଠିଲେ ।

ଜଣେ କଂସେଇ କହିଲା, "ଏ ଲୋକଟାର ମୁଣ୍ଡ ବିଗିଡ଼ି ଯାଇଛି । ଏମିତି ଶସ୍ତାରେ ବିକିଲେ ମୂଳ ସୁଦ୍ଧା ବୁଡ଼ିଯିବ ।" ଆଉ ଜଣେ କହିଲା, "ସେ ତ ପାଗଳ ସତ । କିନ୍ତୁ ତା ଯୋଗେ ଯେ ଆମର ବେପାର ବୁଡ଼ିବାକୁ ବସିଲାଣି ।"

ଏହି ସମୟରେ ଶେରିଫ୍ ଘୋଡ଼ାରେ ଚଢ଼ି ବଜାରକୁ ଆସିଲେ । ତାଙ୍କୁ ଦେଖି ବେପାରୀମାନଙ୍କର ମନରେ ଟିକିଏ ସାହସ ଆସିଲା । ସେତେବେଳକୁ ଶେରିଫ୍ ଦେଖି ପାରିଥିଲେ ଯେ ଗୋଟାଏ ମାଂସ ଦୋକାନ ଆଗରେ ଖୁବ୍ ଭିଡ଼ ହୋଇଛି । ଘଟଣାଟା କଅଣ ଜାଣିବା ପାଇଁ ସେ ସେଇଠାକୁ ଚାଲିଲେ । ସେଠାରେ ପହଞ୍ଚି ସେ ବୁଝିଲେ ଯେ ଲୋକଟା ମାଗଣାରେ ମାଉଁସ ବାଣ୍ଟି ଦେଉଛି ।

ରବିନ୍ ଖଣ୍ଡକୁ ଖଣ୍ଡ ମାଂସ ଗ୍ରାହକମାନଙ୍କୁ ବଢ଼ାଇ ଦେଉଥାଏ, ଏହି ସମୟରେ ଶେରିଫ ତା ପାଖରେ ପହଞ୍ଚି ଯାଇ କହିଲେ, "ହେ କଂସେଇ, ତୁ କିଏ ?" ଲୋକମାନେ ଶେରିଫଙ୍କୁ ବାଟ ଛାଡ଼ି ଦେଇ ଆଡ଼େଇ ହୋଇ ଯାଇଥିଲେ ।

ଛଦ୍ମବେଶୀ ରବିନ କହିଲା, "ମୁଁ ଜଣେ ଗରିବ ଚାଷୀ । ଏଠୁ ବହୁତ ଦୂରରେ ମୋର କିଛି ଜମି ଅଛି । ମାତ୍ର ମୁଁ ମୋର ଜମିରୁ ଗୁଡ଼ିକଙ୍କ ଠାରୁ କିଛି ପାଏ । ଶସ୍ତାରେ ମାଉଁସ ବିକିଲେ ମୋର କିଛି ଲାଭ ହୋଇଯିବ ବୋଲି ଏଠାକୁ ଆସିଛି ।" ରବିନ୍ କଥା କହିଲା ବେଳେ ଜଣେ ବୋକା ପରି ବୋଧ ହେଉଥାଏ ।

ସହରର ଲୋକେ ମଧ୍ୟ ଭାବୁଥିଲେ ଯେ ଲୋକଟା ଅସଲ ବୋକା ।

ଶେରଫ ଟିକିଏ ହସି ମନେ ମନେ ଚିନ୍ତାକଲେ, "ବାସ୍ତବିକ ଏ ଲୋକଟା କେଡ଼େ ମୂର୍ଖ । ସେ ଭାବୁଛି ଯେ ମାଉଁସ ଶସ୍ତାରେ ବିକିଲେ ବେଶୀ ଲାଭ ହେବ । ଏଭଳି ବୋକା ଆଉ କିଏ ଅଛି ?"

ଶେରଫ ତାକୁ ପଚାରିଲେ, "ଆଚ୍ଛା, କହତ, ତୋର ଜନ୍ତୁ କେତୋଟି ?"

ରବିନ୍ କହିଲା, "ତା କଅଣ ମୁଁ ଜାଣେ ? ମୁଁ ତ କେବେ ଗଣି ନାହିଁ । ତେବେ ଅନେକଗୁଡ଼ିଏ । ବୋଧହୁଏ ଶହେକରୁ ବେଶି ହେବେ ।"

ଶେରଫ ଭାବିଲେ ଯେ ଏ ପାଗଳଠାରୁ ନାମମାତ୍ର ମୂଲ୍ୟରେ ବା କିଛି ନ ଦେଇ ସେ ଗୋରୁଗାଈଗୁଡ଼ିକ ପାଇପିବେ । ସେଥିପାଇଁ ଚେଷ୍ଟା କରିବାକୁ ତାଙ୍କ ମନ ବଳିଲା । ସେ କହିଲେ, "ସେଗୁଡ଼ାକ ବିକି ଦେଉ ନାହୁଁ କାହିଁକି ? ତାହାହେଲେ ତ ତୋର ଢେର୍ ଲାଭ ହେବ ।"

ରବିନ୍ ଆଖି ମିଟି ମିଟି କଲା ।

ରବିନ୍ ଏଥିରେ କୃତାର୍ଥ ହେଲାପରି ଛଳନାକରି କହିଲା, "ଆଜ୍ଞା, ଆପଣ ଜଣେ ଭାରି ଦୟାଳୁ ଲୋକ । ମୋ ପଶୁଗୁଡ଼ିକ ଦେଖିବାକୁ ଇଚ୍ଛା ଥିଲେ ଆପଣ ଯେତେବେଳେ ଇଚ୍ଛା ସେତେବେଳେ ମୋ ସଙ୍ଗେ ଆସି ପାରନ୍ତି ।"

ଶେରଫ ସେଦିନ ତାଙ୍କ ଗଡ଼ରେ ଖାଇବା ପାଇଁ ରବିନ୍‌କୁ ନିମନ୍ତ୍ରଣ କଲେ । ସେଇଠାରେ ଦରଦାମ ଛିଡ଼ିବାର କଥା ହେଲା । ଛଦ୍ମବେଶୀ ରବିନ୍ ତାର ଶତ୍ରୁ ଶେରଫଙ୍କ ସଙ୍ଗେ ତାଙ୍କ ଗଡ଼କୁ

ଗ୍ଧଲନ୍ତ । ତାକୁ ହସ ମାଡୁଥାଏ; ମାତ୍ର ସେ ନିଜର ମନୋଭାବ କାହାରିକୁ ଜାଣିବାକୁ ଦେଲେନାହିଁ ।

ଗଡ଼ରେ ଦୁହେଁଯାକ ଏକାଠି ବସି ଖାଇଲେ । ଖାଇସାରି ରବିନ୍ କହିଲା, "ଉଃ, ଅନେକଦିନ ହେଲା ମୋତେ ଏପରି ଖାଦ୍ୟ ମିଳି ନ ଥିଲା !"

କଥାଟା ଅବଶ୍ୟ ସତ । ଶେରିଫଙ୍କର ମନ ତ ଶ୍ରେଷ୍ଠ । ସେ ଭାବିଥିଲେ ଯେ, ସେ ଲୋକଟା ଗୋଟାଏ ଗରିବ, ମୂର୍ଖ ଚଷା । ସେଥିପାଇଁ ସେ ତାକୁ ଅତି କଦର୍ଯ୍ୟ ଖାଦ୍ୟ ଖାଇବାକୁ ଦେଇଥିଲେ ।

ଶେରିଫ କହିଲେ, "ଏବେ ଦରଦାମ୍ କଥା ପଡୁ ।"

ରବିନ୍ ପ୍ରଥମେ ଗୋଟାଏ ମୋଟା ଦାମ୍ କହିଲା । ଶେରିଫ ସେ ଦାମ୍‌ଟାକୁ ହସରେ ଉଡ଼େଇ ଦେଲେ । ଅସଲ କଥା ହେଉଛି—ଯେଉଁ ଦାମ୍ ସ୍ଥିର ହେଉ ନା କାହିଁକି ସେଥିପାଇଁ ରବିନ୍‌ର ଆଦୌ ଚିନ୍ତା ନ ଥିଲା । ଶେଷରେ ସ୍ଥିର ହେଲା ଯେ ତିନିଶ ପାଉଣ୍ଡ ଦେଇ ଶେରିଫ ସମଗ୍ର ପଶୁପଲଟିକୁ କିଣିନେବେ ।

ପରଦିନ ସକାଳୁ ଶେରିଫ ଘୋଡ଼ାରେ ଚଢ଼ି ବାହାରିଲେ । ଛଦ୍ମବେଶୀ ରବିନ୍ ଆପଣା ଗାଡ଼ିରେ ଗ୍ଧଲିଲା । କ୍ରମେ ଶେରଉଡ୍ ଜଙ୍ଗଲ ପାଖେଇ ଆସିଲା । କଂସେଇ ରବିନ୍‌ହୁଡ଼ ବିଷୟରେ ଗଳ୍ପ କହିବାକୁ ଲାଗିଲା । ଶେରିଫ ସହଜେ ଭୟାଳୁ ଲୋକ । କାଳେ ରବିନ୍ ସାଥିରେ ଭେଟ ହୋଇଯିବ, ଏହି ଭୟରେ ତାଙ୍କ କଲିଜା ଥରି ଉଠିଲା । ମାତ୍ର ସେ କଂସେଇ ଆଗରେ ନିଜର ଭୟ ପ୍ରକାଶ କଲେନାହିଁ ।

ବାହାଦୁରି ଦେଖାଇବା ପାଇଁ ଶେରିଫ କହିଲେ, "ରବିନ୍‌ହୁଡ଼ ସାଥିରେ ଦେଖାହେଲେ ମୋର ଭାରି ଆନନ୍ଦ

ହୁଅନ୍ତା । କିନ୍ତୁ ସେ ସଇତାନ ମୋ ହାବୁଡ଼ରେ କେବେ ପଡ଼ୁନାହିଁ । ମୋତେ ଲୁଚି ରହୁଛି ।”

କଂସେଇ କହିଲା, “ବୋଧହୁଏ ସେ ଶୁଣିପାରିଛି ଯେ ଆପଣ ଏକା ଏକା ତାକୁ ଧରି ବାନ୍ଧିନେବେ ବୋଲି କହିଛନ୍ତି ।”

ଶେରିଫ—ହଁ, ଶୁଣିଥିବ । ମୁଁ ଯେତେବେଳେ ତାକୁ ଧରିବି, ସେତେବେଳେ ସେ ନିଶ୍ଚୟ ପସ୍ତେଇବ ।

ବଣଭିତରେ କିଛିଦୂର ଚାଲିବେଳକୁ ପଲେ ହରିଣ ଦେଖାଗଲେ ।

କଂସେଇ କହିଲା, “ମୋର ଯେଉଁ ଜନ୍ତୁଙ୍କ କଥା ମୁଁ କହୁଥିଲି ସେଇଟି ଏଇଠାରେ ଚରୁଛନ୍ତି ।”

ଶେରିଫ ଲଗାମ ଟାଣି ଘୋଡ଼ାର ଗତି ବନ୍ଦକରି ରହିଗଲେ । ତା'ପରେ ଟିକିଏ ବିରକ୍ତ ହୋଇ କହିଲେ,“ଏଗୁଡ଼ାକ ସବୁ ରଜାଙ୍କ ହରିଣ ! ବଣଜୀବଙ୍କ ଉପରେ ରଜାଙ୍କ ଛଡ଼ା ଆଉ କାହାର ଅଧିକାର ଥାଇପାରେ ?”

କଂସେଇ ହସି ହସି କୁରୁଚା ଚମ୍ପ ତାର ଶିଙ୍ଗାଟି ବାହାର କରି ଖୁବ୍ ଜୋରରେ ତିନିଥର ଫୁଙ୍କି ଦେଲା ଓ ଶେରିଫଙ୍କୁ କହିଲା, “ମୁଁ ଆପଣଙ୍କୁ କଥାଟା ବୁଝାଇ ଦେଉଛି ।” ଗୃହୁଁ ଗୃହୁଁ ବଣଭିତରୁ ରବିନ୍‌ଦଳର ଲୋକେ ସେଠାରେ ପହଞ୍ଚିଗଲେ ।

ରବିନ୍ କହିଲା, “ସ୍ୱୟଂ ରବିନ୍‌ହୁଡ଼ଙ୍କୁ ଦେଖିବାପାଇଁ ଆପଣ ଏତେ ଅଧୀର ହେଉଥିବାର ଦେଖି ମୁଁ ଆପଣଙ୍କୁ ହତାଶ କରିବା ଉଚିତ ମନେ କରୁନାହିଁ । ମୁଁ ହେଉଛି ସେଇ ରବିନ୍‌ହୁଡ଼ । ଏବେ କଅଣ ହୁକୁମ୍ ହେଉଛି, କହନ୍ତୁ ।”

ଏହା କହି ରବିନ୍ ଗୋଟିଏ ନମସ୍କାର ପକାଇଲା । ଶେରିଫଙ୍କ ଦେହର ରକ୍ତ ସେତେବେଳକୁ ଭୟରେ ପାଣି ପାଟି ଆସୁଥାଏ ।

ତଥାପି ସେ ଘଟନାକୁ ଉଡ଼ାଇ ଦେବାଭଳି ଛଳନାକଲେ, ଟିକଏ ହସି କହିଲେ, "ତୁମର ସାକ୍ଷାତ ପାଇ ମୁଁ ବିଶେଷ ଆନନ୍ଦିତ । ତୁମେ ଟିକଏ କୌତୁକ କରିବାକୁ ବସିଥିଲ ତାହା ତ ହୋଇଗଲା । ମୋର ଆଶା, ଏଣିକି ମୁଁ ମୋ ଗନ୍ତବ୍ୟକୁ ଫେରିଯିବାକୁ ମୋତେ ଛାଡ଼ିଦେବ ।"

ରବିନ୍ କୌତୁକ କରି କହିଲା, "ନା, ନା, ତା କପରି ହେବ ? ମୋତେ ଭାରି ଭୋକ ହେଲାଣି । ମୁଁ ମଧ୍ୟ ନିଶ୍ଚୟ କରି ଜାଣେ ଯେ ମୁଁ ଯେତିକି ଖାଇବି ଆପଣ ମଧ୍ୟ ସେତିକି ଖାଇବେ । ପାଖରେ ଖାନା ତିଆରି ହୋଇ ରହିଛି । ଏପରିସ୍ଥଳେ ଆପଣଙ୍କୁ ଖାଇବାକୁ ନ ଦେଇ ଛାଡ଼ି ଦେବାଟା ନିହାତି ଅଭଦ୍ରତା ହେବ ନୁହେଁ କି ?"

ରବିନ୍‌ର ଆଦେଶରେ ଚାରିଜଣ ଲୋକ ମିଳି ଶେରିଫଙ୍କର ଆଖିରେ ଅନ୍ଧପୋଟଳି ବାନ୍ଧି ଦେଲେ । ଶେରିଫ ଦେଖିଲେ ଯେ ଏ ସ୍ଥଳରେ ତାଙ୍କର କିଛି ମାତ୍ର ଚୁକ୍ତି ନାହିଁ । ତେଣୁ ସେ ଟିକଏ ହେଲେ ବାଧା ଦେଲେ ନାହିଁ । ତା'ପରେ ସେମାନେ ଶେରିଫଙ୍କୁ କିଛିଦୂର ନେଇ ବଣର ଅନ୍ୟ ଏକସ୍ଥାନରେ ପହଞ୍ଚିଲେ । ସେଠାରେ ଦଳର ଅନ୍ୟ ଲୋକେ ଖାଦ୍ୟ ପ୍ରସ୍ତୁତ କରୁଥିଲେ ।

ଏବେ ଶେରିଫଙ୍କ ଆଖିରୁ ଅନ୍ଧପୋଟଳି ଖୋଲି ଦିଆଗଲା ।

ରବିନ୍ ପାଚକମାନଙ୍କୁ ଲକ୍ଷ୍ୟକରି କହିଲା, "ଆଜି ଗୋଟିଏ ଭଲ ଭୋଜିର ଆୟୋଜନ କର । ଆମର ଜଣେ ବିଶିଷ୍ଟ ଅତିଥି ଆସିଛନ୍ତି । ତାଙ୍କୁ ସମ୍ମାନ ଦେଖାଇବା ଉଚିତ ।"

ଅଳ୍ପ ସମୟ ମଧ୍ୟରେ ଭୋଜି ପ୍ରସ୍ତୁତ ହୋଇଗଲା । ସକାଳୁ ଘୋଡ଼ାରେ ଆସି ଶେରିଫ ଖୁବ୍ କ୍ଳାନ୍ତ ହୋଇ ପଡ଼ିଥିଲେ । ସେ

ବେଶ୍ ତୃପ୍ତିରେ ଭୋଜନକଲେ । ଭୋଜରେ ଯେ ରଜାଙ୍କ ବଣର ହରିଣ ମରା ହୋଇ ରନ୍ଧା ଯାଇଥିଲା ସେ କଥା ଶେରଫ ଜାଣିଲେ । କିନ୍ତୁ ଖାଇବାବେଳେ ଏକଥା ସେ ଜାଣି ସୁଦ୍ଧା ଆପତ୍ତି କରି ନ ଥିଲେ । ରବିନ୍ ନ ହସି ରହି ପାରିଲା ନାହିଁ । ସେ କହିଲା, "ଆମେ ତ ଆଉ ରଜାଙ୍କ ପାଖକୁ ଯାଇ ଆପଣ ତାଙ୍କ ହରିଣମାଂସ ଖାଇବା କଥା କହୁନାହୁଁ ? ଆପଣ ଯେବେ ନିଜେ ଯାଇ ତାଙ୍କୁ ଏକଥା ଜଣାନ୍ତି, ତେବେ ସେ ଭିନ୍ନ କଥା !"

ଏଥିରେ ଶେରିଫଙ୍କର କିଛି କହିବାର ନ ଥିଲା । ସେ ଚୁପ୍ ରହିଲେ । ସେ କିପରି ରବିନ୍‌ହୁଡ୍ ଓ ତାର ଲୋକଙ୍କ ହାତରୁ ଖସି ବଣରୁ ବାହାରି ଯିବେ ତାହାହିଁ ଚିନ୍ତା କରୁଥାନ୍ତି । ରବିନ୍ ଶେରିଫଙ୍କର ଏହି ମତଲବ ବୁଝି ପାରିଥିଲା । ସେ କହିଲା, "ଆପଣ ବିଦାୟ ନେଇ ଯିବା ଆଗରୁ କାମଟା ତୁଟିଯାଉ । କାଲିହାଟରେ ଆମର କଥା ହୋଇଥିଲା, ମୋର ଜନ୍ତୁଗୁଡ଼ିକ ନେଇ ଆପଣ ଟଙ୍କା ଦେବେ । ଏବେ ଆପଣ ସେ ଟଙ୍କାତକ ଦେଇପକାନ୍ତୁ ।"

ଶେରିଫ କହିଲେ, "ତୁମେ ମୋତେ ଠକିଛ । ଆମର କଥା ହୋଇଥିଲା, ଗୋରୁଗାଈ କିଣାବିକା ନେଇ ।"

ରବିନ୍ ଟିକିଏ ହସି କହିଲା, "ଗୋରୁଗାଈ କଥା ଆଦୌ ପଡ଼ିନାହିଁ । ଠିକ ମନେପକାନ୍ତୁ । ମୁଁ ବରାବର ମୋ ଜନ୍ତୁଗୁଡ଼ିକ କଥା କହିଥିଲି । ଏଗୁଡ଼ିକ ତ ନିଶ୍ଚୟ 'ଜନ୍ତୁ' ବୋଲି ଆପଣ ସ୍ୱୀକାର କରିବେ ।"

ରବିନ୍ ଛାଡ଼ିବାର ପାତ୍ର ନୁହେଁ । ଶେରିଫଙ୍କ ପୋଷାକ ତଲାସି କରାଗଲା । ସେଥିରୁ ଚକଚକିଆ ସୁନାର ତିନିଶହ ପାଉଣ୍ଡ ବାହାରିଲା ରବିନ୍ ସେତକ ନେଲା ।

ପୁଣି ଶେରିଫଙ୍କର ଆଖି ବନ୍ଧାଗଲା । ରବିନର କେତେଜଣ ସାଥୀ ତାଙ୍କୁ ନେଇ ବଣର ସୀମାରେ ଛାଡ଼ିଦେଇ ଆସିଲେ । ସେଇଠାରେ ତାଙ୍କ ଆଖିରୁ ଅନ୍ଧପୋଟଳ ଖୋଲି ଦିଆଗଲା ।

ଶେରିଫ ଯାହା ଭୋଗିବାର ତା ଭୋଗିଲେ । ତାଙ୍କର ମନ ରାଗରେ ଜଳୁଥାଏ । ସେ ନଟିଙ୍ଗହାମ୍‌କୁ ଫେରିଯାଇ ପ୍ରତିଜ୍ଞା କଲେ, "ମୋର ପ୍ରାଣ ଯାଉ ପଛକେ ରବିନ୍‌ହୁଡ଼କୁ ନ ଧରି ଛାଡ଼ିବି ନାହିଁ ।"

———

## ( ୧୦ )

## ଉଇଲ୍ ସ୍କାର୍ଲେଟ

ଦିନେ ସକାଳେ, ରବିନ୍ ଲିଟିଲ୍ ଜନ୍‌ର ସ୍କନ୍ଧରେ ହାତ ମାରି କହିଲା, "ଆହା କେଡ଼େ ସୁନ୍ଦର ସକାଳ ।" ସେତେବେଳକୁ ଲିଟିଲ୍ ଜନ୍ ଗୋଟିଏ ଗଛମୂଳରେ ନିଶ୍ଚିନ୍ତରେ ଶୋଇଥିଲା । ରବିନ୍‌ର ଡାକ ଶୁଣି ସେ ଆଖି ମେଲାଇ ଉଠିପଡ଼ିଲା ।

ସେ କହିଲା, "ତୁମେ ଆଜ ଖୁବ୍ ଭୋର୍‌ରୁ ଉଠିପଡ଼ିଛ ।" ସୂର୍ଯ୍ୟ ପୂର୍ବ ଦିଗ୍‌ବଳୟରେ ଉଠି ତାଙ୍କର କିରଣ ବିଞ୍ଛିଦେଉଥିଲେ । ଧୀର ପବନରେ ଗଛର ପତ୍ରଗୁଡ଼ିକ ଦୋହଲୁଥିଲା । ସୂର୍ଯ୍ୟକିରଣ ତାହା ଭିତର ବାଟେ ତଳେ ପଡ଼ୁଥିଲା ।

ସେଦିନ ରବିନ୍ ଏକୁଟିଆ ଜଙ୍ଗଲ ଭିତରକୁ ପଶିଥିଲା । ତଳେ ପତ୍ର ପଡ଼ିଥିବାରୁ ପାଦକୁ କୋମଳ ଲାଗୁଥାଏ । ମଥା ଉପରେ ସବୁଜ ଡାଳ ପତ୍ର । ମଝିରେ କୋମଳ ସୂର୍ଯ୍ୟକିରଣ ତାର ମୁହଁକୁ ସ୍ପର୍ଶ କରି ଯାଉଥାଏ । ସତେ ଯେପରିକି କୌଣସି ବନ୍ଧୁ ହସ୍ତର ମଧୁର ସ୍ପର୍ଶ । ପୁଣି ଥରେ ମେରିଆନ ସହିତ ଦେଖା କରିବାକୁ ଓ ତାହାର ମଧୁର ହାସ୍ୟ ଧ୍ୱନି ଶୁଣିବାକୁ ତାର ମନ ଅଥୟ ହେଲା । ଅବଶ୍ୟ ସାଥୀମାନଙ୍କ ସହିତ ତାହାର ବନ୍ଧୁତା ଅତି ପ୍ରଗାଢ଼ ଥିଲା । କିନ୍ତୁ ପୂର୍ବବନ୍ଧୁମାନଙ୍କୁ ସେ ଭୁଲି ପାରି ନ ଥିଲା । ଏହି ରମଣୀୟ ପ୍ରଭାତରେ ସେହି ପୁରାତନ ବନ୍ଧୁମାନଙ୍କ ମୁଖ ଦର୍ଶନ କରିବାକୁ ସେ ବାହାରି ପଡ଼ିଲା ।

ଜଙ୍ଗଲର ପ୍ରାୟ ଶେଷ ସୀମାରେ ସେ ପହଞ୍ଚିଲା । ସେହିଠାରୁ ନଟିଂହାମ୍‌କୁ ରାସ୍ତା ପଡ଼ିଛି । ଏହିଠାରେ ଦୈବାତ୍ ଜଣେ ଯୁବକକୁ

ଦେଖିଲା ମାତ୍ରେ ସେ ଜାଣିପାରିଲା ଯେ, ଯୁବକଟି କୌଣସି ଉଚ୍ଚ କୁଳର ସନ୍ତାନ । ତାହାର କୁର୍ତ୍ତାଟି ରେଶମରେ ତିଆରି ଓ ତା ପାଦର ମୋଜା ଯୋଡ଼କ ଗାଢ଼ ନୀଳରଙ୍ଗର ।

ତାହାକୁ ଦେଖି ରବିନ୍ ମନେ ମନେ ବିଚାରିଲା, "ଏ ସବୁଜ ରଙ୍ଗର ଲତାପତ୍ର ଓ ଧୂସର ବର୍ଣ୍ଣର ବୃକ୍ଷ ମଧ୍ୟରେ ଏହି ଯୁବକର ପୋଷାକ ସ୍ପଷ୍ଟ ବାରିହେବ । କୌଣସି ଶତ୍ରୁ ଇଚ୍ଛାକଲେ ଅକ୍ଳେଶରେ ତାକୁ ଲକ୍ଷ୍ୟକରି ଶର ମାରି ପାରିବ ।" ରବିନ୍ ଠିଆହୋଇ ଭାବିଲା, "ଏ ଲୋକଟାର ଏଠାକୁ ଆସିବାର ନିଶ୍ଚୟ କୌଣସି ଉଦ୍ଦେଶ୍ୟ ଅଛି ।" ଯୁବକଟି ଠିଆହୋଇ ଜଙ୍ଗଲ ଆଡ଼କୁ ଚାହିଁଥିଲା । କିଛି ଦୂରରେ ପଲେ ହରିଣ ଚରୁଥିଲେ । ସେମାନେ ଏ ଲୋକ ଦୁଇଜଣଙ୍କୁ ଦେଖିପାରି ନ ଥିଲେ । ତେଣୁ ସେମାନଙ୍କର ପଳାଇଯିବାର କୌଣସି ଲକ୍ଷଣ ଦେଖାଯାଉ ନ ଥିଲା ।

ଯୁବକଟି ମଧ୍ୟ ରବିନ୍‌କୁ ଦେଖିପାରି ନ ଥିଲା । ସେ ଧୀର ସ୍ୱରରେ ମନକୁ ମନ କହିଲା "ଆଜି ଏହି ପଲରୁ ଗୋଟିଏ ମୋଟା ହରିଣ ମୋର ଖାଦ୍ୟ ହେବ ।" ଏହା କହି ସେ ଗୋଟିଏ ଶର ବାହାର କରି ଆପଣାର ଧନୁରେ ଖଞ୍ଜିଲା ଓ ହରିଣ ଆଡ଼କୁ ଲକ୍ଷ୍ୟ କଲା । ରବିନ୍ ଚିତ୍କାର କରି ଉଠିଲା, "ହେ ଭଗବାନ !"

ଏକଥା ସମସ୍ତଙ୍କୁ ଜଣା ଯେ ବଣର ହରିଣଗୁଡ଼ିକ ରଜାଙ୍କର । ରଜାଙ୍କ ହରିଣକୁ ମାରିବା ଏକ ଗୁରୁତର ଅପରାଧ । ଯେଉଁମାନେ ରାଜଦଣ୍ଡରୁ ରକ୍ଷା ପାଇବାକୁ ବଣକୁ ପଳାଇ ଯାଇଥାନ୍ତି, ସେମାନେ ରଜାଙ୍କର ହରିଣ ମାରି ଖାଇଥାନ୍ତି । କିନ୍ତୁ ଏହି ଭଦ୍ର ଯୁବକଟି ସେ ଶ୍ରେଣୀର ଲୋକ ନ ଥିଲେ । ଧନୁର୍ଦ୍ଧାରୀ ଏହି ଯୁବକଟି ହରିଣ ପଲଠାରୁ ପ୍ରାୟ ଚାଳିଶ ଗଜ ଦୂରରେ ଥିଲେ । ସେ ସେହିଠାରେ ରହି ଗୋଟିଏ ହରିଣକୁ ଲକ୍ଷ କରି ଶର ମାରିଲେ । ସଙ୍ଗେ ସଙ୍ଗେ ହରିଣଟି ଟଳି ପଡ଼ିଲା । ଅନ୍ୟ ହରିଣମାନେ ଭୟରେ ପଳାଇଗଲେ ।

ରବନ୍ କହି ଉଠିଲା, । "ସାବାସ, ସାବାସ୍, ବେଶ୍ ସୁନ୍ଦର ଲକ୍ଷ ।"

ଏତେବେଳ ଯାଏ ଯୁବକଟି ରବନ୍‌କୁ ଦେଖି ନ ଥିଲା । ତାହାର କଥା ଶୁଣି ସେ ବିସ୍ମୟରେ ଚମକି ପଡ଼ିଲା । ସେ ପ୍ରଥମେ ଭାବିଲା ଯେ ଏହି ଲୋକଟି ନିଶ୍ଚୟ ଜଙ୍ଗଲ ପାଖରେ ରହୁଥିବା ଲୋକଙ୍କ ମଧ୍ୟରୁ କେହି ହୋଇଥିବ । ଯଦି ତାହା ହୁଏ, ତାହା ହେଲେ ସେ ରଜାଙ୍କ ହରିଣ ମାରୁଥିବା କଥା ଜଣା ପଡ଼ିଯିବ । ଏଥିପାଇଁ ତାର ମୃତ୍ୟୁ ଦଣ୍ଡ ହେବା ଖୁବ୍ ସମ୍ଭବ । ସେ ଭାବିଲା, ବୃଥା କାହିଁକି ଫାସି ଖୁଣ୍ଟରେ ଝୁଲି ପ୍ରାଣ ହରାଇବ । ବରଂ ଏ ଲୋକଟି ମୋର ବିରୁଦ୍ଧରେ ଅଭିଯୋଗ ଆଣିବା ପୂର୍ବରୁ ମୁଁ ତାକୁ ଆକ୍ରମଣ କରିବା ଭଲ । ଏହିପରି ଭାବିକି ସେ ରବନ୍ ଆଡ଼କୁ କେତେ ପାହୁଣ୍ଡ ଆଗେଇ ଆସିଲା । ଧନୁରେ ଆଉ ଗୋଟିଏ ଶର ଖଞ୍ଜି ଖଞ୍ଜି କହିଲା, "ଗୋଟିଏ ଶରର ଲକ୍ଷ ଯେପରି ଠିକ୍ ଭେଦିଲା ଆଉ ଗୋଟିଏ ଶର ମଧ୍ୟ ଠିକ୍ ସେହିପରି ଲକ୍ଷ୍ୟଭେଦ କରିପାରେ । ତୁ ଯଦି ଏଠାରୁ ପଳାଇ ନ ଯାଉ, ତେବେ ଏ ଶରଟିର ଲକ୍ଷ୍ୟ ହେବ ତୋର ଛାତି ।"

କିନ୍ତୁ ରବନ୍ ଆଦୌ ଘୁଞ୍ଚିଲା ନାହିଁ । ସେ ସେହିଠାରେ ଠିଆ ହୋଇ ଯୁବକଟିକୁ ଚାହିଁଥାଏ । ଦୁହେଁଯାକ ନୀରବରେ ପରସ୍ପରକୁ ଚାହିଁଥାନ୍ତି ଓ ଅନ୍ୟର ଆକ୍ରମଣକୁ ଅପେକ୍ଷା କରିଥାନ୍ତି ।

ରବନ ହସି ଉଠିଲା । ତା ପରେ କହିଲା, "ମୁଁ ପୁଣି କହୁଛି, ତୁମେ ବେଶ୍ ବାହାଦୁରୀ ଦେଖାଇଛ, ସାବାସ୍, ଶ୍ଚଳଶ ଗଜ ଦୂରରୁ ଏକା ଶରକେ ହରିଣଟାଏ ମାରିବା ସାଧାରଣ ଧନୁର୍ଦ୍ଧାରୀ ପକ୍ଷରେ ସମ୍ଭବ ନୁହେଁ ।" ହଠାତ୍ ଯୁବକଟି ଧନୁକୁ ଫିଙ୍ଗିଦେଇ ରବନ୍ ଆଡ଼କୁ ଚାଲି ଆସିଲା । ସେ ହାତ ମୁଠାକରି ରବନ୍‌କୁ ଦେଖାଇ

କହିଲା, "ତୁ ଯେବେ ଏ ମଣ୍ଡପଶରଭୋଗୁ -ଏଠାରୁ ନେଇ ନ ଯାଉ ତେବେ ପରେ ଅନୁତାପ କରିବୁ । ଆଚ୍ଛା କହ ଦେଖି, ମୁଁ ଯଦି ଗୋଟିଏ ହରିଣ ମାରିଲି, ସେଥିରେ ତୋର କଣ ହେଲା ?" ରବନ୍ ଯୁବକର ଏହି କ୍ରୋଧ ଦେଖି ଦାନ୍ତ ଚିପି କହିଲା, "ମୁଁ ତ ତୋତେ ପ୍ରଶଂସା କରିବା ଛଡ଼ା ଆଉ କିଛି କହୁନାହିଁ । ତେବେ କେହି ତୋତେ ଅପମାନ ଦେଲେ ତୁ କଣ ନ କରିବୁ ? ତୁ କଣ ମଣିଷ ନା ବଣର ପଶୁ ?"

ଏହା ଶୁଣି ଯୁବକ କହିଲା, "ତୋ ଥଟ୍ଟା ରଖି ଦେଇଥା । ଆ, ମୋ ସାଥିରେ ଲଢ଼େଇ କର ।" ସଙ୍ଗେ ସଙ୍ଗେ ରବନ୍ ଉତ୍ତର କଲା, "ମୁଁ ଲଢ଼େଇ କରିବା ପାଇଁ ଖୁବ୍ ପ୍ରସ୍ତୁତ । ଲଢ଼େଇ ପାଇଁ ଲଢ଼େଇ କରିବାକୁ ମୋତେ ଭଲଲାଗେ । କିନ୍ତୁ ତୋ ସଙ୍ଗରେ ଲଢ଼େଇ କରିବାର କି କାରଣ ଅଛି ? କୌଣସି ଅଭଦ୍ର ଲୋକ ସାଥିରେ ବାଟରେ ଦେଖା ହେଲେ ମୁଁ କଣ ତା ସହିତ ଲଢ଼େଇ ସାହସିକ ମୋର ସମସ୍ତ ନଷ୍ଟ କରିବି ? ତୋ ଅପେକ୍ଷା [illegible]
ସାହସୀ ଲୋକ ଦେଖିଲେ ମୁଁ ତା ସହିତ ମିଶିଲି ମୁଁ ତ ଏଠିକି

ରବନର କଥାଗୁଡ଼ିକ ଉତ୍ତେଜକ ଉର ଦଳରେ ମିଳି ବଣରେ
ସ୍ୱରରେ କହୁଥିଲା । ଅବଶ୍ୟ ସେଥି
ଜାଣିଥିଲା ଯେ ଉତ୍ତେଜନାପୂର୍ଣ୍ଣ ବ "ସତେ !" ସେ ଦେଖିଲା ଯେ
ଶାନ୍ତ ହେବନାହିଁ । କରିବା ବଡ଼ ସହଜ କଥା ।

ତଥାପି ଯୁବକଟି ଚିହ୍ନାର କହିଲା, "ତା ସାଥିରେ ମିଶିବା
ଗଲ ।"
ତୁ କଅଣ ଜାଣୁ ନା ଯେ
ସେ ଏତିକି କହି ତା ଅପମାନର କୁ ଏଡ଼ିବା ପାଇଁ ବଣରେ
ଧରିବାକୁ ଯାଉଥିଲା । କିନ୍ତୁ [illegible] ।"
ତାର ଧନୁ ଧରା ପ୍ରସ୍ତୁତ ହୋଇ ରହିଛି ।

• ଛବନ୍ କହିଲା, "ଦେଖ୍, ଆଜି ପାତେ ଆଗକୁ ଆସୁ ତ ମୋ
ଶର ତୋ ଗ୍ରୀବା ଛେଦିଯିବ । ଯଦି ଲଢ଼େଇ କରିବାକୁ ଚାହୁଁଛୁ
ତୋ ପାଖରେ ଖଣ୍ଡା ଅଛି । ମୋ ପାଖରେ ମଧ୍ୟ ଖଣ୍ଡା ଅଛି । ତୁ
ଉଦ୍ୟସରର ପଶୁ ପିଲ ବଶୁଛୁ । ତେଣୁ ତୋ ପାଖରେ ଖଣ୍ଡା
ରହିବାର କଥା । ବେଶ, ତୁ ଖଣ୍ଡା ବାହାର କର । ଦୁହେଁଯାକ
ତରବାରି ଧରି ଲଢ଼େଇ କରିବା ।"

ଏହା ଶୁଣିଲା କ୍ଷଣି ଯୁବକଟି ଖୋପରୁ ଖଣ୍ଡା ବାହାର କରି
ଯୁଦ୍ଧ କରିବାକୁ ତିଆରି ହୋଇଗଲା । ଦୁହେଁଯାକ ଖଣ୍ଡା ଲଢ଼େ
ଆରମ୍ଭ କରିଦେଲେ ।

ଅଳ୍ପ ସମୟ ଭିତରେ ରବନ୍ ବୁଝିପାରିଲା ଯେ ଯୁବ
ସହଜ ଖେଳୁଆଡ଼ ନୁହେଁ । ସେ ଏପରି ଭାବରେ ଖଣ୍ଡା ଚଳାଇଲା
ଯେ ଅତି କଷ୍ଟରେ ରବନ୍ ଆତ୍ମରକ୍ଷା କରିବାକୁ ସମର୍ଥ ହେଲା ।
ଖଣ୍ଡା ଚଳାଇବାର ଯେତେ କୌଶଳ ରବନ୍‌କୁ ଜଣାଥିଲା, ସେ ସ
କଲା ମାତ୍ର ତାର ପ୍ରତିଦ୍ୱନ୍ଦୀ ସହଜରେ ସେ ସବୁକୁ
ଲା ।

ହେଁ ପ୍ରାୟ ଅଣନିଶ୍ୱାସୀ ହୋଇ ପଡ଼ିଲେ ।
କହିଲା, "ଯୁବକଟି ଯେପରି ସାହସୀ,
ଖଣ୍ଡା ଚଳାଇବାରେ ମଧ୍ୟ ସେହିପରି
ଏହିପରି ଜଣେ ଲୋକ ରହିବା ଦର-
ଢ଼େଇରେ ନ ଜିଣିଲେ ସେ ମୋର ଆୟତ୍ତ
ଯାଉନାହିଁ ।"

ରେ ପ୍ରବଳ ଯୁଦ୍ଧ ଚାଲିଲା । ଖଣ୍ଡାରେ ଖଣ୍ଡା ବାଜ
ଉଠୁଥାଏ । ଦୁହିଁଙ୍କର ଖଣ୍ଡା ଚକ୍‌ଚକ୍ ହୋଇ ବିଜୁଳି
ଥାଏ । ବେଳେ ବେଳେ ରବନ୍ ପଛକୁ ହଟି ଆସୁ-

ଥାଏ । ପୁଣି ସେ ଶକ୍ତି ସଗ୍ରହ କରି ଯୁବକକୁ ଆହ୍ଣର ଛଡକୁ ଫେରି ଯିବାକୁ ବାଧ କରୁଥାଏ ।

ଶେଷରେ ରବିନ ଦେଖିଲା ଯେ ଯୁବକ ଦୁର୍ବଳ ହୋଇ ପଡ଼ିଲାଣି । ଆଉ ଟିକିଏ ବଳ ପ୍ରୟୋଗ କରି ଆକ୍ରମଣ କଲେ ସେ ବଶ୍ୟତା ସ୍ୱୀକାର କରିଯିବ । ସେ ନିଜର ସମସ୍ତ ଶକ୍ତି ଓ କୌଶଳ ସହ ଆକ୍ରମଣ କଲା । ଯୁବକର ଆଉ ବଳ ନ ଥିଲା । ରବିନର ଖଣ୍ଡାର ଏକ ପ୍ରହାରରେ ଯୁବକର ହାତରୁ ଖଣ୍ଡାଟି ଖସି ତଳେ ପଡ଼ିଗଲା । ବର୍ତ୍ତମାନ ଯୁବକ ବୁଝି ପାରିଲା ଯେ ତାର ଆଉ ଗତ୍ୟନ୍ତର ନାହିଁ । ତାର ଜୀବନ ଏବେ ଶତ୍ରୁ ହାତରେ । ସେ ଇଚ୍ଛା କଲେ ତାର ପ୍ରାଣ ନେଇ ପାରିବ ।

କିନ୍ତୁ ତାର ପ୍ରାଣ ନେବାକୁ ରବିନ୍‌ର ଇଚ୍ଛା ନ ଥିଲା । ସେ ତାକୁ ଆଘାତ ନ କରି ନିଜର ଖଣ୍ଡାଟି ତଳେ ପକାଇ ଦେଇ କହିଲା "ତୁ କିଏ, ମୁଁ ଜାଣେ ନା । କିନ୍ତୁ ତୁ ଯେ ଦୁଅନା କାହିଁକି, ତୁ ଯେ ଜଣେ ସାହସୀ ଯୁବକ, ଏଥିରେ ସନ୍ଦେହ ନାହିଁ । ବିପଦପୂର୍ଣ୍ଣ ସାହସିକ କାର୍ଯ୍ୟ କରିବାକୁ ତୋର ମନ ହେବା ସ୍ୱାଭାବିକ ।"

ଯୁବକ କହି ଉଠିଲା, "ସେଇଥିପାଇଁ ମୁଁ ତ ଏଠିକି ଆସିଥିଲି । ମୁଁ ଆସିଛି ରବିନ୍‌ହୁଡର ଦଳରେ ମିଶି ବଣରେ ରହିବି ବୋଲି ।"

ରବିନ୍ ହସି ହସି କହିଲା, "ସତେ !" ସେ ଦେଖିଲା ଯେ ଯୁବକଟିକୁ ଆପଣା ଦଳରେ ଭର୍ତ୍ତି କରିବା ବଡ଼ ସହଜ କଥା ।

ତଥାପି ରବିନ୍ ଥଟ୍ଟା କରି କହିଲା, "ତା ସାଥିରେ ମିଶିବା ପାଇଁ ତୋର ମନ ହେଲା କାହିଁକି ? ତୁ କଅଣ ଜାଣୁ ନା ଯେ ଏହିକ୍ଷଣି ତାର ଶତ୍ରୁ ଅନେକ ? ସେ ଆଇନକୁ ଏଡ଼ିବା ପାଇଁ ବଣରେ ଲୁଚିଛି । ଧରାପଡ଼ିଲେ ତାର ମରଣ ନିଶ୍ଚିତ ।"

ଯୁବକ ଉତ୍ତର କଲା, "ମୁଁ ସେ ସବୁ ଜାଣେ । ସମସ୍ତେ ତାର ଶତ୍ରୁ ହୋଇ ପାରନ୍ତି; କିନ୍ତୁ ମୁଁ ତ ନୁହେଁ । ସେ ଯେଉଁସବୁ ଅଦ୍ଭୁତ ସାହସିକ କାମ କରିଛି, ସେ କଥା ଲୁଚିଆଡ଼େ ଜଣାଶୁଣା ତାକୁ ଜାଣିଥିବା ଲୋକେ ମୋ ଆଗରେ ସେସବୁ କଥା କହନ୍ତି ମୋର ମନେ ହୁଏ, ସେ ଦେଖିବାକୁ ତୁମରି ପରି ।"

ରବନ୍ କହିଲା, "ରବନ୍‌ହୁଡ୍ ମୋ ପରି କଅଣ ? ମୁଁ ସ୍ୱୟଂ ହେଉଛି, ସେହି ରବନ୍‌ହୁଡ୍ ।"

ଯୁବକ ଏତେ ଚମକିତ ହୋଇ ଯାଇଥିଲା ଯେ, କଅଣ କହିବ ତାକୁ ବୁଦ୍ଧି ଦିଶିଲା ନାହିଁ । ତା ତୁଣ୍ଡରୁ ଖାଲି ବାହାରି ପଡ଼ିଲା, "ଏଁ, ତୁମେ ରବନ୍‌ହୁଡ୍ !"

ରବନ ଖଣ୍ଡାଟି ଖୋପ ଭିତରେ ରଖି ଦେଇ କହିଲା, "ବଡ଼ ଆଶ୍ଚର୍ଯ୍ୟର କଥା ଯେ ଆମ ଦୁହିଁଙ୍କର ଏପରି ଏକ ବିଚିତ୍ର ପରିସ୍ଥିତିରେ ଭେଟ ହେଲା । ଚାଲ, ଆମ ଦଳର ଲୋକଙ୍କ ପାଖକୁ ଯିବା । ସେମାନେ ତମକୁ ଦେଖିଲେ ନିଶ୍ଚୟ ଆନନ୍ଦିତ ହେବେ । ଏବେ ତୁମେ ଘର ଛାଡ଼ି ଏଠାକୁ ଆସିବାର କାରଣ କୁହ । ତୁମେ କଣ କିଛି ଅନ୍ୟାୟ କାର୍ଯ୍ୟ କରିଛ ।"

ଯୁବକ ଉତ୍ତର କଲା, "ସତକଥା କହିବାକୁ ଗଲେ, ଗୋଟାଏ ଦୁର୍ଘଟଣାରେ ପଡ଼ି ଏଠାକୁ ଆସିଛି । ଦୈବାତ୍ ମୋର ଗୋଟାଏ ଶର ଜଣେ ଚାକର ଦେହରେ ବାଜିଗଲା । ଲୋକଟି ବଞ୍ଚିଛି କି ମଲାଣି କହିପାରିବି ନାହିଁ । ଏଇ ହେଉଛି ମୋର ବିପଦ । ସେ ବଞ୍ଚିଗଲେ ମୋର ବିଶେଷ କିଛି କ୍ଷତି ହେବ ନାହିଁ । କିନ୍ତୁ ସେ ଯେବେ ମରିଯାଏ ଏବଂ ମୁଁ ଧରାପଡ଼େ, ତେବେ ମୋର ଅବସ୍ଥା କଅଣ ହେବ, ତା ବୁଝିପାରୁଥିବ ।"

ରବନ୍ କହିଲା, "ହେବ ଆଉ କଅଣ ? ଡମ ବୈକରେ ଉଡ଼ିଟିଏ ବାନ୍ଧ ଗଛରେ ଝୁଲାଇ ଦେବେ ।"

ଯୁବକ କହିବାକୁ ଲଗିଲା, "ସେଥିପାଇଁ ମୁଁ ମନେକଲି ଯେ ମୁଁ ଆସି ତୁମ ସାଥିରେ ମିଶିବ । ନଟିଙ୍ଗହାମ୍‌ର ଶେରିଫଙ୍କଠାରୁ ଖସି ପଳାଇ ଆସିବା ପରେ ତୁମେ କପଟ ବଣରେ ରହୁଛ, ମୁଁ ଶୁଣିଛି । ତେଣୁ ଧରାପଡ଼ିବା ଆଗରୁ ଏଠାକୁ ପଳାଇ ଆସିଛି ।"

ସର୍ଦ୍ଦାର ରବନ୍ କହିଲା, "ବେଶ୍, ଭଲ କରିଛ । ଯଦି ସାହସ ଦେଖାଇବାର ଇଚ୍ଛା ଥାଏ, ତେବେ ତୁମକୁ ନିରାଶ କରିବାର କାରଣ ନାହିଁ । ମୋର ସାଥୀମାନଙ୍କ ପାଖକୁ ଚାଲ । ସେ ତୁମକୁ ଆପଣାର ଲୋକପରି ବ୍ୟବହାର ଦେଖାଇବେ ।"

ଦୁହେଁଯାକ ସଙ୍ଗହୋଇ ବଣଭିତରେ ଚାଲିଲେ । ଗଲାବେଳେ ରବନ୍ ଭାବୁଥାଏ—ଏ ଲୋକଟି ନୂଆ ହୋଇ ଆମ ଦଳକୁ ଆସିଛି । ଦଳରେ ନୂଆ ହୋଇ କୌଣସି ଲୋକ ଯୋଗଦେଲେ ତାକୁ ଗୋଟାଏ ନୂଆ ନାମ ଦିଆଯିବାର କଥା । ଏ ଲୋକଟିକୁ କଅଣ ନାମ ଦିଆଯିବ ?

ଉଭୟେ ବଣଭିତରେ ଗୋଟିଏ ଖୋଲା ଜାଗା ପାଖରେ ପହଞ୍ଚିଲେ । ରବନ୍ ତାର ଶିଙ୍ଗାରେ ତିନଥର ଫୁଙ୍କିଲା । ଅଳ୍ପସମୟ ମଧ୍ୟରେ ଜଙ୍ଗଲ ଭିତରୁ ତାର ସାଥୀମାନେ ସେଠାରେ ପହଞ୍ଚିଗଲେ । ସେମାନେ ରବନ୍ ସହିତ ଜଣେ ଅପରିଚିତ ଲୋକକୁ ଦେଖି ବିସ୍ମିତ ହୋଇଗଲେ ।

ଦଳର ଲୋକେ ଏହି ଯୁବକ ଆଡ଼କୁ ଚାହିଁଥିବାର ଦେଖି ରବନ୍ କହିଲା, "ଭାଇମାନେ, ଏ ହେଉଛି ଆମଦଳର ଜଣେ ନୂଆ ସଭ୍ୟ । ସେ ଆମ ସହିତ ମିଶି ଆମରି ଦଳର ଲୋକଙ୍କ ପରି ଚଳିବ ବୋଲି ଆସିଛି । ତାକୁ ଅଭ୍ୟର୍ଥନା କର ନିଅ । ଆଗ ତାକୁ ଭଲକରି ଖାଇବାକୁ ଦିଅ ।"

ରବିନର କଥା ଶୁଣି ସେମାନେ ଯୁବକକୁ ଖୁବ୍ ଆଦର ଅଭ୍ୟର୍ଥନା କରି ନେଲେ । ତାକୁ ସମ୍ମାନ ଦେଖାଇବା ପାଇଁ ସେଦିନ ଗୋଟିଏ ବଡ଼ ଭୋଜ ହେଲା ।

ଖିଆ ପିଆ ସରିବା ପରେ ଦଳର ଜଣେ କହିଲା, "ଏବେ ଏ ନୂଆ ଭାଇଙ୍କର ନାମ କରଣ କରାଯାଉ ।"

ପହିଲମାନ ଉଇଲ୍ କହିଲା, 'କ ନାମ ଦେବା ?"

ଲିଟିଲ୍ ଜନ ଯୁବକକୁ ଲକ୍ଷ୍ୟ କରି ପଚାରିଲା, "ତୁମକୁ କଅଣ ବୋଲି ଡାକନ୍ତି ?"

ଯୁବକ ଦେଖିଲା ଯେ ତାର ନାମକରଣ ପାଇଁ ଗୋଟିଏ ସ୍ୱତନ୍ତ୍ର ଉତ୍ସବର ଆୟୋଜନ ହୋଇଛି । ସେ ବିସ୍ମିତ ହୋଇ ଉତ୍ତର କଲା, "ମୋତେ ଉଇଲିଅମ ବୋଲି ଡାକନ୍ତି । ମୋତେ ପ୍ରଥମେ ଏହି ନାଆଁ ଦିଆଯାଇଥିଲା ।"

ଲିଟିଲ୍ ଜନ୍ କହିଲା, "କିନ୍ତୁ ଆମେ ଏ ନାଆଁ ଦେଇ ପାରିବା ନାହିଁ । ଆମର ପହିଲମାନର ନାମ ମଧ୍ୟ ଉଇଲିଅମ୍ । ତାକୁ ଆମେ ସଂକ୍ଷେପରେ ଉଇଲ୍ ବୋଲି ଡାକୁ । ଏହାଙ୍କୁ ଉଇଲ୍ ଡାକିଲେ ଚଳିବ କେମିତି ?"

କେତେ ନୂଆ ନୂଆ ନାଆଁ ପ୍ରସ୍ତାବ କରାଗଲା । କିନ୍ତୁ କୌଣସିଟି ଉପଯୁକ୍ତ ବୋଧ ହେଲା ନାହିଁ । ରବିନ୍ ଏ ସମସ୍ୟା ସମାଧାନର ଗୋଟାଏ ଉପାୟ ବାହାର କଲା । ସେ କହିଲା, "ଏହାଙ୍କ ମୋଜାକୁ ଦେଖ । ଏପରି ସ୍କାର୍ଲେଟ ଅର୍ଥାତ୍ ଗାଢ଼ ନାଲିରଙ୍ଗର ମୋଜା ଆଉ କେହି ପିନ୍ଧିଥିବାର ମୁଁ ଦେଖି ନାହିଁ । ତେଣୁ ଆମେ ତାଙ୍କୁ ଉଇଲ ସ୍କାର୍ଲେଟ ବୋଲି ନାଆଁ ଦେବା ।"

ଯଥାବିଧି ନାମକରଣ ଉତ୍ସବ ହୋଇଗଲା । ଉଇଲ୍ ସ୍କାର୍ଲେଟ ରବିନର ଦଳଭୁକ୍ତ ହେଲା । ସେ ଦଳର ଉନ୍ନତି ଲାଗି ଅନେକ କାମ କରି ଶେଷରେ ରବିନ୍‌ର ପ୍ରଧାନ ସହକାରୀ ହୋଇ ଉଠିଲା । ସେ ହେଲା ରବିନ୍‌ର ଡାହାଣ ହାତ ।

୧୧

# ଭକ୍ତିନ ଓ ଦରିଦ୍ର ନାଇଟ

ଦିନେ ଜଣେ ନାଇଟ୍ ଘୋଡ଼ାରେ ବସି ଶେରଉଡ୍ ଜଙ୍ଗଲକୁ ଆସିଲେ । ସେ ବେଶ୍ ଡେଙ୍ଗା । ତାଙ୍କର କଳା ଘୋଡ଼ାଟି ମଧ୍ୟ ଦେଖିବାକୁ ସୁନ୍ଦର ; କିନ୍ତୁ ଦୁର୍ବଳ ଓ ମଇଳା ଦିଶୁଥାଏ ।

ଏହି ନାଇଟ୍ ନଟିଙ୍ଗହାମ ନିକଟରେ ଥିବା ଗୋଟିଏ ମଠକୁ ଯାଉଥିଲେ । ବଡ଼ ଅନିଚ୍ଛାସତ୍ତ୍ୱେ ସେ ସେଠାକୁ ଯିବାକୁ ବାଧ୍ୟ ହୋଇଥିଲେ । କଥା ହେଉଛି, ସେ ମଠର ଆବଟ୍‌ଙ୍କ(୬)ଠାରୁ ଅନେକ ଗୁଡ଼ିଏ ଟଙ୍କା ଋଣ କରିଥିଲେ; ଅଥଚ ପରିଶୋଧ କରିବା ପାଇଁ ତାଙ୍କର ଆଦୌ ବଳ ନ ଥିଲା । ସେ ହେଉଛନ୍ତି ଜଣେ ସାଧୁ ଲୋକ । ଦେଇ ନ ପାରିବେ ବୋଲି ଠକି ଦେବାକୁ ଲୁଚି ରହିବେ କପରି । ସେ ମହନ୍ତଙ୍କ ପାଖକୁ ଯାଇ ନିଜର ଅକ୍ଷମତା ଜଣାଇବାକୁ ମନ କରିଥିଲେ ।

ଘୋଡ଼ାର ଟାପୁ ଶବ୍ଦ ଶୁଣି ପାରି ଲିଟିଲ୍ ଜନ୍ ଗଛ ଉଢ଼ାଳରୁ ବାରି ପଡ଼ି ନାଇଟଙ୍କୁ ଡାକିଲା । ସେ ମଧ୍ୟ ଘୋଡ଼ାକୁ ବନ୍ଦ କରି ଦେଲେ ।

ଲିଟିଲ୍ ଜନ ଅଭିବାଦନ କରି କହିଲା, "ନାଇଟ୍ ମହାଶୟ, ଆପଣଙ୍କର ଶୁଭାଗମନ ହେଉ ।"

---

(୬ ଆବଟ୍—କୌଣସି ମଠର ପ୍ରଧାନ ଅଧ୍ୟକ୍ଷ ବା ମହନ୍ତ ।

ରବିନ୍‌ ଓ ତାହାର ଦଳର ଲୋକେ କୌଣସି ନାଇଟ୍‌ ଦେଖିଲେ ତାଙ୍କୁ ଥଟ୍ଟା ତାମସା କରୁଥିଲେ । ଏପରି କରିବାର କାରଣ ମଧ୍ୟ ଥିଲା । ସାଧାରଣତଃ ନାଇଟ୍‌ମାନେ ଖୁବ୍‌ ଧନୀ ଓ ନିତାନ୍ତ ଅତ୍ୟାଚାରୀ ଥିଲେ । ସୁବିଧା ପାଇଲେ ରବିନ୍‌ ସେମାନଙ୍କର ଧନ ଛଡ଼ାଇ ଆଣି ଗରିବ ମାନଙ୍କ ଭିତରେ ବାଣ୍ଟି ଦେଉଥିଲା । ଏବେ ଯେଉଁ ନାଇଟ୍‌ଙ୍କୁ ଲିଟିଲ୍‌ ଜନ୍‌ ଦେଖିଲା, ସେ ହେଉଛନ୍ତି ଲୀର (୭) ନାଇଟ୍‌ ସାର୍‌ ରିଚାର୍ଡ଼ । ସେ ଯେ ଧନୀ ନୁହନ୍ତି କି ଅତ୍ୟାଚାରୀ ନୁହନ୍ତି, ଏକଥା ଜନ୍‌ କିପରି ଜାଣିବ ?

ଜନ୍‌ କହିଲା, "ଆପଣ ଶୁଭାଗମନକରି ଆମ ସହିତ ଭୋଜନ କଲେ ଆପ୍ୟାୟିତ ହେବୁ । ଆମର ସରଦାର ମଧ୍ୟ ଆପଣଙ୍କୁ ଦେଖି ସନ୍ତୁଷ୍ଟ ହେବେ ।ଆସନ୍ତୁ ।"

ନାଇଟ୍‌ ରିଚାର୍ଡ଼ କହିଲେ, "କିଏ ତୁମର ସରଦାର ?

'ରବିନ୍‌ ହୁଡ଼'—ଏତିକି ଉତ୍ତର ମିଳିଲା ।

ନାଇଟ୍‌ କହିଲେ, "ମୁଁ ତାଙ୍କ ବିଷୟରେ ଅନେକ କଥା ଶୁଣିଛି । ତାଙ୍କର ସାକ୍ଷାତ ପାଇଲେ ମୁଁ ବିଶେଷ ଆନନ୍ଦିତ ହେବି ।"

ଲିଟିଲ୍‌ ଜନ୍‌ ଘୋଡ଼ାର ଲଗାମକୁ ଧରି ନାଇଟ୍‌ଙ୍କୁ ରବିନ୍‌ର ଆଡ୍‌ଡା ପାଖକୁ ନେଇ ଗଲା । ରବିନ୍‌ ଚାଲିଆସି ଦୁହିଁଙ୍କୁ ଭେଟିଲ ରବିନ୍‌କୁ ଦେଖିଲା କ୍ଷଣି ସାର୍‌ ରିଚାର୍ଡ଼ ଘୋଡ଼ାରୁ ଓହ୍ଲାଇ ପ

ନାଇଟ୍‌ଙ୍କର ଅବସ୍ଥା ଦେଖିଲାକ୍ଷଣି ରବିନ୍‌ ବୁଝି ପାରିଲ ସେ ନିତାନ୍ତ ଦରିଦ୍ର । ତାଙ୍କର ପୋଷାକ ଚିରିଯାଇଥିଲା ଓ ଘୋଡ଼ାର ଜିନ୍‌ ନିତାନ୍ତ କଦର୍ଯ୍ୟ ଦିଶୁଥିଲା । ତାଙ୍କ ଚେହେରା ମଧ୍ୟ ବିଷର୍ଣ୍ଣ ବୋଧ ହେଉଥିଲା ।

---

(୭) ଲୀ—ଗୋଟିଏ ସ୍ଥାନର ନାମ ।

ରବନ ପ୍ରଶ୍ନ କଲା, "ନାଇଟ୍ ମହାଶୟ ! ଆପଣଙ୍କର କଛୁ ଦୁଃଖ ଥିଲା ପରି ଜଣା ପଡ଼ୁଛି । ଆପଣଙ୍କ ଦୁଃଖ କଣ ମୋତେ କୁହନ୍ତୁ ।"

ନାଇଟ ଜଣେ ଅପରିଚିତ ଲୋକ ନିକଟରେ ନିଜର ଦୁଃଖ ପ୍ରକାଶ କରିବାକୁ କୁଣ୍ଠିତ ଥିଲେ । ତେଣୁ ସେ କହିଲେ; "ନା, ମୋର କଛି ଦୁଃଖ ନାହିଁ ।"

ତହୁଁ ରବନ୍ କହିଲା, "ତେବେ ଅନୁଗ୍ରହ କରି ଏଠାରେ ଭୋଜନ କରି ଯାଆନ୍ତୁ ।"

ସାଧାରଣତଃ ଯେଉଁ ବାଟୋଇମାନେ ଘୋଡ଼ା ଚଢ଼ି ଯାଉ-ଥାନ୍ତି, ସେମାନଙ୍କ ପାଖରେ ଟଙ୍କା ପଇସା ଥାଏ । ରବନ୍ ସେଭଳି ବାଟୋଇଙ୍କ ଠାରୁ ଟଙ୍କା ନେଇ ଗରିବଙ୍କୁ ବାଣ୍ଟିଦିଏ । କିନ୍ତୁ ଏହି ନାଇଟ୍‌ଙ୍କର ଅବସ୍ଥା ଦେଖି ସେ କଛି ସ୍ଥିର କରି ପାରିଲା ନାହିଁ ।

ଏଥି ମଧ୍ୟରେ ଖାଦ୍ୟ ପ୍ରସ୍ତୁତ ହେଲା । ନାଇଟ୍ ଦେଖିଲେ ଯେ ତାଙ୍କ ପାଇଁ ଅନେକ ଗୁଡ଼ିଏ ଉତ୍ତମ ଭୋଜ୍ୟ ପଦାର୍ଥ ଦିଆଯାଇ-ଅଛି । ସେ ରବନ୍‌କୁ କହିଲେ, "ମୁଁ ଏହା ଖାଇ ପାରିବି ନାହିଁ ।" ରବନ୍ ଉତ୍ତର କଲା, "ନା,ନା!, ଆପଣ ଖାଆନ୍ତୁ । ମୋତେ ବୋଧ ହେଉଛି ଆପଣ ଏହା ନିଶ୍ଚିନ୍ତରେ ଖାଇ ପାରିବେ ।"

ନାଇଟ୍ ଉତ୍ତର କଲେ, "ସେ କଥା ଠିକ୍ । କିନ୍ତୁ ଆପଣ-ମାନେ ମୋ ପାଇଁ ଯେଉଁ ଖାଦ୍ୟ ଦେଉଅଛନ୍ତି, ମୁଁ ତାହାର ମୂଲ୍ୟ ଦେବାକୁ ଏକାନ୍ତ ଅକ୍ଷମ । ମୂଲ୍ୟ ନ ଦେଇ ମୁଁ କୌଣସି ପଦାର୍ଥ ଗ୍ରହଣ କରିପାରେ ନାହିଁ ।"

ରବନ୍ ହୁଡ୍ ଲିଟିଲ୍ ଜନ୍ ଆଡ଼କୁ ଆଖିଠାରିଲା ଏବଂ ନାଇଟ୍‌ଙ୍କୁ କହିଲା, "ଆପଣଙ୍କଠାରେ କେତେ ଟଙ୍କା ଅଛି, ମୋତେ ସତ କରି କହନ୍ତୁ ।"

ସାର୍ ଗିବୁର୍ଡ଼ ଉତ୍ତର କଲେ, "ମୋ ଠାରେ ମାତ୍ର ଦଶ ଶିଲିଂ ଅଛି।" ତହୁଁ ରବିନ୍ କହିଲା, "ଆପଣ ଭୋଜନରେ ବସନ୍ତୁ। ଏ ଖାଦ୍ୟ ପାଇଁ ଆପଣଙ୍କୁ କିଛି ଦେବାକୁ ହେବନାହିଁ।"

ସମସ୍ତେ ଖାଉଥିବାବେଳେ ରବିନ ଚୁପ୍ କରି ଲିଟିଲ ଜନକୁ କହିଲା, "ଯାଇ ଘୋଡ଼ା ଉପରେ ଥିବା ଥଳିକୁ ଦେଖ, ସେଥିରେ କେତେ ଟଙ୍କା ଅଛି। ନାଇଟ୍ ସତ କହୁଛି କି ମିଛ କହୁଛି ଜଣା ପଡ଼ିବ।" ଅଳ୍ପ ସମୟ ପରେ ଜନ୍ ଫେରି ଆସି କହିଲା ଯେ "ନାଇଟ୍‌ର ଥଳିରେ ଦଶଟି ମାତ୍ର ଶିଲିଂ (୮) ଅଛି।"

ରବିନ୍ ଅତିଥିଙ୍କୁ ଲକ୍ଷ୍ୟକରି ପଚାରିଲା, "ଆପଣଙ୍କର ଅବସ୍ଥା କାହିଁକି ଏପରି ହେଲା, ଅନୁଗ୍ରହ କରି କହନ୍ତୁ ?"

ସାର୍ ରିଚାର୍ଡ଼ ଉତ୍ତମ ହରିଣ ମାଂସ ସହିତ ଅନ୍ୟାନ୍ୟ ଖାଦ୍ୟ ଖାଉ ଖାଉ କହିଲେ, "ସେ ବହୁତ କଥା। ମୁଁ ଜଣେ ଖୁବ୍ ଧନୀ ଲୋକ ଥିଲି। କିନ୍ତୁ ଦୁଇବର୍ଷ ତଳେ ମୋର ଗୋରୁ ଗାଈପଲ ଗୋଟାଏ ରୋଗରେ ମରିଗଲେ। ମୋର ଧନ ସମ୍ପତ୍ତି ସବୁ ଚୋର ନେଇଗଲେ। ଦୁର୍ଭାଗ୍ୟକୁ ମୋର ପୁଅ ଥରେ ଜଣେ ନାଇଟ୍‌ଙ୍କ ସହିତ ଖଣ୍ଡାଧରି ଖେଳୁ ଖେଳୁ ତାଙ୍କ ଟୋପିକୁ ଭୁଷି ଦେଲା। ଖଣ୍ଡାଟି ତାଙ୍କ ମୁଣ୍ଡରେ ପଶି ଯିବାରୁ ସେ ପ୍ରାଣ ହରାଇଲେ। ରାଜା ହୁକୁମ ଦେଲେ ଯେ ମୋର ପୁଅକୁ ଯଥେଷ୍ଟ ଜୋରିମାନା ଦେବାକୁ ହେବ କିମ୍ବା ତାକୁ ଜେଲ୍‌ଖାନାକୁ ଯିବାକୁ ପଡ଼ିବ। ପୁଅକୁ ଜେଲ୍‌ଦଣ୍ଡରୁ ରକ୍ଷା କରିବା ପାଇଁ ମୁଁ ଜଣେ ଆବଟ୍‌ଙ୍କ ଠାରୁ ଟଙ୍କା କରଜ କରି ଜୋରିମାନା ଦେଲି। ତାଙ୍କ ସହିତ ମୋର ଜବାବ୍ ହୋଇଥିଲା ଯେ ଗୋଟିଏ ନିର୍ଦ୍ଦିଷ୍ଟ ଦିନ ପୂର୍ବରୁ ଏହି ଟଙ୍କା ସୁଝି ନ ପାରିଲେ ମୁଁ

(୮) ଶିଲ୍ଂ—ଇଂଲଣ୍ଡରେ ପ୍ରଚଳିତ ଏକ ମୁଦ୍ରା; ଆମ ଦେଶର ୭୫ ପଇସା ସଙ୍ଗେ ସମାନ।

ତାଙ୍କୁ, ମୋର ସମସ୍ତ ଜମି ଦେବ । କାଲି ହେଉଛି ଶେଷଦିନ । ମୋର ଟଙ୍କା ସୁଝିବାର ଶକ୍ତି ନାହିଁ, ସେଥିପାଇଁ ତାଙ୍କ ପାଖକୁ ଯାଉଛି । ତାଙ୍କ ହାତରେ ମୋର ସମସ୍ତ ଜମି ସମର୍ପଣ କରି ଆସିବ ।"

ରତନ୍ ଟିକଏ ରହି ପଚାରିଲା, "ଆପଣ ଟଙ୍କା ଧାର କରି ଆଣି ଆବଟ୍‌ଙ୍କୁ ଶୁଝିଦେଉ ନାହାନ୍ତି କାହିଁକି ?"

ନାଇଟ୍ ଉତ୍ତର କଲେ, "କରଜ ସୁଝିବା ପାଇଁ ଧାର ମାଗିଲେ କିଏ ଟଙ୍କା ଦେବ ? ମୋର ଯେ କିଛି ସମ୍ପତ୍ତି ନାହିଁ, ଏହା ଜଣାଶୁଣା କଥା ।"

ତହୁଁ ରତନ୍ କହିଲା, "ମୁଁ ଆପଣଙ୍କ କଥାକୁ ପୂରା ବିଶ୍ୱାସ କରୁଛି । ଯେ କୌଣସି ଲୋକ ପକ୍ଷରେ ଏପରି ବିପଦ ଘଟିପାରେ । କାଲି ଆପଣ ଆବଟ୍‌ଙ୍କ ପାଖକୁ ଯାଇ ଆଉ କିଛି ଦିନ ସମୟ ଦେବାକୁ ତାଙ୍କୁ ଅନୁରୋଧ କରନ୍ତୁ ।"

ଏହା ଶୁଣି ସାର୍ ରିଚାର୍ଡ କହିଲେ, "ଆପଣ ବୋଧ ହୁଏ ଆବଟ୍‌ଙ୍କୁ ଚିହ୍ନି ନାହାନ୍ତି । ସେ ଜଣେ ନିର୍ଦ୍ଦୟ ଲୋଭୀ ଲୋକ । ସମୟ ଦେବାକୁ କହିଲେ ସେ ମୋତେ ହସରେ ଉଡ଼ାଇ ଦେବେ ।"

ରତନ୍ କହିଲା, "ସେ ଯେବେ ସମୟ ଦେବାକୁ ନାହିଁ କରନ୍ତି ତେବେ ତାଙ୍କର ସମସ୍ତ ଟଙ୍କା ଦେଇ ପକାନ୍ତୁ । ତାହାହେଲେ ତାଙ୍କ ମୁହଁ ବନ୍ଦ ହୋଇଯିବ ।"

ସାର୍ ରିଚାର୍ଡ ଏହା ଶୁଣି କହିଲେ, "ଆପଣ ଅଦ୍ଭୁତ କଥା କହୁଛନ୍ତି । ମୁଁ କହିଲି ପରା, ମୋ ପାଖରେ ଟଙ୍କା ନାହିଁ ।"

ରତନ୍ ସଙ୍ଗେ ସଙ୍ଗେ ଉତ୍ତରକଲା, "ମୁଁ ଆପଣଙ୍କୁ ଟଙ୍କା ଧାର ଦେବ । ଯେତେବେଳେ ଆପଣ ପାରିବେ, ସେତେବେଳେ ଶୁଝିଦେବେ । ଆପଣଙ୍କର କେତେ ଟଙ୍କା ଦରକାର ।"

ସାର୍ ଗିଲ୍ବର୍ଟ କହିଲେ, "ସ୍ବଗିଗନ୍ଧ ପାଉଣ୍ଡ ।"

ରବିନ୍ ଭଣ୍ଡାରଘରୁ ସ୍ବଗିଗନ୍ଧ ପାଉଣ୍ଡ ଆଣିବାପାଇଁ ଲିଟିଲ୍ ଜନ୍‌କୁ ପଠାଇ ଦେଲା । ଗୋଟିଏ ଥଳିରେ ଟଙ୍କାଗୁଡ଼ିକ ରଖାଗଲା । ଏହା ଦେଖି ନାଇଟ୍ ରବିନ୍‌ପ୍ରତି କପରି କୃତଜ୍ଞତା ପ୍ରକାଶ କରିବେ, ସ୍ଥିରକରିପାରିଲେ ନାହିଁ ।

ନାଇଟ୍ ଘୋଡ଼ାରେ ବସିଲେ । ଏଥିମଧ୍ୟରେ ରବିନ୍‌ର ଆଦେଶରେ ଜଣେ ଘୋଡ଼ା ଉପରେ ନୂଆ ଜିନ୍ ପକାଇ ଦେଇଥିଲା ଓ ଘୋଡ଼ାମୁହଁରେ ନୂଆ ଲଗାମ ଖଞ୍ଜି ଦେଇଥିଲା । ଆହୁରି ମଧ୍ୟ ନାଇଟ୍ ରବିନ୍‌ଠାରୁ ନୂଆପୋଷାକ ପିନ୍ଧିଥିଲେ । ତାଙ୍କର ଢାଲ ଓ ଟୋପିକୁ ମାଜି ଚକ୍ ଚକ୍ କରି ଦିଆ ଯାଇଥିଲା ।

ଏହିପରି ଆଡ଼ମ୍ବରରେ ଟଙ୍କାଥଳି ଧରି ଘୋଡ଼ାରେ ବସି ଗଲାବେଳେ ସାର୍ ଗିଲ୍ବର୍ଟଙ୍କର ମନ ଆନନ୍ଦରେ ପୂରି ଯାଇଥିଲା ।

୧୨

# ଆବନ୍ତଙ୍କର ମହାଇନ୍ଦି

ମଠରେ ଆବନ୍ତ ଧୀରସୁସ୍ଥ ଭାବରେ ପୋଷାକ ପିନ୍ଧି ପିନ୍ଧି ଭାବଲେ, "ଆଜକ କଥା ଥିଲା । ବଡ଼ପଦର ସୁଦ୍ଧା ଲୋକଟା ଟଙ୍କା ନ ଦେଲେ ମୁଁ ଜଣେ ବଡ଼ଲୋକ ହୋଇଯିବ । ମୁଁ ଯୁଆଡ଼କୁ ଚାହିଁବ ସେଆଡ଼େ ମୋର ଜମି ହୋଇଯିବ ।" ସେ ଆନନ୍ଦରେ ନାଚିବାକୁ ଲାଗିଲେ ।

ଆଜ ସାର୍ ଶଗୁର୍ଡ୍ଙ୍କର କରଜ ସୁଝିବାର କଥା । ଆବନ୍ତ ବଡ଼ କୌଶଳୀ । ସେ ସେତେବେଳକୁ ବୁଝିପାରିଥିଲେ ଯେ ରିଗୁର୍ଡଙ୍କର ଟଙ୍କା ସୁଝିବାକୁ ଆଦୌ ବଳ ନାହିଁ । ଆବନ୍ତଙ୍କର ଟଙ୍କାର ଦରକାର ନ ଥିଲା । ତାଙ୍କର ଜମି ଦରକାର । ଆଜ ଏତେଗୁଡ଼ାଏ ଜମି ତାଙ୍କ ହାତରେ ପଡ଼ିବ ।

ଜଣେ ଚାକର କବାଟଟାକୁ ଫଟାଇଦେଇ ପଶିଆସିଲା । ସେ ରହି ରହି କହିଲା, "ଆଜ୍ଞା, ମାଜିଷ୍ଟ୍ରେଟ ।"

ଆବନ୍ତ ଚାକରକୁ କହିଲେ, "ଯାଆ, ତାଙ୍କୁ ଘରଭିତରକୁ ଡାକି ଆଣ ।" ସେତେବେଳେ ଆବନ୍ତ ଖାଇବାକୁ ବସିଥିଲେ । ମାଜିଷ୍ଟ୍ରେଟ ଘରଭିତରକୁ ପଶିଆସିଲାକ୍ଷଣି ଆବନ୍ତ ତାଙ୍କୁ ସ୍ୱାଗତ ଜଣାଇ କହିଲେ, "ବସିବାହେଉ । ଆପଣଙ୍କର ଭୋଜନ ସରିଛି ?"

ମାଜିଷ୍ଟ୍ରେଟ ରହି ରହି କହିଲେ, "ପ୍ରକୃତରେ ମୋର ଭୋଜନ ସରିଛି । କିନ୍ତୁ ଆପଣ— ।"

ଆବଟ୍—"ଆପଣ ତେବେ ଏଇଠାରେ ଭୋଜନ କରନ୍ତୁ ।"

ପ୍ରକୃତ ଘଟନା ହେଉଛି, ଆବଟ୍ ସେଦିନ ଆସିବା ସକାଶେ ମାଜିଷ୍ଟ୍ରେଟଙ୍କୁ ଅନୁରୋଧ କରିଥିଲେ; ତାହାଙ୍କ ସମକ୍ଷରେ ସାର୍ ରିଚ୍ଚାର୍ଡ଼ ତାଙ୍କୁ ଜମି ଦେବେବୋଲି ।

ଭୋଜନ ପରେ ଆବଟ୍ ଓ ମାଜିଷ୍ଟ୍ରେଟ ଦୁହେଁ ମଠ ଭିତର ବୁଲି ଦେଖୁଥାନ୍ତି । ଘଣ୍ଟାର କଣ୍ଟା ବାରଟା ପାଖକୁ ହୋଇ ଆସିଲା । ଠିକ ବାରଟା ପୂର୍ବରୁ ସାର୍ ରିଚ୍ଚାର୍ଡ଼ ଟଙ୍କା ପରିଶୋଧ କରିବାର କଥା ।

ମାଜିଷ୍ଟ୍ରେଟ କହିଲେ, "ଆବଟ୍ ମହାଶୟ, ଆପଣଙ୍କ ଅତିଥି ଆସିବେ ବୋଲି ମୋର ମନେ ହେଉନାହିଁ । ବାରଟା ସମୟ ଆସି ହେଲା ।"

ଆବଟ୍ କହିଲେ, "ତା ପକ୍ଷରେ ସେଇଟା ନିତାନ୍ତ ଖରାପ ହେବ ।"

ମାଜିଷ୍ଟ୍ରେଟ କହିଲେ, "ହୁଏତ ତାର ଘୋଡ଼ାଟା କେଉଁଠି ଝୁଣ୍ଟି ପଡ଼ୁଛି କି ସେ ନିଜେ ରବିନ୍ ହୁଡ଼ର ଲୋକଙ୍କ ହାତରେ ପଡ଼ୁଛି ।"

ଆବଟ୍ କହିଲେ, "ଯଦି ସେପରି କିଛି ଘଟିଥାଏ, ତେବେ ସେଥିପାଇଁ ତ ମୁଁ ଦାୟୀ ନୁହେଁ । ଟଙ୍କା ଦେଇ ନ ପାରିଲେ କାରଣ ଦର୍ଶାଇବା ବୃଥା । ନାଇଟ୍ ଓ ମୋ ଭିତରେ ଚୁକ୍ତି ହୋଇଛି ଯେ ଆଜି ଦିନବାରଟା ପୂର୍ବରୁ ଟଙ୍କା ପରିଶୋଧ ହେବ । ଯଦି ସେ ବାରଟା ମଧ୍ୟରେ ଟଙ୍କା ନ ଦିଏ, ତେବେ ତାର ସବୁ ଜମି ମୋର ହେବ ।"

ଦୁହେଁଯାକ ଉତ୍ସୁକଭାବରେ ଘଣ୍ଟାକୁ ଚାହିଁଥାନ୍ତି । ଆବଟ୍‌ଙ୍କ ମନରେ ଏତେ ଉତ୍କଣ୍ଠା ଥାଏ ଯେ ସେ ଆଉ କିଛି କହୁ ନ ଥାନ୍ତି ।

ମାଜଷ୍ଟ୍ରେଟଙ୍କ ଉଦ୍ଦେଶ୍ୟ ଥାଏ, ଠିକ୍ ସମୟ ହୋଇଗଲେ ସେ ଉଚିତ ନ୍ୟାୟ ବିଚାର କରିବେ। ଦୁହେଁ ପାକ ମାରିବରେ ଟହଲୁଥାନ୍ତି।

ଏହି ସମୟରେ ମଠର ଜଣେ ମଙ୍କ୍ (୯)ଏଇଡ଼ଆସି ଆବଟ୍‌ଙ୍କୁ କହିଲ, "ମହାରାଜ, ଦୂରରୁ ଜଣେ କିଏ ଘୋଡ଼ାରେ ଆସୁଥିବାର ଦେଖାଯାଉଛି।"

ଆବଟ—କଅଣ, ଘୋଡ଼ାରେ ବସି ଆସୁଛି ! ଆଚ୍ଛା ସେ କାହାପରି ଦିଶୁଛି ?

"ସେ ଏତେ ଦୂରରେ ଅଛି ଯେ ମୁଁ ତାକୁ ଭଲ କରି ଦେଖି ପାରିଲି ନାହିଁ। ଚିହ୍ନିବି କିପରି ?"

ସ୍ୱୟଂ ଆବଟ୍ ମଠର ଗୋଟିଏ ଉଚ୍ଚ ସ୍ଥାନକୁ ଯାଇ ରାସ୍ତାଆଡ଼କୁ ଅନାଇଲେ। ଦୂରରେ ଜଣେ ଲୋକ ଘୋଡ଼ାରେ ଚଢ଼ି ଆସୁଥିବାର ଦେଖାଗଲା। ଲୋକଟିର ଢାଲ ଓ ଲୁହା ଟୋପି ଉପରେ ସୂର୍ଯ୍ୟ କିରଣ ପଡ଼ି ଚକ୍ ଚକ୍ ଦିଶୁଥିଲା। ସେ ତତ୍‌କ୍ଷଣାତ୍ ଜାଣିପାରିଲେ ଯେ ଏହି ଲୋକଟି ସାର ରିଚ୍ଚର୍ଡ଼ ଛଡ଼ା ଆଉ କେହି ନୁହେଁ। ସେ ଶୁଣିଥିଲେ ଯେ ସାର ରିଚ୍ଚର୍ଡଙ୍କର କରଜ ସୁଝିବାର କୌଣସି ଆଶା ନାହିଁ। ଆବଟ୍ ଏହି କଥା ମନେ ପକାଇ ନିଜକୁ ସାନ୍ତ୍ୱନା ଦେଲେ।

ଅଳ୍ପସମୟ ପରେ ସାର୍ ରିଚ୍ଚର୍ଡ଼ ମଠରେ ପହଞ୍ଚି କବାଟରେ ହାତ ମାରିଲେ। ଜଣେ ଚାକର କବାଟ ଫିଟାଇ ଦେଲାକ୍ଷଣି ସେ ମଠଭିତରକୁ ପଶିଯାଇ ଆବଟ୍ ଓ ମାଜଷ୍ଟ୍ରେଟ ବସିଥିବା ସ୍ଥାନରେ ପହଞ୍ଚିଗଲେ।

---

(୯) ମଙ୍କ୍—ଏକଶ୍ରେଣୀର ସନ୍ନ୍ୟାସୀ। ଏମାନେ ଗୀର୍ଜା ବା ଆଶ୍ରମରେ ରହି ଧର୍ମଜୀବନ ଅତିବାହିତ କରୁଥିଲେ।

ଆବଟ୍ ସଙ୍ଗେ ସଙ୍ଗେ କରଜ ଟଙ୍କା କଥା ଉଠାଇ କହିଲେ, "ଆପଣଙ୍କ କରଜ ସୁଝିବା ପାଇଁ ଆଜ କେତୋଟି ମିନିଟ ମାତ୍ର ସମୟ ଅଛି । କଅଣ ଟଙ୍କା ଆଣିଛନ୍ତି ?"

ଆବଟ୍ ଦେଖିଲେ ଯେ ଗିଲ୍ବର୍ଡ଼ଙ୍କ ହାତରେ ଟଙ୍କାର ଥଳି ନାହିଁ ସେ ଭାବିଥିଲେ ଯେ ଜମିତକ ନିଶ୍ଚୟ ତାଙ୍କ ହାତକୁ ଆସିବ । ତେଣୁ ସେ ଟିକିଏ ଦମ୍ଭର ସହିତ କଥା କହୁଥିଲେ ।

ସାର୍ ଗିଲ୍ବର୍ଡ଼ କହିଲେ, "ଆବଟ୍ ମହାଶୟ, ମୁଁ ଭାବିଥିଲି ଯେ ଆପଣ କରଜଟଙ୍କାରୁ ବର୍ତ୍ତମାନ କିଛି ନେବେ । ବାକିତକ ନେବା ପାଇଁ ବର୍ଷେ ଖଣ୍ଡେ ସମୟ ଦେବେ ।

ଏହା କହିଲାବେଳେ ଗିଲ୍ବର୍ଡ଼ ମନେ ମନେ ହସୁଥିଲେ । ଆବଟ୍ଙ୍କ ମୁହଁ ଉଜ୍ଜ୍ୱଳ ଦିଶିଲା । ସେ ଭାବିଲେ ଯେ ତାଙ୍କ ଅନୁମାନଟା ଠିକ । ଜମିତକ ମିଳିବାରେ ଲେଶ ମାତ୍ର ସନ୍ଦେହ ନାହିଁ ।

ସେ କହିଲେ, "ମୁଁ ପରା ଜାଣେ, ଆପଣ ଏହିପରି କହିବେ । ଆପଣଙ୍କ ସାଥିରେ ବୃଥା କଥାବାର୍ତ୍ତା କରି ଲାଭ ନାହିଁ । ହୁଏତ ମୋର ସବୁଯାକ ଟଙ୍କା ଦିଅନ୍ତୁ, ନ ହେଲେ ସବୁଯାକ ଜମି ଦିଅନ୍ତୁ ।"

ମାଜିଷ୍ଟ୍ରେଟ ଏହି ସମୟରେ କହିଲେ, "ତାହାହେଲେ ଆପଣଙ୍କ ଭିତରେ ଚୁକ୍ତି ହୋଇଥିଲା ଯେ ଆଜ ସବୁଟଙ୍କା ଶୁଝାଯିବ ବା ତା ବଦଳରେ ସବୁ ଜମି ଦିଆଯିବ ।"

ସାର୍ ଗିଲ୍ବର୍ଡ଼ ମୁହଁ ଶୁଖାଇ କହିଲେ, "ହଁ, ତାହା ଚୁକ୍ତି ହୋଇ ଥିଲା । ତେବେ ଆବଟ୍ ମହାଶୟ, ମୋତେ ଆପଣଙ୍କର ଆଶୀର୍ବାଦ ଦିଅନ୍ତୁ ।" ଏହା କହି ସାର୍ ଗିଲ୍ବର୍ଡ଼ ଆବଟ୍ଙ୍କ ପାଦ ତଳେ ଆଣ୍ଠେଇ ପଡ଼ିଲେ ।

ଆବଟ୍‌ ରାଗରେ ଜଳଯାଇ କହିଲେ, "ଆପଣଙ୍କର ସାହସ ତ କମ ନୁହେଁ । ଆଜ ବୃଥା ସମୟ ନଷ୍ଟ କରିବାର ଦରକାର ନାହିଁ । ମିଥ୍ୟା ଆଳ ଶୁଣିବାକୁ ମୋର ବେଳ ନାହିଁ । ମୋର ସବୁସାକ ଟଙ୍କା ଦେଇ ପକାନ୍ତୁ; ନଚେତ୍‌ ଆପଣଙ୍କର ସବୁ ଜମି ମୋର ହେବ । ଏଠି ମାଜିଷ୍ଟ୍ରେଟ ବସିଛନ୍ତି । ସବୁ ଯେପରି ଆଇନ ଅନୁସାରେ ଠିକ ହୁଏ, ତାହା ସେ ଦେଖିବେ ।"

ଆବଟ୍‌ ଟଙ୍କା ନେବାକୁ ରାଜି ନ ଥିଲେ କି ସାର୍‌ ରିଚ୍ଛର୍ଡ଼ ଟଙ୍କା ଦେଇ ପାରିବେ ବୋଲି ସେ ଭାବି ନ ଥିଲେ । ସାର୍‌ ରିଚ୍ଛର୍ଡ଼ ପୋଷାକ ତଳୁ ଗୋଟିଏ ଟଙ୍କାଥଳି ବାହାର କରି ଆଣିଲେ । ଆବଟଙ୍କ ମୁଣ୍ଡରେ କିଏ ଲାଠି ପାହାର ଦେଇଥିଲେ ସେ ବେଶୀ କଷ୍ଟ ବୋଧ କରି ନ ଥାନ୍ତେ ।

ସେ ବିସ୍ମୟରେ ଏଣେ ତେଣେ ଚାହିଁଲେ । ତଥାପି ସେ ମନେ ମନେ ଭାବୁଥାନ୍ତି — ରିଚ୍ଛର୍ଡ କଅଣ ସବୁ ଟଙ୍କା ଆଣି ଥିବେ ?

ସେ ଥଳିଟାକୁ ନେଇ ଟଙ୍କାତକ ଗଣି ବସିଲେ ।

ସାର୍‌ ରିଚ୍ଛର୍ଡ଼ କହିଲେ, "ସୁଖର କଥା ଏଠାରେ ମାଜିଷ୍ଟ୍ରେଟ ଉପସ୍ଥିତ ଅଛନ୍ତି । ସେ ଦେଖିବେ ଯେ ସବୁଟଙ୍କା ଶୁଝାହେଲା କି ନା ?"

ମାଜିଷ୍ଟ୍ରେଟ ମୁଣ୍ଡ ହଲାଇ ସମର୍ଥନ ଜଣାଇଲେ । ମହନ୍ତ ଟଙ୍କା ଗଣୁଥିବା ବେଳେ ସେ ଚାହିଁଥାନ୍ତି । ଠିକ୍‌ ଗୃହଣ ପାଉଣ୍ଡ ହେଲା । ମହନ୍ତଙ୍କ ବୁଦ୍ଧି ହଜିଗଲା ।

ସାର୍‌ ରିଚ୍ଛର୍ଡ଼ କହିଲେ, "ମୁଁ ଯେଉଁ ଦଲିଲଟି ଲେଖି ଦେଇଥିଲି ଏବେ ସେଇଟି ଫେରାଇ ଦିଅନ୍ତୁ । ଏଥିରେ ଆପତ୍ତିର କିଛି କାରଣ ନାହିଁ ।"

ଆବଟ୍‌ ହତାଶ ହୋଇଯାଇ ଆଉ ସମ୍ଭାଳି ପାରିଲେ ନାହିଁ । ସେ କହି ଉଠିଲେ, 'ଠକ, ତୁ ସ୍ପଷ୍ଟ କହିଥିଲୁ ଯେ......"

ଏହି ସମୟରେ ମାଜିଷ୍ଟ୍ରେଟ ବାଧା ଦେଇ କହିଲେ, "ଆବର୍ଟ-ମହାଶୟ, କ୍ଷମା କରିବେ । ଆପଣଙ୍କୁ ଦଲିଲଟି ଫେରାଇ ଦେବାକୁ ପଡ଼ିବ । ମୋ ସାମନାରେ ସାର ରିଚ୍ଚର୍ଡ଼ ସମସ୍ତ କରଜଟଙ୍କା ପରିଶୋଧ କରିଛନ୍ତି ।"

ଆବର୍ଟ ଦଲିଲଟି ଫେରାଇବାକୁ ବାଧ ହେଲେ । ତାଙ୍କ ତୁଣ୍ଡରୁ ପଦେ କଥା ବାହାରିଲା ନାହିଁ ।

ସାର ରିଚ୍ଚର୍ଡ଼ ମଠରୁ ବାହାରି ଘୋଡ଼ାରେ ବସି ଚାଲିଗଲେ । ଆବର୍ଟଙ୍କ ମୁହଁ କଳା ପଡ଼ିଯାଇଥାଏ । ତାଙ୍କର ଜମି ପାଇବାର ଆଶା ଉଭେଇଗଲା ।

ସାର୍ ରିଚ୍ଚର୍ଡ଼ ସ୍ଥିର କଲେ ଯେ ହାତରେ କିଛି ଟଙ୍କା ହେଲା-କ୍ଷଣି ସେ ତାହା ନେଇ ରବିନ୍‌ର ଟଙ୍କା ଆଗେ ଶୁଝିବେ ।

୧୩

# ଆବଟ ଶିକ୍ଷା ପାଇଲେ

ଆବଟ୍ ସାର୍ ଗର୍ଭର୍ଙ୍କଠାରୁ ଗୃହଶତ୍ର ପାଉଣ୍ଡ ପାଇଲେ ସତ, କିନ୍ତୁ ତାଙ୍କ ମନରେ ଦୁଃଖର ସୀମା ନ ଥାଏ । ଶେରଉଡ୍ ଜଙ୍ଗଲବାଟେ ଟଙ୍କା ଯେଉଁ ଆସିଥିଲାବେଳେ ସେ କପରି ନିରାପଦରେ ଆସିଲେ ଏବଂ ରବିନ୍‌ହୁଡ଼ ବା ତାର ଦଳର ଲୋକଙ୍କ ହାବୁଡ଼ରେ ନ ପଡ଼ିଲେ, ଏହା ତାଙ୍କୁ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । କିନ୍ତୁ ଏଥିରୁ ଆବଟ୍ ମହାଶୟ ଧରିନେଲେ ଯେ ଜଙ୍ଗଲ ବାଟେ ଯିବା ନିରାପଦ । ସେ ବିଚାରିଲେ ଯେ ଟଙ୍କାତକ ନେଇ ନଟିଙ୍ଗହାମ୍ ଯିବେ ଓ ସେଠାରେ ମହାଜନ କରି କିଛି ଲାଭ କରିବେ ।

ମଠରେ ତାଙ୍କର ଯେତେ ଧନ ଥିଲା, ସେ ସବୁ ଏକାଠି କଲେ । ତା ସାଥିରେ ସାର୍ ରିଚାର୍ଡ଼ ଦେଇଥିବା ଟଙ୍କା ମିଶାଇ ଗୋଟିଏ ଥଳରେ ଭର୍ତ୍ତି କରି ସେ ନଟିଙ୍ଗହାମ୍ ଯିବାକୁ ବାହାରିଲେ । ଆବଟ୍‌ଙ୍କର ସାହସ ଅଳ୍ପ । ସେଥିପାଇଁ ସେ ଧନୁଶରଧାରୀ ୭୯ଜଣ ଲୋକ ସାଥିରେ ନେଲେ । ଯଦି ଦୈବାତ୍ ରବିନ୍‌ହୁଡ଼ର ହାବୁଡ଼େ ପଡ଼ନ୍ତି, ତେବେ ଏମାନେ ତାଙ୍କୁ ଓ ତାଙ୍କ ଟଙ୍କାକୁ ରକ୍ଷା କରିବେ ।

କିଛିଦୂର ଗଲାପରେ ତାଙ୍କର ମନେହେଲା ଯେ ସବୁତକ ଟଙ୍କା ଗୋଟିଏ ଥଳରେ ନେବା ନିରାପଦ ନୁହେଁ । ସେ ଘୋଡ଼ାରୁ ଓହ୍ଲାଇ ପଡ଼ିଲେ । ଆପଣା ଥଳରେ କୋଡ଼ିଏଟି ମାତ୍ର ଶିଲିଂ ରଖି ଆଉ ସବୁ ଆପଣା ଲୋକଙ୍କ ପୋଟଳିଭିତରେ କିଛି କିଛି ରଖିଦେଲେ ।

ପୁଣି ଘୋଡାରେ ବସି କିଛିଦୂର ଯିବାପରେ ଶେରଉଡ଼୍ ଜଙ୍ଗଲ ପଡ଼ିଲା । ଚାରିଆଡ଼ ନୀରବ ଓ ଶାନ୍ତ ଜଣାଯାଉଥାଏ ବିପଦର କିଛିମାତ୍ର ଲକ୍ଷଣ ଦେଖାଯାଉ ନ ଥାଏ । ଗଛଉପରେ ଠାଏଁ ଠାଏ ପକ୍ଷୀମାନେ ମଧୁର ସ୍ୱରରେ ଗାଉଥାନ୍ତି । ସାଥିରେ ଏତେଗୁଡ଼ିଏ ଲୋକ ହତିଆର ଧରି ଯାଉଥିବାରୁ ଆବଟ୍‌ଙ୍କର ଟିକିଏ ସାହସ ମଧ୍ୟ ଆସୁଥାଏ ।

ହଠାତ୍ ଶୁଣାଗଲା, "ସେଇଠି ରହ ।"

ଆବଟ୍ ରହିଯାଇ ଚାରିଆଡ଼କୁ ଚାହିଁଲେ ; ମାତ୍ର କାହାରିକୁ ଦେଖିପାରିଲେ ନାହିଁ । ସେ ଯେଉଁ କପଡ଼ାଗଦି ଉପରେ ବସିଥିଲେ ସେଥିରେ କାହିଁ ଗୋଟାଏ ଶର ଆସି ବାଜିଲା । ତାଙ୍କ ରକ୍ତ ପାଣି ହୋଇଗଲା । ଆବଟ୍‌ଙ୍କର କଅଣ ହୁକୁମ ହେବ, ସମସ୍ତେ ଚାହିଁ ରହିଥାନ୍ତି; କିନ୍ତୁ ତାଙ୍କ ତୁଣ୍ଡରୁ କିଛି ବାହାରିଲା ନାହିଁ । ତାଙ୍କର ଏପରି ଭୟ ହୋଇ ଯାଇଥିଲା ଯେ ଶତ୍ରୁସଙ୍ଗେ ଲଢେଇ କରିବା କଥା ଏକବାରେ ଭୁଲିଗଲେ ।

ପୁଣି ଶୁଣାଗଲା, "ଜୀବନର ଆଶାଥିଲେ ଧନୁ ସବୁ ତଳେ ଫିଙ୍ଗିଦିଅ ।" ଆବଟ୍ ମଧ୍ୟ ଭୟରେ କହି ପକାଇଲେ, ହଁ, ହଁ ଧନୁଗୁଡ଼ାକ ଫିଙ୍ଗିଦିଅ ।" ସେ ବିସ୍ମୟରେ ଚାରିଆଡ଼କୁ ଚାହିଁଲେ କିନ୍ତୁ କାହାରି ଦେଖା ପାଇଲେ ନାହିଁ । ଅବଶ୍ୟ ଆବଟ୍‌ଙ୍କ ଲୋକେ ଲଢେଇ କରିଥାନ୍ତେ, କିନ୍ତୁ ତାଙ୍କ ହୁକୁମ ନ ପାଇ ସେମାନେ କଅଣ କରିବେ ?

ଜଙ୍ଗଲ ଭିତରକୁ ଲିଟିଲ ଜନ୍ ଓ ଉଇଲ୍ ସ୍କାର୍ଲେଟ୍ ବାହାରିପଡ଼ିଲେ । ତାଙ୍କ ପଛେ ପଛେ ରବିନ୍‌ହୁଡ଼ର ଦେଡ଼ଶହ ସାଥୀ । ସମସ୍ତଙ୍କ ହାତରେ ଧନୁଶର । ଆକ୍ରମଣ କରିବାକୁ ସମସ୍ତେ ପ୍ରସ୍ତୁତ ।

ଲଟିଲ୍ ଜନ୍ ଆବନ୍ତ୍‌ଙ୍କ ଆଗକୁ ଆସି କହିଲା, "ମହାଶୟ, ଆମର ସରଦାର ରବିନ୍ ହୁଡ଼ ଆମକୁ ପଠାଇଅଛନ୍ତି । ଆମ ସାଥିରେ ଆପଣ ଭୋଜନ କରିବାକୁ ତାଙ୍କର ନିମନ୍ତ୍ରଣ । ସେ ଶୁଣିପାରିଲେ ଯେ ଆପଣ ମହାଜନ କୁରିବାକୁ ନଟିଙ୍ଗହାମ ଯାଉଛନ୍ତି । ଆପଣଙ୍କ କ୍ଷୁଧା ଓ ତୃଷା ଦୂରକରିବାକୁ ତାଙ୍କର ଇଚ୍ଛା ।"

ଆବନ୍ତ୍ ଭୟରେ କାଠ ହୋଇଗଲେ । ସେ ଚୁପ୍‌କରି ରବିନ୍‌ର ଆଡ଼୍‌ଡ଼ା ଆଡ଼କୁ ଚାଲିଲେ । ତାଙ୍କ ଆଦେଶ ପାଇ ତାଙ୍କ ଲୋକେ ମଧ୍ୟ ପଛେ ପଛେ ଚାଲିଲେ ।

ଜଙ୍ଗଲ ଭିତରେ ଖାଇବା ପାଇଁ ଆସନ ପଡ଼ିଥିଲା । ଗୋଟିଏ ପ୍ରକାଣ୍ଡ ଭୋଜର ବ୍ୟବସ୍ଥା ହୋଇଥିଲା । ପ୍ରାୟ ଘଣ୍ଟାକପରେ ରବିନ୍ ବନ୍ଧୁଭଳି ଆବନ୍ତ୍‌ଙ୍କୁ ସ୍ୱାଗତ ସମ୍ଭାଷଣ କରି ଖାଇବାକୁ ଡାକିଲା । ସମସ୍ତେ ଏକାଠି ବସି ତୃପ୍ତିରେ ଭୋଜନ କଲେ ।

ଭୋଜନ ଶେଷ ହେବାପରେ ରବିନ୍ ଆବନ୍ତ୍‌ଙ୍କୁ କହିଲା, "ଆମର ଏଠାରେ ଗୋଟାଏ ବିଧି ଅଛି । ଯେଉଁମାନେ ଆମର ଅତିଥି ହୋଇ ଏଠାରେ ଭୋଜନ କରନ୍ତି, ସେମାନଙ୍କୁ ଖାଦ୍ୟପାଇଁ କିଛି କିଛି ଦେବାକୁ ହୁଏ । ଅବଶ୍ୟ କେହି ଗରିବ ଅତିଥି ଆସିଲେ ମାଗଣା ଖାଇବାକୁ ପାଏ; କିନ୍ତୁ ଅତିଥି ଧନୀ ହୋଇଥିଲେ, ସେ ନିଜ ଖାଇବାପାଇଁ ତ ଦିଏ; ତାଛଡ଼ା ତା ଆଗରୁ ଯେଉଁ ଗରିବ ଅତିଥିମାନେ ମାଗଣା ଖାଇଥାନ୍ତି, ସେମାନଙ୍କ ପାଇଁ ମଧ୍ୟ ଦିଏ । ଅତଏବ ଆପଣ ନିଜପାଇଁ କେତେ ଦେବେ ଓ ଆପଣଙ୍କ ଲୋକମାନଙ୍କ ପାଇଁ କେତେ ଦେବେ, କହନ୍ତୁ ।"

ଆବନ୍ତ୍ ମନର ଭୟକୁ ଲୁଚାଇ ସାହସ ଦେଖାଇ କହିଲେ, "ଆପଣମାନେ ଦେଖନ୍ତୁ, ଆମ୍ଭେମାନେ ନଟିଙ୍ଗହାମ୍‌କୁ ଯାଉଛୁ ।

ମୋଠାରେ ଅତି ସାମାନ୍ୟ କିଛି ଅଛି । ଆମ ଭଳି ଲୋକ ବେଶୀ ଟଙ୍କାର କାରବାର କରିବ କାହିଁକି ? ବାସ୍ତବରେ ମୋଠାରେ କୋଡ଼ିଏଟି ମାତ୍ର ଶିଲିଂ ଅଛି । ମୋର ଦୃଢ଼ ବିଶ୍ୱାସ ଆପଣ ସେତିକ ନେବେନାହିଁ । ନଟିଙ୍ଗହାମ୍‌ରୁ ଫେରିବାପରେ, ଆମ୍ଭେମାନେ ସେତିକରେ ଚଳିବୁ ।”

ରବିନ୍ ସଙ୍ଗେ ସଙ୍ଗେ ଉତ୍ତର ଦେଲ, “ଆପଣ ଯାହା କହିଲେ ତାହା ଯଦି ସତ ହୋଇଥାଏ, ତେବେ ଆପଣଙ୍କୁ କିଛି ମାତ୍ର ଦେବାକୁ ହେବନାହିଁ । କିନ୍ତୁ ଆପଣ ଯାହା କହିଲେ ତାହା ସତ କି ?”

ଆବଟ୍ ପୁଣି ସତ କହୁଛନ୍ତି ବୋଲି କହିଲେ । ରବିନ୍ ତାଙ୍କ ଉତ୍ତରରେ ସନ୍ତୁଷ୍ଟ ହେଲ ପରି ବୋଧ ହେଲ । କିନ୍ତୁ ସେ ହଠାତ୍ ତାଙ୍କୁ କହିଲ, “ଆବଟ୍ ମହାଶୟ ! ଆପଣମାନେ ଖାଉଥିବାବେଳେ ମୋ ଲୋକେ ଘୋଡ଼ାମାନଙ୍କ ଉପରେ ଥିବା ପୋଟଳାଗୁଡ଼ିକ ତଲସ କରି ଆସି ଅଛନ୍ତି । ତାକୁ ଦେଖିଲେ ମନେ ହୁଏ ଯେ ଆପଣ ଗୋଟିଏ ଖଜଣାଖାନା ସାଥିରେ ଧରି ବୁଲୁଛନ୍ତି । ଆପଣ ମୋତେ ଠକିବାକୁ ଚେଷ୍ଟା କରିଛନ୍ତି । ଯଦି ସତ କଥା କହିଥାନ୍ତେ, ତେବେ ଜଣେ ସତ୍ୟବାଦୀ ସାଧୁଲୋକର ଧନ ଉପରେ କଦାପି ଆଖି ପକାନ୍ତି ନାହିଁ । କିନ୍ତୁ ଆପଣ ସେପରି ଲୋକ ନୁହନ୍ତି । ଅତଏବ ଆପଣଙ୍କୁ ନିଜପାଇଁ ଓ ଆପଣଙ୍କର ଅଣଚାଳିଶଜଣ ଲୋକଙ୍କ ପାଇଁ ମୂଲ୍ୟ ଦେବାକୁ ପଡ଼ିବ । ଆପଣ ଜଣପିଚ୍ଛା ପାଞ୍ଚ ପାଉଣ୍ଡ (୧୦) ଲେଖାଏଁ ପଚାଶ ଜଣଙ୍କ ପାଇଁ ଦେଇ ପକାନ୍ତୁ । ପରେ ଆପଣଙ୍କ ସହିତ ସାକ୍ଷାତ ହେଲେ ଆମ୍ଭେମାନେ ଆନନ୍ଦିତ ହେବୁ । ଆହୁରି ମଧ୍ୟ

(୧୦) ପାଉଣ୍ଡ – ଇଂଲଣ୍ଡର ପ୍ରଚଳିତ ସ୍ୱର୍ଣ୍ଣମୁଦ୍ରା । ଏହାର ମୂଲ୍ୟ ପ୍ରାୟ ୨୦ ଟଙ୍କା ।

ଠକିବାକୁ ଚେଷ୍ଟା କରିଥିବା ହେତୁ ଆପଣଙ୍କୁ ଦେଢ଼ଶହ ପାଉଣ୍ଡ ଜରିମାନା ଦେବାକୁ ପଡ଼ିବ । ଏପରି ମୋଟରେ ଆପଣଙ୍କୁ ଚାରିଶହ ପାଉଣ୍ଡ ଦେବାକୁ ହେବ । ଆଶ୍ଚର୍ଯ୍ୟର କଥା ଏହିଯେ ସାର୍ ରିଚାର୍ଡ଼ ବୋଲି ଜଣେ କିଏ କରଜ ସୁଝିବାକୁ ଯାଇ ଆପଣଙ୍କୁ ଠିକ ସେତିକି ଦେଇଥିଲା ।”

ଆବଟ୍ ସ୍ତମ୍ଭୀଭୂତ ହୋଇଗଲେ । ସାର ରିଚାର୍ଡ଼ କେଉଁଠାରୁ ଟଙ୍କା ପାଇଥିଲେ ତାହା ବୁଝିବାକୁ ତାଙ୍କର ଆଉ ବାକି ରହିଲା ନାହିଁ । ତାଙ୍କ ପକ୍ଷରେ ଆଉ ଆପତ୍ତି କରିବାର ଉପାୟ ନ ଥିଲା । ସେ ଚୁପ୍ କରି ମନ ଦୁଃଖରେ ଟଙ୍କାତକ ଦେଇ ପକାଇଲେ ।

କେତେକ ମାସ ପରେ ସାର୍ ରିଚାର୍ଡଙ୍କର ଭାଗ୍ୟ ବଦଳିଗଲା । ସେ ରବିନ୍‌ଠାରୁ ଧାର ଆଣିଥିବା ଟଙ୍କା ଫେରାଇ ଦେବାକୁ ପହଞ୍ଚିଲେ କିନ୍ତୁ ରବିନ୍ ସେ ଟଙ୍କା ଗ୍ରହଣ ନ କରି କହିଲା, “ଆପଣ ଧାର ନେଇ ଥିବା ଟଙ୍କା ପରିଶୋଧ ହୋଇ ଯାଇଛି । ଆବଟ୍ ମହାଶୟ ନଟିଂହାମ୍‌କୁ ଯିବାବେଳେ ଏଠାରେ ସେ ଟଙ୍କାତକ ମୋତେ ଫେରାଇ ଦେଇ ଯାଇଛନ୍ତି ।”



# ଫ୍ରାୟାର (୧୧) ଟକ୍

ଦିନେ ରବିନ୍ ବଣ ଭିତରେ ଗୋଟିଏ ଝରଣାକୂଳରେ ବସି-ଥିଲା । ଥଣ୍ଡା ପବନ ବହୁଥାଏ । ଏହି ସମୟରେ ସେ ଶୁଣି ପାରିଲା ଯେ ସତେ ଯେପରି କିଏ ଦୁଇଜଣ ଯୁକ୍ତିତର୍କ କରୁ ଅଛନ୍ତି ।

ପ୍ରଥମ—ଏଇଟି ଏସାଜ୍ୟ ଭିତରେ ସବୁଠାରୁ ସୁନ୍ଦର ଝରଣା ।

ଦ୍ୱିତୀୟ—ଅସମ୍ଭବ, କାହିଁ ଏଥିରେ ତ ଗୋଟିଏ ହେଲେ ମାଛ ଦେଖାଯାଉ ନାହାନ୍ତି ।

ଶବ୍ଦ ରବିନ୍‌ର ପାଖକୁ ଆସିଲା ପରି ଜଣାଗଲା । ରବିନ୍ ଆଶ୍ଚର୍ଯ୍ୟ ହେଲା ଯେ ଦୁଇଟି ଯାକ ସ୍ୱର ଠିକ୍ ଏକାପରି । ସେ କାନ ଡେରି ଶୁଣିଲା । ଯୁକ୍ତିତର୍କ ଚାଲିଥିଲେହେଁ ଦୁଇଟି ଯାକ ସ୍ୱର ଏକା-ପରି ଓ କେହି ବିରକ୍ତ ହେଉ ନ ଥାନ୍ତି । ଅବଶ୍ୟ ଝରଣା ବିଷୟରେ ମତ ଦୁଇଟି ପୃଥକ୍ ଥିଲା ।

ଜଣେ ପୃଥୁଳକାୟ ଲୋକ ଝରଣାର ଆର ପାଖରୁ, ଗଛ ଉହାଡ଼ରୁ ବାହାରି ପଡ଼ିଲା । ସେ ଜଣେ ଫ୍ରାୟାର ବୋଲି ତାହାର ପୋଷାକରୁ ଜଣା ପଡ଼ୁଥିଲା । ତାହାର ମୁଣ୍ଡଟି ଟାଙ୍ଗରା । ଅଳ୍ପ କେତୋଟି ବାଳ ମଝିରେ ମଥାଟି ଚକ୍‌ଚକ୍ ଦିଶୁଥାଏ । ଅବଶ୍ୟ ଫ୍ରାୟାର ଏକୁଟିଆ । ରବିନ୍ ଭାବିଲା ଯେ ସେ ଆଉ କାହା ସହିତ କଥାବାର୍ତ୍ତା ହେଉଥିଲେ । କିନ୍ତୁ ଆଖ ପାଖରେ ଅନ୍ୟ କେହି ଦେଖା

---

(୧୧) ଫ୍ରାୟାର—ରୋମାନ କାଥଲିକ ସମ୍ପ୍ରଦାୟର ଏକ ଶ୍ରେଣୀର ସନ୍ନ୍ୟାସୀ ।

ଯାଇ ନ ଥିଲେ । ଝରଣା କୂଳକୁ ଆସି ଫ୍ରାସ୍ବାର୍ କହିଲେ, "ଏ ଝରଣାରେ ମାଛ ଧରିବାକୁ ଚେଷ୍ଟା କରିବା ବୃଥା ।"

ତା'ପରେ ସେ ନିଜେ ନିଜେ ଉତ୍ତର ଦେଲେ, "ତେବେ ସନ୍ଧ ପାରୁ ମୋତେ ଆଜ ଗୋଟିଏ ଝରଣା ପାଖକୁ ନେଇଯା ।"

ଏବେ ରବିନ୍ ଜାଣି ପାରିଲା ଯେ ଫ୍ରାସ୍ବାର ଆପଣା ସହିତ ଆପେ ତର୍କକରି କଥାବାର୍ତ୍ତା ହେଉଥିଲେ । ରବିନ୍ କହିଲା, "ନମସ୍କାର, ଆପଣ ଦୁହେଁ କିପରି ଅଛନ୍ତି ?" ଫ୍ରାସ୍ବାର କହିଲେ, "ବେଶ୍ ଭଲଅଛୁ ।"

ରବିନ୍—ମୁଁ ଝରଣା ଆରପାଖକୁ ଯିବାକୁ ଚାହେଁ ।

ଫ୍ରାସ୍ବାର୍—ଭଲ କଥା, ଚାଲିଆସ ।

ରବିନ୍—କିପରି ଯିବି ?

ଫ୍ରାସ୍ବାର—ମୁଁ ଯେପରି ଯାଆନ୍ତି, ସେହିପରି ଯାଅ । ପାଣିରେ ପଶି ଚାଲିବାକୁ ହେବ ।

ରବିନ୍—କିନ୍ତୁ ମୁଁ ଭାବୁଛି, ପାଣିରେ ନ ପଶି କିପରି ଯାଇ-ହେବ ।

ଫ୍ରାସ୍ବାର—ଓଃ ! ତାହାହେଲେ ତୁମେ ଉଡ଼ି ଶିଖିଥିବ ।

ଏତିକି କହି ଫ୍ରାସ୍ବାର୍ ବନସୀରେ ମାଛ ଧରିବାକୁ ଲାଗିଲେ । ବୋଧ ହେଲା ଯେପରିକି ସେ ରବିନ୍‌ର କଥାକୁ ପୂରା ଭୁଲି ଯାଇ-ଅଛନ୍ତି । ମାତ୍ର ମୁହୂର୍ତ୍ତକ ପରେ ରବିନ୍ ରୁକ୍ଷଭାବରେ କହିଲା, "ହେ ବନ୍ଧୁ ।" ଏତିକି ଶୁଣିଲାକ୍ଷଣି ଫ୍ରାସ୍ବାର ରବିନ୍ ଆଡ଼କୁ ଚାହିଁଲେ ଯେତେବେଳକୁ ରବିନ୍ ହାତରେ ଧନୁ ଧରି ତାଙ୍କ ଆଡ଼କୁ ଶର ଲକ୍ଷ କରିଥାଏ । ଫ୍ରାସ୍ବାର ଲବେ ମାତ୍ର ଭୟ ପ୍ରକାଶ ନ କରି ରବିନ୍ ଆଡ଼କୁ ଚାହିଁଲେ । ରବିନ୍ ପୁଣି ଆଦେଶ ଦେଲା "ମୋତେ ଝରଣା ଆରପାଖକୁ ନେଇଯାଅ ।" ଫ୍ରାସ୍ବାର—"ତୁମେ କଣ

ଏହିପରି ଭାବରେ ଅନ୍ୟଠାରୁ ଅନୁଗ୍ରହ ଭିକ୍ଷା କର । ତୁମକୁ ଝରଣା ପାରି କରାଇବା ଯେବେ ତୁମର ଇଚ୍ଛା ଥିଲା, ତେବେ ମୋତେ ଆଗରୁ କହିଲନାହିଁ କାହିଁକି ?"

ଫ୍ରାଙ୍କ୍ଲିନ୍‌ଙ୍କ ନିଜର ଖଣ୍ଡାଟି ଝରଣା କୂଳରେ ରଖିଦେଇ ଠିଆ ହେଲେ । ତା'ପରେ ପାଣିରେ ପଶି ରବିନ୍ ଠିଆ ହୋଇଥିବା ସ୍ଥାନରେ ପହଞ୍ଚିଲେ । କୂଳରେ ପହଞ୍ଚିଲାକ୍ଷଣି କହିଲେ, "ମୋ ପିଠିରେ ଲଦି ହୋଇପଡ଼ । କିନ୍ତୁ ମନେରଖ, ଆଉ କେବେ ଏପରି ନିଶ୍ଚା ପାରି ହେବାକୁ ହେଲ ଭଦ୍ର ଭାବରେ କହିବ ।"

ରବିନ୍ ସେହି ମୋଟା ଫ୍ରାଙ୍କ୍ଲିନ୍‌ଙ୍କ ପିଠିରେ ଓହଳି ପଡ଼ିଲା ଏବଂ ସେ ପାଣିରେ ପଶି ଆରି କୂଳକୁ ଚାଲିଲେ । ଝରଣା ଭିତରେ ଗୁଡ଼ାଏ ପଥର ଥିଲା । ତେଣୁ ଚାଲିବା କଷ୍ଟକର ହେଉଥିଲା । ବେଳେବେଳେ ତାଙ୍କର ଗୋଡ଼ ଖସି ଯାଉଥିଲା ବା ସେ ଝୁଣ୍ଟି ପଡ଼ୁଥିଲେ । ଯାହାହେଉ ଦୁହେଁ ଯାକ ନିରାପଦରେ ଆର କୂଳରେ ପହଞ୍ଚିଲେ ।

ଫ୍ରାଙ୍କ୍ଲିନ୍ ନିଜର ଖଣ୍ଡାଟିକୁ ଧରିଲେ । ତାକୁ ହଲାଇ ହଲାଇ ରବିନ୍‌କୁ କହିଲେ, "ଏବେ ମୋ ପାଳି ପଡ଼ିଲା । ସେପାରିକି ଯିବା ମୋର ଇଚ୍ଛା । ତମକୁ ମୋତେ ପିଠିରେ ବୋହି ନେଇ ସେପାରିକୁ ଯିବାକୁ ହେବ ।"

ରବିନ୍ ଫ୍ରାଙ୍କ୍ଲିନ୍‌ଙ୍କର ଏତେ ପାଖରେ ଥିଲା ଯେ ସେଠାରେ ଧନୁଶର ବ୍ୟବହାର କରିବା ଅସମ୍ଭବ । ତାଙ୍କର ଏପରି ସାହସ ଦେଖି ରବିନ୍ ଟିକିଏ ହସିଲା । ସେ ବୁଝିପାରିଲା ଯେ ଫ୍ରାଙ୍କ୍ଲିନ୍ ଏପରି ମୋଟା ହେଲେହେଁ ତାଙ୍କଠାରେ ଯଥେଷ୍ଟ ବଳ ଓ ସାହସ ଅଛି । ଅନ୍ତର ମଧ୍ୟ ଲୋକଟି କୌତୁକପ୍ରିୟ । ସେ ଭକ୍ତି ସହକାରେ ତାଙ୍କୁ ପ୍ରଣାମ କରି କହିଲା, "ଏତ ନ୍ୟାଯ୍ୟ କଥା, ମୋ ପିଠିରେ ଲଦି ହୋଇ ପଡ଼ ।"

ଆଗରୁ ଫ୍ରାସ୍ୱାର ଓଦା ହୋଇ ଯାଇଥିଲେ । ସେ ସେହି ଓଦା ଦେହରେ ରବନ୍‌ର ପିଠିରେ ଓହଳ ପଡ଼ିଲେ ଓ ରବନ୍ ପାଣି ଭିତରେ ଚାଲିବାକୁ ଲାଗିଲା । ଫ୍ରାସ୍ୱାର ଖୁବ୍ ଓଜନ । ତେଣୁ ତାଙ୍କୁ ପିଠିରେ ପକାଇ ଝରଣାରେ ଚାଲିଲାବେଳେ ରବନ୍‌କୁ କଷ୍ଟ ହେଉଥାଏ । ଫ୍ରାସ୍ୱାର ତା ପିଠିରେ ଓହଳ ପଡ଼ି ମଜା ଦେଖୁଥାନ୍ତି । ଧୀରେ ଧୀରେ ଯାଇ ରବନ୍ ଆର କୂଳରେ ପହଞ୍ଚି ତାଙ୍କୁ ଘାସ-ଉପରେ ଓହ୍ଲାଇ ଦେଲା । ସେ ହସି ଉଠିଲେ ଓ ତା ପରେ କହିଲେ; “କି ବୋକାମି ? ଏହାପରେ ଆଉ କଣ କରିବା ?”

ରବନ ଧୀରସ୍ଥିର ଭାବରେ କହିଲା, “କାହିଁକି ପୁଣି ତୁମେ ମୋତେ ପିଠିରେ ବସାଇ ଆରପାରିକୁ ନଅ ।”

ଫ୍ରାସ୍ୱାର ଆଉ ହସି ପାରିଲେ ନାହିଁ । କୌତୁକ କରିବାର ଗୋଟାଏ ସୀମା ଅଛି । ସେ କହିଲେ, “ତୁମେ ଯଦି କହୁଛ, ମୁଁ ତୁମକୁ ପିଠିରେ ବୁହାଇ ଆରପାଖକୁ ନେବି । କିନ୍ତୁ ମନେରଖ, ଏଇ ହେଉଛି ଶେଷ ଥର ।”

ରବନ୍ ଫ୍ରାସ୍ୱାରଙ୍କ ପିଠିରେ ଲଉ ହେଲା । ଝରଣା ମଝିରେ ହେଲା ବେଳକୁ ତାଙ୍କର ଗୋଡ଼ ଗୋଟାଏ ପଥରରେ ବାଜିଲା । ସେ ମୁହଁମାଡ଼ି ପଡ଼ିଗଲେ । ତା ସଙ୍ଗେ ସଙ୍ଗେ ରବନ୍ ମଧ୍ୟ ପିଠିରୁ ଖସି କିଛି ଦୂରରେ ପାଣିରେ ପଡ଼ିଗଲା । ଫ୍ରାସ୍ୱାର କିଛି ନ ଜାଣିଲା ପରି ଧୀରେ ସୁସ୍ଥେ ଝରଣା କୂଳକୁ ଚାଲିଲେ ଓ କୂଳରେ ପହଞ୍ଚି ପୋଛୁପୋଛୁ ହେଲେ ।

ରବନ ମଧ୍ୟ ପାଣିରୁ ଉଠିପଡ଼ି ଫ୍ରାସ୍ୱାରଙ୍କ ପଛେ ପଛେ କୂଳରେ ପହଞ୍ଚିଲା ଓ କହିଲା, “ତୁମେ ଜାଣିଶୁଣି ମୋତେ ପାଣିରେ ଫିଙ୍ଗିଦେଇଛ । ତୁମକୁ ଏହାର ପ୍ରତିଫଳ ଭୋଗିବାକୁ ହେବ ।” ଫ୍ରାସ୍ୱାର କହିଲେ, “ମୁଁ ଶପଥ କରି କହିପାରେଁ ଯେ –” କିନ୍ତୁ

ତାଙ୍କ କଥା ଶେଷ ହେବାରୁ ରବନ୍ ଆକ୍ରମଣ ଆରମ୍ଭ କରି ଦେଇ ଥିଲା । ଦୁହିଁଙ୍କ ଭିତରୁ କାହାରି ହାତରେ କିଛି ହତିଆର ନ ଥିଲା । ଦୁହେଁ ଯାକ ପରସ୍ପରକୁ ବିଧା ଓ ମୁଥ ମାରୁଥାନ୍ତି । ଫ୍ରାୟାର ଯେପରି ମୋଟା ସେହିପରି ବଳୁଆ । ସେ ରବନ୍‌କୁ ଅନେକ ମୁଥ ମାରିଲେ । କିଛି ସମୟ ଲଢ଼େଇ କଲା ପରେ ରବନ୍ ଦେଖିଲା ଯେ ଏପରି ମଗମରି ହେବା ମୂର୍ଖତାର କାର୍ଯ୍ୟ । ତେଣୁ ସେ ଆଉ ମାଡ଼ ନ ଦେଇ ଫ୍ରାୟାରଙ୍କୁ କହିଲା, "ତୁମେ ଜଣେ ସାହସୀ ଲୋକ । ଆମେ ଆପଣା ଭିତରେ ଲଢ଼େଇ କରିବା ଏକବାରେ ମୂର୍ଖତା । ମୁଁ ତୁମରି ଭଳି ଗୋଟିଏ ଲୋକ ଖୋଜୁଛି ।"

ଫ୍ରାୟାର ଠିଆ ହୋଇ ପଡ଼ି କହିଲେ, "ମୁଁ ତ କାହାରି ଶତ୍ରୁ ନୁହେଁ । ସମସ୍ତଙ୍କ ସାଥିରେ ଶାନ୍ତିରେ ଚଳିବା ମୋର ସ୍ୱଭାବ । ତୁମେ ପ୍ରଥମେ ଲଢ଼େଇ କରିବାକୁ ବାହାରିଲ । ହଉ, ସେ କଥା ଛାଡ଼ । ଆସ ଆମେ ବନ୍ଧୁଭାବରେ କରମର୍ଦ୍ଦନ କରିବା ।"

ଏହିପରି ଦୁହେଁ ପରସ୍ପର କରମର୍ଦ୍ଦନ କରି ବନ୍ଧୁ ହୋଇଗଲେ ।

ରବନ୍ କହିଲା, "ଯଦି ମୋତେ କିଛି ବିପଦ ଘଟିଥାନ୍ତା, ତେବେ ମୋ ଶିଙ୍ଗାର କରାମତି ଦେଖିଥାନ୍ତ । ଶିଙ୍ଗାରେ ତିନିଥର ବଜାଇଲା ବେଳକୁ ସାରା ଜଙ୍ଗଲ ତେଇଁ ଉଠିଥାନ୍ତା ।"

ଫ୍ରାୟାର ହସିହସି କହିଲେ, "କଅଣ, ଜଙ୍ଗଲର ଜନ୍ତୁଯାକ ଉପରେ ପଳାଇଥାନ୍ତେ ?"

ରବନ୍ ଶିଙ୍ଗା ବଜାଇଲା । ମୁହୂର୍ତ୍ତକ ଭିତରେ ଜଙ୍ଗଲ ଭିତରୁ ରବନ୍‌ର ଲୋକେ ଦୌଡ଼ି ଆସିଲେ । ଏମାନଙ୍କ ଭିତରୁ ଲିଟିଲ୍ ଜନ୍ ପ୍ରଥମେ ପହଞ୍ଚିଲା । ସେ କହିଲା, "କହୋ ଫ୍ରାୟାର୍ ଟକ୍ ! ତୁମେ କିପରି ଏଠାକୁ ଆସିଲ ?"

ରବନ୍ ବିସ୍ମିତ ହୋଇ ପଚାରିଲା, "ତୁମେ କଣ ଆଗରୁ ଏହାଙ୍କୁ ଚିହ୍ନିଥିଲ ?"

ଜନ୍ ହସିହସି ଉତ୍ତର କଲା, "ଚିହ୍ନିବାକଥା କଣ କହୁଛ । ଟକ୍ ହେଉଛନ୍ତି ଏକା ଜଣେ ଲୋକ ଯେ କି ମୋତେ ଶର ମାରିବାରେ ବଳିଯାଉଥିଲା । ଆମେ ବହୁକାଳ ଧରି ପରସ୍ପରର ବନ୍ଧୁ ।"

ରବନ୍ ଆଡ଼କୁ ଚାହିଁ ଫ୍ରାୟାର ଟକ୍ କହିଲେ, "ତାହାହେଲେ ତୁମେଇ ହେଉଛ ରବନ୍ ହୁଡ୍ ।" ରବନ୍ ଧୀର ଭାବରେ କହିଲା, "ହଁ, ମୁଁ ହେଉଛି ସେହି ରବନ୍ ହୁଡ୍ ।"

ଫ୍ରାୟାର ଟକ୍ ମୁଣ୍ଡ ହଲାଇ କହିଲେ, "ଯେଉଁ ଲୋକ ଦେଶର ଆଇନ୍ ମାନେ ନାହିଁ, ସେପରି ଜଣେ ଲୋକକୁ ଆଜି ମୁଁ ପିଠିରେ ବୋହିଲି । କି ଘୋର ଲଜ୍ଜାର କଥା । ସଙ୍ଗେ ସଙ୍ଗେ ରବନ୍ ହୁଡ୍ ଉତ୍ତର କଲା, "ମୁଁ ଓ ମୋ ଦଳର ଲୋକେ ଜନସାଧାରଣଙ୍କର କ୍ଷତି ଅପେକ୍ଷା ଅଧିକ ଉପକାର କରୁଁ । ଆମେ ଧନୀ ଲୋକଙ୍କଠାରୁ ଧନ ନେଇ ଗରିବ ଲୋକଙ୍କୁ ଦେଉଁ । ଦେଶର ଆଇନ୍ ଏହାହିଁ କରିବା ଉଚିତ ।" ଫ୍ରାୟାର ମୁଣ୍ଡ ହଲାଇ ପ୍ରତିବାଦ କଲେ, "ମୋ ମତରେ ନଟିଂହାମ୍‌ର ଶେରିଫ କଦାପି ତୁମ ସହିତ ଏକମତ ହେବେ ନାହିଁ । ତଥାପି ତୁମେ ଯାହା କହୁଛ, ସେଥିରେ କିଛି ସତ ଅଛି । ଗରିବ ଲୋକଙ୍କର ସାହାଯ୍ୟ ଦରକାର । ଉଦାହରଣ ସ୍ୱରୂପ ମୁଁ ଜଣେ । ମୋର ସାହାଯ୍ୟ ଲୋଡ଼ା ।"

ରବନ୍ ଏହା ଶୁଣି ଫ୍ରାୟାରଙ୍କ ଆଡ଼କୁ ସନ୍ଦେହପୂର୍ଣ୍ଣ ଦୃଷ୍ଟିରେ ଚାହିଁ କିଛି ସମୟ ପରେ କହିଲା, "ହଁ, ତମ ଦେହରୁ କିଛି ଚର୍ବି କମାଇ ଦେବାରେ ମୋର ସାହାଯ୍ୟ ଦରକାର । ଆଚ୍ଛା, ସେ କଥା ଥାଉ । ବର୍ତ୍ତମାନ ତୁମର ଧନୁର୍ବିଦ୍ୟାର କୌଶଳ କିଛି ଦେଖାଅ ।"

ଫ୍ରାୟାର ଟକ୍ ଓଠ ଉପରେ ଦୁଇଟି ଆଙ୍ଗୁଠି ରଖି ସିଟି ବଜାଇଲେ । ତତ୍‌କ୍ଷଣାତ୍ ଗୋଟାଏ ପ୍ରକାଣ୍ଡ କୁକ୍‌କୁର ତାଙ୍କ ପାଖକୁ ଦୌଡ଼ିଆସିଲା । ଏଇଟି ଯେ ତାଙ୍କର ପୋଷା କୁକ୍‌କୁର, ଏହା ଜଣା-ପଡ଼ିଗଲା । କୁକ୍‌କୁରଟି ସ୍ଥିର ହୋଇ ଠିଆ ହେଲା । ଟକ୍ ତା ମୁଣ୍ଡ ଉପରେ ଖଣ୍ଡିଏ ପଥର ରଖିଦେଇ ରବିନ୍‌କୁ କହିଲେ, "ଏବେ ଦେଖ" । ଟକ୍ କିଛି ଦୂରକୁ ଖସିଯାଇ ନିଜ ଧନୁରେ ଶର ଯୋଖିଲେ ଏବଂ କୁକ୍‌କୁରର ମୁଣ୍ଡ ଆଡ଼କୁ ଲକ୍ଷ କରି ଶର ମାରିଲେ । ପଥର ଖଣ୍ଡିକ କୁକ୍‌କୁରର ମୁଣ୍ଡ ଉପରୁ ତଳେ ଖସି ପଡ଼ିଲା । କିନ୍ତୁ ତାହାର ଦେହରେ କୌଣସି ଆଘାତ ଲାଗିଲା ନାହିଁ ।

ଏହା ଦେଖି ରବିନ୍ ଫ୍ରାୟାରଙ୍କୁ ଖୁବ୍ ପ୍ରଶଂସାକରି କହିଲା, "ତୁମେ ମୋ ଦଳରେ ମିଶିବ କି ? ତମଭଳି ଜଣେ ଭଲ ଲୋକ ଆମର ଦରକାର । ଆମ ସ୍ୱଭାବରେ କେତେକ ଦୋଷ ଅଛି । ଜଣେ ଧାର୍ମିକ ଲୋକ ଦଳରେ ଥିଲେ, ସେ ଦୋଷସବୁ ଦୂର ହୋଇ ପାରିବ ।"

ଫ୍ରାୟାର ଟିକଏ ଚୁପ୍ ହୋଇ ରହିଗଲେ । ବୋଧହୁଏ ସେ ମନେ ମନେ ଯୁକ୍ତି କରୁଥିଲେ । ଶେଷରେ କହିଲେ, "ଯଦି ମୋ ଦ୍ୱାରା ତୁମର କିଛି ଉପକାର ହୋଇ ପାରେ ତେବେ ନିଶ୍ଚୟ ତୁମ ଦଳରେ ଯୋଗଦେବି ।"

ରବିନ୍‌ର ଲୋକେ ଆନନ୍ଦରେ ଚିତ୍କାର କଲେ । ସେହି ମୁହୂର୍ତ୍ତରୁ ଫ୍ରାୟାର ଟକ୍ ରବିନ୍‌ର ଦଳଭୁକ୍ତ ହୋଇ ରହିଲେ । ଦଳର ସମସ୍ତେ ନୂଆ ହୋଇ ଯୋଗଦେଲା ବେଳେ ଗୋଟିଏ ନୂଆ ନାମ ଗ୍ରହଣ କରନ୍ତି କିନ୍ତୁ ଟକ୍‌ଙ୍କର ନୂତନ ନାମକରଣ ହେଲା ନାହିଁ । ସେ ଦଳମଧ୍ୟରେ ସେହି ଫ୍ରାୟାର ଟକ୍ ନାମରେ ପରିଚିତ ହେଲେ ।



୧୫

# ସାର୍ ଗାଏଙ୍କ ଉପରେ ପ୍ରତିଶୋଧ

ବୁଢ଼ୀଟିଏ ଚୁଲି ପାଖରେ ବସି ଅରଟରେ ସୂତା କାଟୁଥିଲେ । ରବିନ୍ ତାଙ୍କ ପାଖରେ ଗୋଟିଏ ବେଞ୍ଚରେ ବସିଥାଏ । ସେ ବୁଢ଼ୀକି କହିଲା, "ମୋର ଥରେ ଗାମ୍‌ୱେଲକୁ ଯିବାର ଖୁବ ଇଚ୍ଛା ।" ବୁଢ଼ୀ ସୂତାକଟା ବନ୍ଦକରି ରବିନକୁ ଚାହିଁ କହିଲେ "ନାଇଁ ବାପ, ଆଜି ସେଠିକି ଯାଇ କୌଣସି ଲାଭ ନାହିଁ । ସେ ଗଡ଼ଟି ଏବେ ଆଉ ତାଙ୍କ ହାତରେ ନାହିଁ ।" ରବିନ୍ ବିସ୍ମିତ ହୋଇ ପଚାରିଲା, "ତାହାହେଲେ ମେରିଆନ୍ ଓ ଉଇଲିଅମ୍ କଣ କରୁଅଛନ୍ତି ? ମୁଁ ମେରିଆନ୍‌କୁ କହିଥିଲି ତା ପାଖକୁ ଯିବି । ମୋତେ ସେଠାକୁ ନିଶ୍ଚୟ ଯିବାକୁ ହେବ ।"

ବୁଢ଼ୀ ପୁଣି କହିଲେ "ସ୍କୋୟାର ଗାମୱେଲ ମରି ଗଲେଣି । ତାଙ୍କ ଗଡ଼ରେ ଏବେ ଗିସ୍‌ବର୍ଣ୍ଣର ସାର୍ ଗାଏ ରହୁଛନ୍ତି ।"

ରବିନ ବୁଢ଼ୀଙ୍କର କଥାକୁ ବିଶ୍ୱାସ କରିପାରିଲା ନାହିଁ । ସ୍କୋୟାର ଗାମୱେଲଙ୍କ ମୃତ୍ୟୁ ସମ୍ବାଦରେ ସେ ଯେତେ ବିଚଳିତ ହୋଇଥିଲା, ତାଙ୍କର ଶତ୍ରୁ ସାର୍ ଗାଏ ତାଙ୍କ ଘରେ ରହିଥିବା ସମ୍ବାଦରେ ତହିଁରୁ ଅଧିକ ବିଚଳିତ ହୋଇ ପଡ଼ିଲା । ସେ ପ୍ରଶ୍ନକଲା, "ସ୍କୋୟାର ଗାମୱେଲ୍ ମରିଗଲେ ତାଙ୍କ ପୁଅ ଗଡ଼ର ଅଧିକାରୀ ହେବାର କଥା, ସାର୍ ଗାଏ କିପରି ସେଠାକୁ ଆସିଲେ ?"

ବୁଡ଼ୀ ସମସ୍ତ ଘଟଣା ବୁଝାଇ କହିଲେ "ହିନେ ଗିମ୍‌ବର୍ଣ୍ଣର ସାର୍ ଗାଏ ଗୁଡ଼ଏ ସୈନ୍ୟ ନେଇ ଗାମର୍ଓଏଲ୍ ଗଡ଼କୁ ଆକ୍ରମଣ କଲେ ।

ଅନେକ ବେଳ ଯାଏ ଉଭୟ ପକ୍ଷର ଯୁଦ୍ଧ ଚାଲିଲା । ଶେଷରେ ସ୍କୋୟାର ଗାମର୍ଓଏଲ ମଲେ ଓ ସାର ଗାଏ ଗଡ଼କୁ ଅଧିକାର କରି ନେଲେ ।"

ରବିନ୍ ସଙ୍ଗେ ସଙ୍ଗେ ପଚାରିଲା, "ମେରିଆନ୍‌ର ଦଶା କଣ ହେଲା ?" ବୁଡ଼ୀ ଉତ୍ତରଦେଲା, "ମୁଁ ଜାଣେନା । ତା କଥା ବୋଧ-ହୁଏ କେହି ଜାଣନ୍ତି ନାହିଁ ।" ରବିନ୍ ବିସ୍ମିତ ହୋଇ କହିଲା, "ତେବେ ସେ କଣ ଉଭେଇ ଗଲା ।"

ବୁଡ଼ୀ ଉତ୍ତର ଦେଲା, "କେହି କେହି କହନ୍ତି ଯେ ଗଡ଼ ଉପରେ ଆକ୍ରମଣ ହେଲା ବେଳକୁ ସେ ସେଠାରେ ନ ଥିଲା । କୁଆଡ଼େ ଚାଲି ଯାଇଥିଲା । କେତେକେ କହନ୍ତି ଯେ ସାର୍ ଗାଏ ମେରିଆନ୍‌କୁ ବନ୍ଦୀକରି ନେଇ ବିବାହ କରିଛି । ଆଉ କେହି କେହି କହନ୍ତି ଯେ ସେ ମେରିଆନ୍‌କୁ ପ୍ରାଣରେ ମାରି ଦେଇଛି ।"

ରବିନ୍ ଝରକାବାଟେ ବାହାରକୁ ଚାହିଁଥାଏ । ତାକୁ ଚାରିଆଡ଼ ଅନ୍ଧାର ଦିଶିଲା । ସେ ବିଶ୍ୱାସ କରିପାରିଲା ନାହିଁ ଯେ ତାର ଆଦରର ମେରିଆନ୍ ଆଉ ଇହସଂସାରରେ ନାହିଁ । ଟଳି ଟଳି ସେ ବାହାରକୁ ଆସିଲା । ସାର୍ ଗାଏ ଉପରେ ପ୍ରତିଶୋଧ ନେବାକୁ ସେ ମନେ ମନେ ପ୍ରତିଜ୍ଞା କଲା ।

ଜଙ୍ଗଲ ଭିତରେ ଆଡ୍‌ଡାକୁ ଫେରିଆସି ସେ ତାର ସବୁ ସହଚରଙ୍କୁ ଡାକି କହିଲା "ଚାଲ ଆମ୍ଭେମାନେ ଯାଇ ଗାମର୍ଓଏଲ୍ ଗଡ଼କୁ ଆକ୍ରମଣ କରିବା । ସାର୍ ଗାଏ ଏହି ଗଡ଼କୁ ଦଖଲ କରି ଆମର ବନ୍ଧୁ ସ୍କୋୟାର ଗାମର୍ଓଏଲଙ୍କୁ ମାରି ପକାଇଛି । ମେରିଆନ୍

ଓ ଉଇଲଙ୍କର ଦଶା କଣ ହେଲା କେହି କହି ପାରୁନାହାନ୍ତି । ଆମେ ସେକଥା ବାହାର କରିବା ।” କାଟିଲ ଜନ୍ ପଚାରିଲେ, “ସର୍ଦ୍ଦାର ଜୀ ! ତେବେ ତୁମର ପ୍ରସ୍ତାବ କଣ ?” ରବିନ୍ ଉତ୍ତରକଲେ, “ଆଜି ରାତିରେ ଗଡ଼ ଆକ୍ରମଣ କରିବା ଛଡ଼ା ମୋର ଅନ୍ୟ କିଛି ପ୍ରସ୍ତାବ ନାହିଁ ।”

ସେଦିନ କୃଷ୍ଣପକ୍ଷର ଅନ୍ଧାର ରାତି । ରବିନ୍‌ର ସାଥୀମାନେ ଅନ୍ଧାରରେ ବାହାରିପଡ଼ି ଜଙ୍ଗଲରେ ଯାଉ ଯାଉ କିପରି ଆକ୍ରମଣ କରିବେ ସେ ବିଷୟରେ ଗଳ୍ପ କରୁଥାନ୍ତି । ରବିନ୍ ସେମାନଙ୍କୁ ଜଙ୍ଗଲ, ପଡ଼ିଆ, ପାର କରାଇ ବଣର ଧାରରେ ପହଞ୍ଚିଲେ । ରାଜପଥ ରାସ୍ତାର କିଛି ଦୂର ଅତିକ୍ରମ କଲା ପରେ ନୋଟିଂହାମ୍ ଗଡ଼ର ଆଲୁଅ ଦିଶିଲା । ରବିନ୍ ସାଥୀମାନଙ୍କୁ କହିଲେ “ଦେଖ, ସମସ୍ତେ ଚୁପ୍‌କରି ଚାଲ । ଗଡ଼ରେ ନ ପହଞ୍ଚିବା ଯାଏ କାହାରି ତୁଣ୍ଡରୁ ଯେପରି ପଦେ ସୁଦ୍ଧା କଥା ନ ବାହାରେ ।”

ସମସ୍ତେ ତୁନି ହୋଇଗଲେ । ରାତିର ନୀରବତା ଭିତରେ ସେମାନଙ୍କର ଧୀର ପଦଧ୍ୱନି କେବଳ ଶୁଣା ଯାଉଥାଏ । ଜଳୀର କୂଳରେ ପହଞ୍ଚି ରବିନ୍ ସାଥୀମାନଙ୍କୁ କହିଲେ, “ଏଠାରେ ଗୋଟିଏ ଜଳୀ ଅଛି ।”

ଗଡ଼ର କେତୋଟି ଘରର ଆଲୁଅ ଜଳୀର ପାଣି ଉପରେ ପଡ଼ି ଚକ୍ ଚକ୍ ଦିଶୁଥାଏ । ବେଳେ ବେଳେ ଧୀର ପବନ ବାଜି ଜଳୀରେ ଲହରୀ ସୃଷ୍ଟି ହେଉଥାଏ । ଅନ୍ଧାର ରାତିରେ ଏହାର ଥଣ୍ଡାପାଣି ଛୁଇଁବାକୁ କାହାରି ଇଚ୍ଛାହେବ ନାହିଁ । କାଟିଲ୍ ଜନ ଓ ଉଇଲ୍ ସ୍କାର୍ଲେଟ୍, ଏ ଦୁହିଁଙ୍କ ପାଖକୁ ଆସି ରବିନ୍ ଚୁପ୍ ଚୁପ୍ କହିଲେ, “ତୁମେ ଦୁଇଜଣ ପହଁରି ଜଳୀ ପାର ହୋଇଯିବ । ଲୁଚି ଲୁଚି ଗଡ଼ ଝରକା ପାଖକୁ ଯାଇ ଭିତରେ କଣ ହେଉଛି ଦେଖି ଆମକୁ

କହିବ । ତୁମେ ଝରକାପାଏ ଯାଉଁ ଯାଉଁ ଆମେ ଜଳୀ ପାର ହୋଇ ଆର ପାଖେ ପହଞ୍ଚିଥିବୁ ।"

ଆଦେଶ ପାଇବାମାତ୍ରେ ଲିଟିଲ୍ ଜନ୍ ଓ ଉଇଲ ଷ୍କାର୍ଲେଟ୍ ପାଣିଭିତରକୁ ଖସି ପଡ଼ିଲେ ଓ କୌଣସି ଶବ୍ଦ ନ କରି ଆରକୂଳକୁ ପହଁରି ଗଲେ । ଅଳ୍ପ ସମୟ ଭିତରେ ରବିନ୍ ଓ ତାହାର ଲୋକେ ଜଳୀର ଆର ପାରିରେ ପହଞ୍ଚି ଅପେକ୍ଷା କଲେ । ସେ ଦୁହେଁ ଝରକା ପାଖରୁ ଫେରିଆସି ଏମାନଙ୍କୁ ଭେଟିଲେ । ଲିଟିଲ୍ ଜନ୍ କହିଲା, "ସାର୍ ଗାଏ ଗୋଟାଏ ଭୋଜ କରୁଛନ୍ତି । ସମସ୍ତେ ମଉଜ ମଜଲିସ୍‌ରେ ମାତିଛନ୍ତି ।" ଏହାଶୁଣି ଫ୍ରାୟାର ଟକ୍ କହିଲେ, "ତାହାହେଲେ ଆମର ସୁବିଧା । ରବିନ୍ ହୁଡ୍ ଓ ତାହାର ସାଥୀଙ୍କସହିତ ସାର୍ ଗାଏ ଓ ତାର ସାଥୀଙ୍କର ଯୁଦ୍ଧ ହେବ ।"

ରବିନ୍ କହିଲା "ଆମ ଖଣ୍ଡା ଦେଖିଲେ ତାଙ୍କ ମଉଜ ଭାଙ୍ଗିଯିବ । ଚାଲ, ଆମେ ଆଗେଇବା ।" ଗଡ଼ ଚାରିପାଖରେ ଜଳୀଠାରୁ ଅଳ୍ପ ଦୂରରେ ଗୋଟାଏ ବାଡ଼ ଥିଲା । ସେହି ବାଡ଼ରେ କପରି ଗୋଟାଏ କଣା ହୋଇଯାଇଥିଲା । ଲିଟିଲ୍ ଜନ୍ ଓ ଉଇଲ ଷ୍କାର୍ଲେଟ୍ ସେହି କଣା ବାଟେ ଯାଇଥିଲେ । ରବିନ୍‌ର ଦଳରେ ଫ୍ରାୟାର ଟକ୍ ସମସ୍ତଙ୍କ ଆଗରେ ଥିଲେ । ତାଙ୍କର ବିଶାଳ ଦେହ ଏହି କଣାବାଟେ ଗଳିବା ଅସମ୍ଭବ । ମୁଣ୍ଡ ଗଳାଇ ସାରିବା ପରେ ସେ ଦେଖିଲେ ଯେ ତାଙ୍କ ପକ୍ଷରେ ଗଳିପାରିବା ସମ୍ଭବ ନୁହେଁ । ତହୁଁ ପଛଲୋକେ ତାଙ୍କୁ ଟାଣି ଆଣିଲେ ଓ ବାଡ଼କୁ ଟିକଏ ଟିକଏ ଭାଙ୍ଗି କଣାକୁ ବଡ଼ କରିଦେଲେ । ତହୁଁ ଏକାବେଳକେ ଦୁଇଜଣ ଲେଖାଏଁ ଯାଇପାରିଲେ ।

ରବନ୍ କହିଲା "ମୁଁ ଏକୁଟିଆ ଗଡ଼ଦୁଆର ମୁହଁକୁ ଯିବି । ତୁମ୍ଭେମାନେ ଧୀରେ ଧୀରେ ମୋ ପଛରେ ଅନ୍ଧାରରେ ଚାଲିବ ।"

ରବନ୍ ଆଗେ ଆଗେ ଚାଲିଲା । ତା ସାଥୀମାନେ ପଛରେ ରହିଲେ । କବାଟ ପାଖରେ ପହଞ୍ଚି ସେ ଠକ୍ ଠକ୍ କଲା । ଜଣେ ଜଗୁଆଳ ତାହା ଆଡ଼କୁ ଚାହିଁ ପଚାରିଲା, "ତୁମର କି କାମ ଅଛି ? କାହିଁକି ଆସିଛ ?"

ରବନ୍ ପଚାରିଲା, "ସାର୍ ଗାଏ ଘରେ ଅଛନ୍ତି ?"

ଜଗୁଆଳ ଉତ୍ତରକଲା, "ହଁ ।"

ରବନ୍ କହିଲା, "ତାହାହେଲେ ତୁ ଯାଇ ତାଙ୍କୁ କହ ଯେ ରବନ୍ ହୁଡ଼୍ ତାଙ୍କ ସାଥିରେ ଦେଖାକରିବାକୁ ଆସିଛନ୍ତି ।"

ଏହି ସମୟରେ ଘରଭିତରୁ ଟିକିଏ ଆଲୁଅ ରବନ୍‌ର ମୁହଁ ଉପରେ ପଡ଼ିଗଲା । ସେହି ଚେହେରାକୁ ଦେଖି ଜଗୁଆଳ ଖୁବ ଓ ବିଚଳିତ ହୋଇ ପଡ଼ିଲା । ସେ ଭାବିଲା, ସତରେ କଣ ଏ ସ୍ୱୟଂ ରବନ୍ ହୁଡ଼୍ ।

ସେ ଭୟରେ ଖନେଇ ଖନେଇ କହିଲା "ମୁଁ—ମୁଁ ଯା···ଉ ···ଛି । ସାର···ଗାଏଙ୍କୁ କ—କହିବି । ଆ-ଆ-ଆପଣ କ-କଣ ଏକୁଟିଆ ଆ···ଆ···ଆସିଛନ୍ତି ?"

ରବନ୍ କହିଲା, 'ମୋ ସାଥିରେ କେହି ଥିଲାପରି ତୁ କଣ ଦେଖୁଛୁ ?" ଜଗୁଆଳ ଆଉ ଥରେ ଅନ୍ଧାରରେ ଚାରି ଆଡ଼କୁ ଚାହିଁଲା କିନ୍ତୁ କାହାରିକୁ ଦେଖିପାରିଲା ନାହିଁ ; କିମ୍ବା କୌଣସି ଶବ୍ଦ ଶୁଣି ପାରିଲା ନାହିଁ ।

ରବନ୍‌କୁ ଅପେକ୍ଷା କରିବାକୁ କହି ସେ ଗଡ଼ ଭିତରକୁ ଚାଲି ଯାଇ ସାର୍ ଗାଏଙ୍କୁ ରବନ୍ ହୁଡ଼୍ ଆସିଥିବା କଥା କହିଲା । ସାର ଗାଏ ହସି ହସି କହିଲେ "କିଏ, ରବନ୍ ହୁଡ଼୍ ? ତାଙ୍କୁ ଭିତରକୁ ଆସିବାକୁ କହ ।"

ଜଗୁଆଳ ସାବଧାନ କଲାପରି କଲା, "କିନ୍ତୁ ସେତ କୌଣସି ଭଲ ଉଦ୍ଦେଶ୍ୟରେ ଆସି ନ ଥିବ ।"

ସାର୍ ଗାଏ ଉଚ୍ଚସ୍ୱରରେ କହିଲେ, "ରବିନ୍ ହୁଡ୍ ଯେବେ ବଳେ ବଳେ ଆସି ଫାସରେ ଆପଣା ବେକ ଗଳାଉଛି ତେବେ ମନ୍ଦ କଣ ? ଯାଆ, ଡାକି ଆଣ ।"

ତଥାପି ଜଗୁଆଳ କହିଲା, "ମୋର ସନ୍ଦେହ ହେଉଛି, ସେ କିଛି ଗୋଟାଏ ମତଲବ ରଖି ଆସିଛି ।"

ସାର୍ ଗାଏ ରାଗରେ ମେଜ ଉପରେ ହାତ ବାଡେଇ କହିଲେ, "ଚୁପ୍ ରହ । ମୁଁ ଯାହା କହୁଛି, କର ।"

ଜଗୁଆଳ ବଡ଼ବଡ଼ ଆଉ କିଛି ନକହି ଦ୍ୱାର ପାଖକୁ ଯାଇ ଦ୍ୱାର ଫିଟାଇଲା । ଏଥିମଧ୍ୟରେ ରବିନ୍‌ର ଲୋକମାନେ ଦ୍ୱାରର ଖୁବ୍ ପାଖକୁ ଚାଲିଆସିଥିଲେ । ଜଗୁଆଳ କବାଟ ଫିଟାଇ କହିଲା, "ଆପଣ ଆସନ୍ତୁ । ସାର ଗାଏ ଆପଣଙ୍କ ସହିତ ସାକ୍ଷାତକଲେ ଖୁସିହେବେ ।"

ରବିନ୍ ଲୋକଟାକୁ ଭିତରକୁ ଠେଲି ଦେଇ କହିଲା "ତେବେ ଆଗରୁ ଉଠ୍ ।"

ରବିନ୍ ଓ ତାହାର ସାଥୀମାନେ ଭିତରକୁ ପଶିଗଲେ । ସେତେବେଳକୁ ସାର୍ ଗାଏ ଓ ତାଙ୍କର କେତେଜଣ ବିଶିଷ୍ଟ ଅତିଥି ମେଜ ଚାରିପାଖେ ଭୋଜନରେ ବସିଥିଲେ । ରବିନ୍ ନିଜ ଲୋକଙ୍କ ସହିତ ମେଜ ପାଖକୁ ଚାଲିଗଲା । ସାର୍ ଗାଏଙ୍କର କେତେଜଣ ସୈନ୍ୟ କୋଠାରିରପାଖେ କିଛି ଦୂରରେ ଛିଡ଼ା ହୋଇଥିଲେ । ଏତେଗୁଡ଼ାଏ ଲୋକଙ୍କୁ ଦେଖି ସାର୍ ଗାଏ କହିଉଠିଲେ, "ଏମାନଙ୍କୁ ଏଠାକୁ ଆସିବାକୁ କିଏ କହିଲା ?"

ସାର୍ ଗାଏ ଭାବଥିଲେ ଯେ ରବନ୍‌ହୁଡ଼ ଏକୁଟିଆ ଦରବାରକୁ ଆସିବ; ତାପରେ ସେ ତାକୁ ଅପମାନ ଦେଇ ବନ୍ଦୀ କରିବେ ; କିନ୍ତୁ ରବନର ଧନୁର୍ଦ୍ଧର ସାଥୀମାନଙ୍କୁ ଦେଖି ସେ ଭୟରେ ଖାଇବା ଟେବୁଲ ପାଖରୁ ଉଠି ପଡ଼ିଲେ ।

ସେ ଚିତ୍କାର କଲେ "ସଇତାନ, ଏସବୁ ବଦମାସ୍‌ଙ୍କୁ ମାରି ପକାଅ । ଯେପରି କେହି ଜଣେ ପ୍ରାଣ ନେଇ ଫେରି ନ ଯାଏ ।"

ରବିନ ମଧ୍ୟ ଚିତ୍କାର କଲା "ଯେ ଯାହା କାମରେ ଲାଗିପଡ଼ ।" ଏତିକି କହି ସେ ସାର ଗାଏଙ୍କ ଉପରେ ଲମ୍ଫ ଦେଇ ଆକ୍ରମଣ କଲା ।

ଭୀଷଣ ଯୁଦ୍ଧ ଚାଲିଲା । ସାର ଗାଏଙ୍କ ଲୋକମାନଙ୍କର ଗୋଟିଏ ସୁବିଧା ଥିଲା । ସେମାନଙ୍କ ପାଖରେ ଖଣ୍ଡା ଓ ଫାର୍ସା ଥିଲା । ପାଖାପାଖି ଯୁଦ୍ଧରେ ଏଗୁଡ଼ିକୁ ଚଳାଇବା ସୁବିଧା; ଧନୁଶର ଚଳାଇବା ସୁବିଧା ନୁହେଁ । କିନ୍ତୁ ରବନ୍ ଓ ତାହାର ଲୋକେ ଖୁବ୍ ବଳବାନ ଓ ଦୃଢ଼ପ୍ରତିଜ୍ଞ ଥିଲେ । ଉଭୟ ପକ୍ଷ କେତେକ ସମୟ ଧରି ଯୁଦ୍ଧ କଲେ । ସାର ଗାଏଙ୍କ ସୈନ୍ୟମାନେ ମଧ୍ୟ କମ୍ ବଳବାନ୍ ନ ଥିଲେ । ପୁଣି ସେମାନେ ଯୁଦ୍ଧ କରିବାରେ ଅଭ୍ୟସ୍ତ । ରବନ୍‌ର ସାଥୀମାନେ ହଠାତ୍ ଉପସ୍ଥିତ ହୋଇ ସେମାନଙ୍କୁ ଚକିତ କରି ଦେଇଥିଲେ । ରବନ୍‌ର ଉତ୍ସାହ ବାଣୀରେ ତାହାର ସାଥୀମାନେ ଭୀଷଣ ଆକ୍ରମଣ କଲେ । ସାର୍ ଗାଏଙ୍କର କୌଣସି ସୈନ୍ୟ ମରିଗଲା ମାତ୍ରେ ତାହାର ଖଣ୍ଡାକୁ ରବନ୍‌ର ଲୋକେ ନେଇ ଆସୁଥିଲେ । ରବନ୍‌ର ଦୁର୍ଦ୍ଦାନ୍ତ ସଙ୍ଗୀମାନଙ୍କ ଆଗରେ ସୈନ୍ୟମାନଙ୍କର ସାହସ ଓ ବଳ ତୁଟିଗଲା ।

ରବନ୍ ଦେଖିଲା ଯେ ସେହି ଘରେ ଅନେକ ଗୁଡ଼ାଏ ଦୀପ ଜଳୁଛନ୍ତି । ଉଭୟ ପକ୍ଷର ଯୁଦ୍ଧ ବେଳେ ଖଣ୍ଡାର ଆଘାତରେ ସେଗୁଡ଼ିକ ଗୋଟି ଗୋଟି ହୋଇ ତଳକୁ ଖସି ପଡ଼ିଲା । କ୍ରମେ କ୍ରମେ

ଘରଟି ପୂର୍ବ ଅନ୍ଧାର ହୋଇଗଲା । ସେତେବେଳକୁ ରବର୍ଟ ସା'ର ଗାଏଙ୍କୁ ମାଡ଼ି ବସିଥିଲା । ଅନ୍ଧାରର ସୁବିଧା ନେଇ ସେ ଗୋଟାଏ କୌଶଳ କଲେ ! କୌଣସି ମତେ ସେ ରବର୍ଟ ହାତରୁ ଖସିଯାଇ କବାଟ ପାଖକୁ ପଳାଇଲେ । ଘରଟି ଅନ୍ଧାର ହୋଇଯିବାରୁ କିଏ ଶତ୍ରୁ, କିଏ ମିତ୍ର ଜଣା ପଡ଼ୁନଥାଏ ।

ଏଥି ମଧ୍ୟରେ ଗୋଟିଏ ଦୀପ ଘରର ବାଉଁଶରେ ପଡ଼ିଗଲା । ବାଉଁଶ କାଠରେ ତିଆରି । କିଛି ସମୟ ପରେ ସେଥିରେ ନିଆଁ ଲାଗି ବାଉଁଶଟି ଜଳି ଉଠିଲା । କ୍ରମେ ଏହି ବାଉଁଶର ନିଆଁ ଘରଯାକ ବ୍ୟାପିଗଲା ! ଏହା ଦେଖି ରବର୍ଟ ନିଜର ଲୋକଙ୍କୁ କହିଲା, "ସାର-ଗାଏ ଖସି ପଳାଇଛନ୍ତି । ଏ ଘରେ ନିଆଁ ଲାଗିଲାଣି । ଏଥିରେ ରହି ଆଉ ଯୁଦ୍ଧ କରିବା ଅସମ୍ଭବ । ସମସ୍ତେ ଜଙ୍ଗଲକୁ ଫେରି-ଯାଅ ।"

ଜଳନ୍ତା ଘର ଭିତରୁ ରବର୍ଟର ଲୋକେ ବାହାରି ଯାଇ ଜଳି ପାଖରେ ପହଞ୍ଚିଲେ । ସେମାନେ ପରସ୍ପରକୁ ସାହାଯ୍ୟ କରି ଜଳି ପାର ହୋଇ ଗଲେ । କିନ୍ତୁ ସେତେବେଳେକୁ ସେହି ଦଳର ଦୁଇଜଣ ଆଉ ନ ଥିଲେ । ସେ ଦୁହେଁ ଯୁଦ୍ଧରେ ପ୍ରାଣ ହରାଇଥିଲେ ।

ଜଳିର ଆର ପାଶରେ ପହଞ୍ଚି ରବର୍ଟ ଦେଖିଲା ଯେ ସାର ଗାଏଙ୍କର ଘର ଭୀଷଣ ଭାବରେ ଜଳୁଛି । ନିଆଁର ଶିଖା ଆକାଶରେ ଡେଇଁଲା ପରି ଦେଖା ଯାଉଛି । ରବର୍ଟ ଫ୍ରାୟାର ଟକ୍‌କୁ କହିଲା, "ହାୟ ! ଏ କି ଭୀଷଣ ଦୃଶ୍ୟ ! ଗାମ୍‌ୱେଲ ଗଡ଼ର ଯେଉଁ ଘରଟି ଏତେବର୍ଷ ହେଲା ମୋର ଅତି ପ୍ରିୟ ହୋଇଥିଲା, ସେ କାଲିକି ନ ଥିବ । କେବଳ ଗଦାଏ ପାଉଁଶରେ ପରିଣତ ହୋଇଥିବ ।"

ରବର୍ଟ କେବଳ ଏହି ଘର କଥା ଚିନ୍ତା କରୁ ନ ଥିଲା । ତାହାର ଉଦ୍ଦେଶ୍ୟ ଥିଲା ଯେ ମେରିଆନକୁ ସାର ଗାଏଙ୍କ ହାତରୁ ଉଦ୍ଧାର

କରିବ । କିନ୍ତୁ କାହିଁ ? ଏତେବେଳଯାଏ ସେ ମେରିଆନର ଦେଖା ସୁଦ୍ଧା ପାଇଲେ ନାହିଁ । ତାପରେ ସେ ଭାବିଲେ "ଏକଥା ନିଶ୍ଚିତ ଯେ ମେରିଆନ୍ ଆଜିରାତିରେ ସେ ଘରେ ନ ଥିଲା । ଯଦି ଗଡ଼ର ଅନ୍ୟ କୌଣସି ଅଂଶରେ ଥାଆନ୍ତା ତେବେ ଏ ଗୋଳମାଳର କାରଣ ଜାଣିବା ପାଇଁ ଅନ୍ତତଃ ସେଠାକୁ ଆସିଥାନ୍ତା । ତାହାହେଲେ କଣ ସାର ଗାଏ ମେରିଆନକୁ ମାରି ପକାଇଥିବା କଥା ସତ ? ଆଉରି ମଧ୍ୟ ଉଇଲର ଅବସ୍ଥା କଣ ହେଲା ? ତା ସମ୍ବନ୍ଧରେ ମଧ୍ୟ କିଛି ଜଣା ପଡ଼ିଲା ନାହିଁ ।"

ଏହିସବୁ ଦୁଶ୍ଚିନ୍ତା କରି କରି ସେ ଜଙ୍ଗଲର ଆଡ୍ଡା ପାଖକୁ ଗଲେ । ମେରିଆନ୍ କେଉଁଠାରେ ଅଛି ? ଏ ପ୍ରଶ୍ନର କୌଣସି ସମାଧାନ ସେ କରି ପାରିଲେ ନାହିଁ ।

---

୧୭

# ରବିନ୍ ଧରାପଡ଼ି ଖସିଗଲା

ଏହି ଘଟଣାର ପରଦିନ ସାର ଗାଏ ଘୋଡ଼ାରେ ବସି ଗାମଓ୍ୱେଲର ହଲ୍‌କୁ ଆସିଲେ । କିନ୍ତୁ ସେଠାରେ ଯେଉଁ ଦୃଶ୍ୟ ଦେଖିଲେ ସେଥିରେ ତାଙ୍କର ଦୁଃଖର ସୀମା ରହିଲା ନାହିଁ । ସେହି ପ୍ରକାଣ୍ଡ ହଲ୍‌ର କୌଣସି ଚିହ୍ନ ବର୍ତ୍ତି ଆଉ ନଥିଲା । କେବଳ ଗୁଡ଼ାଏ ପାଉଁଶ ଗଦା ଭିତରୁ ଠାଏ ଠାଏ ଧୂଆଁ ବାହାରୁଥିଲା । ସେ ଏହା ଦେଖିବା ମାତ୍ରେ ଗତରାତିର ଘଟଣା ଗୁଡ଼ିକ ଚିନ୍ତାକଲେ । ସେ କ୍ରୋଧରେ କହିଲେ, "ଏଥିରେ ତେବେ ରବିନରହିଁ ଜୟ ହୋଇଅଛି । ଏହାର ଏକମାତ୍ର ପ୍ରତିଶୋଧ ହେଉଛି—ରବିନ୍‌ର ମୃତ୍ୟୁ ।"

ସେ ଭାବିଲେ ଯେ ଶେରିଫଙ୍କ ସହିତ ପରାମର୍ଶକରି ଗୋଟାଏ ଉପାୟ କରିବାକୁ ହେବ । ଏହା ଭାବିର ସେ ଶେରିଫଙ୍କ ନିକଟରେ ଉପସ୍ଥିତ ହେଲେ ।

ପ୍ରଥମେ ଶେରିଫଙ୍କ କଥାରୁ ସାର୍ ଗାଏ କିଛି ଉତ୍ସାହ ପାଇଲେ ନାହିଁ । ଶେରିଫ କହିଲେ, "ମୁଁ ଏତେଦିନ ହେଲା ଚେଷ୍ଟାକରୁଛି କିପରି ତାକୁ ଧରିଆଣି ଫାଶି କାଠରେ ଝୁଲାଇବ । କିନ୍ତୁ ତାକୁ କୌଣସିମତେ ଧରି ପାରିଲି ନାହିଁ । ବେଳେବେଳେ ମୁଁ ଭାବେ ଯେ ସେ କିଛି ମନ୍ତ୍ର ଜାଣେ ।"

ସାର ଗାଏ କହିଲେ, "ସେ ଯଦି ମନ୍ତ୍ର ଜାଣେ, ତେବେ ଆମକୁ ମଧ୍ୟ ମନ୍ତ୍ର ଜଣାଅଛି । ଅସଲ କଥା ହେଉଛି ବଳ ପ୍ରୟୋଗ କରି ତାକୁ ଧରି ହେବ ନାହିଁ । କୌଶଳ କରିବାକୁ ହେବ । ସେ ଏପରି କୌଶଳୀ ଓ ସାହସୀ ଯେ ତାହାକୁ ପ୍ରକାଶ୍ୟ ଆକ୍ରମଣ କରି ଧରିବା ଆଦୌ ସମ୍ଭବ ନୁହେଁ ।"

ରବିନ୍‌କୁ ଧରି ଫାଶୀ ଦେବାକୁ ଶେରିଫଙ୍କର ଖୁବ୍ ଇଚ୍ଛା । ତେଣୁ ସେ ସାର ଗାଏଙ୍କୁ କ କୌଶଳ କରିବାକୁ ହେବ ବୋଲି ପଚାରିଲେ । ସାର ଗାଏ କହିଲେ, "ମୁଁ ଭାବୁଛି ଯେ ଜଣେ ପଥିକର ଛଦ୍ମବେଶରେ ମୁଁ ଏକୁଟିଆ ବଣଭିତରକୁ ଯିବି ଏବଂ ସେଠାରେ ଯେକୌଣସିମତେ ତାର ଆଡ୍‌ଡାଟା ଦେଖିନେବି । ତା'ପରେ ତା'ର କୌଶଳ ତାଠାରେ ପ୍ରୟୋଗ କରିବ ।"

ଶେରିଫ ସାବଧାନ କରି କହିଲେ, "କିନ୍ତୁ ରବିନ୍‌ର ଗୋଟିଏ କୌଶଳ ନାହିଁ । ଶହ ଶହ ଅଛି ।" ସାର୍ ଗାଏ ଗର୍ବ-ଦେଖାଇ କହିଲେ, "ଆପଣ ଜାଣନ୍ତି ଯେ ମୋଭଳି ଆଉ କେହି ଏ ରାଜ୍ୟରେ ତରବାରି ଚଳାଇ ଜାଣନ୍ତି ନାହିଁ । ମୁଁ ଖଣ୍ଡାରେ ଯୁଦ୍ଧକରି ରବିନ୍‌ହୁଡ୍‌କୁ ପରାସ୍ତକରି ନେଇ ଆସିବି । ତା'ପରେ ଆପଣ ସ୍ୱଚ୍ଛନ୍ଦରେ ତାକୁ ଫାସି ଦେଇ ପାରିବେ ।"

ଶେରିଫ୍ ପଚାରିଲେ, "ଆପଣ ଯେ ରବିନ୍‌କୁ ଧରିଛନ୍ତି, ସେକଥା ମୁଁ କିପରି ଜାଣିବି । ସେ କଥା ଜାଣିଲେ ସିନା ତା ପାଇଁ ଫାଶୀଖୁଣ୍ଟ ତିଆରି କରି ରଖିବି ।" ସାର ଗାଏ ଟିକିଏ ଚିନ୍ତାକରି କହିଲେ, "ମୁଁ ଯେତେବେଳେ ରବିନ୍‌କୁ ଧରିବି, ସେତେବେଳେ ଲମ୍ବା ସ୍ୱରରେ ମୋର ଶିଙ୍ଘା ବଜାଇବି ।"

ସାର୍ ଗାଏଙ୍କର ବିଶ୍ୱାସ ଯେ ସେ ନିଶ୍ଚୟ ରବିନ୍‌କୁ ଧରିବେ କିନ୍ତୁ ଶେରିଫ୍‌ଙ୍କର ଏପରି ବିଶ୍ୱାସ ନ ଥିଲା । ତଥାପି ସେ ଏହି ପ୍ରସ୍ତାବରେ ରାଜି ହୋଇ ଶିଙ୍ଘାର ସ୍ୱରକୁ ଅପେକ୍ଷା କରି ରହିଲେ ।

ସାର୍ ଗାଏ ସଙ୍ଗେ ସଙ୍ଗେ ବାହାରି ପଡ଼ିଲେ । ସେ ଗୋଟିଏ ବାଟୋଇର ପୋଷାକ ମଗାଇ ପିନ୍ଧିଲେ । କାନ୍ଧରେ ଗୋଟିଏ ଶିଙ୍ଘା ଓହଳାଇ ସେ ଏକୁଟିଆ ବଣ ଆଡ଼କୁ ଚାଲିଲେ ।

ଠିକ୍ ସେଇ ଦିନ ସକାଳେ ରବିନ ବଣରେ ଥିବା ଆଡ୍ଡାରେ ଉଇଲ୍ ସ୍କାର୍ଲେଟ ଓ ଲିଟିଲ୍ ଜନକୁ କହିଲା, "ତୁମେ ଦୁହେଁ ଯାଇ ନଟିଙ୍ଗହାମରୁ କିଛି ନୂଆ ସବୁଜରଙ୍ଗର କପଡ଼ା କିଣି ଆଣ । କାଲି ରାତିରେ ଯୁଦ୍ଧ କରୁ କରୁ ଆମଭିତରୁ ଅନେକଙ୍କର ପୋଷାକ ଚିରି ଯାଇଛି । ତା ଆଗରୁ ମଧ୍ୟ କେତେ ଜଣଙ୍କର ପୋଷାକ ଚିରି ଯାଇଥିଲା । କନା ଆଣିଲେ ନୂଆ ପୋଷାକ ତିଆରି କରିବା ।"

ଗରିବ ବାଟୋଇଙ୍କ ପୋଷାକ ପିନ୍ଧି ଦୁହେଁ ଗଲେ । ନଟିଙ୍ଗହାମ ପାଖେଇ ଯିବାରୁ କାହାରି କାଳେ ସନ୍ଦେହ ହେବ ବୋଲି ଦୁହେଁ ଏକ ସଙ୍ଗରେ ନ ଯାଇ ଅଲଗା ଅଲଗା ହୋଇ ଗଲେ । ଉଇଲ ସ୍କାର୍ଲେଟ ସହରକୁ ଯାଇ ଜଣେ ବେପାରୀଠାରୁ ବହୁତ ଗୁଡ଼ିଏ ସବୁଜ ରଙ୍ଗର କନା କିଣିଲା । ସେ ହଠାତ୍ ଭାବିଲା ଯେ ତାର ଏପରି କରିବା ଭୁଲ ହୋଇଛି । ବେପାରିର ହାବଭଙ୍ଗୀରୁ ସେ ଜାଣିଲା ଯେ ତା ଭଳି ଜଣେ ଗରିବ ବାଟୋଇ ଏତେ ଗୁଡ଼ିଏ ସବୁଜରଙ୍ଗର କନା କିଣିବାର ଦେଖି ତା ମନରେ ସନ୍ଦେହ ହୋଇଛି । ତେଣୁ ସେ ଅତି ଶୀଘ୍ର ଦୋକାନ ଛାଡ଼ି ଚାଲିଗଲା ।

କିଛିଦୂର ଯାଇ ପଛକୁ ଅନାଇବାରୁ ସେ ଦେଖି ପାରିଲା ଯେ ବେପାରି ସେହିବାଟେ ଦୌଡ଼ୁଛି ।

ଉଇଲ୍ ସ୍କାର୍ଲେଟ ଭାବିଲା "ଅଳ୍ପ ସମୟ ଭିତରେ ଶେରିଫ ମୋହିଷୟରେ ସବୁ ଖବର ପାଇଯିବ । ଭିନ୍ନ ଭିନ୍ନ ଦୋକାନରୁ ଅଳ୍ପ ଅଳ୍ପ କନା କିଣିଥିଲେ ଭଲ ହୋଇଥାନ୍ତା । ଯାହା ହେବାର ତ ହୋଇଗଲାଣି । ଏବେ ଚିନ୍ତା କରି ଲାଭ କଅଣ ?"

ବେପାରୀ ଦୌଡ଼ି ଦୌଡ଼ି ଶେରିଫଙ୍କ କୋଠାରେ ପହଞ୍ଚି ତାଙ୍କୁ ସବୁ ଘଟନା କହିଲା ।

ଶେରିଫ ତାଙ୍କର କେତେଜଣ ସିପାହୀଙ୍କୁ ତାଙ୍କ ସବୁକଥା ବୁଝାଇ କହିଲେ, "ଯାଅ, ସେ ଲୋକଟାକୁ ଧରି ଆଣ ।"

ସହର ଭିତରକୁ ପଶିଲା କ୍ଷଣି ଲିଟିଲ ଜନ୍ ଦେଖିପାରିଲା ଯେ ଶେରିଫଙ୍କ ଲୋକେ ଉଇଲ୍ ସ୍କାର୍ଲେଟ ପଛରେ ଧାଇଁଛନ୍ତି । ଅନ୍ୟ ଗୋଟାଏ ବୁଲଣିଆ ବାଟରେ ଆସୁ ଆସୁ ଜନ୍ ପଛରେ ପଡ଼ି ଯାଇଥିଲା । ଲିଟିଲ ଜନ୍ ଦେଖିଲା ଯେ ବୋଝେ ଲୁଗା ଧରି ଉଇଲ୍ ଯେପରି ଧୀରେ ଧୀରେ ଚାଲୁଛି, ଶେରିଫର ଲୋକେ ତାକୁ ନିଶ୍ଚୟ ଧରି ପକାଇବେ ।

ଉଇଲ୍ ସ୍କାର୍ଲେଟ ଅବଶ୍ୟ ବେଗରେ ଚାଲୁଥିଲା । ତଥାପି ଲୁଗା ବୋଝ ତାକୁ ଅସୁବିଧା କରୁଥାଏ । ସେ ଦଉଡ଼ିବାକୁ ଲାଗିଲା । ଏଥି ମଧ୍ୟରେ ଶେରିଫର ଯେଉଁ ଛଅ ଜଣ ସିପାହୀ ତା ପଛେ ପଛେ ଧାଇଁଥିଲେ, ସେଥି ଭିତରୁ ଜଣେ ତାକୁ ବାଡ଼ାଇବାକୁ ବସିଲା । ହଠାତ୍ ଉଇଲ୍ ସ୍କାର୍ଲେଟ ରାସ୍ତା ଉପରେ ଛିଡ଼ା ହୋଇଗଲା ।

ଲିଟିଲ ଜନ୍ ଦେଖିଲା ଯେ ଏଥର ଉଇଲ୍ ଧରା ପଡ଼ିଯିବ । ସେ କିପରି ଉଇଲକୁ ସାହାଯ୍ୟ କରିବ, ଚିନ୍ତାକରିବାକୁ ଲାଗିଲା ।

କିନ୍ତୁ ଉଇଲ ଠିଆ ହୋଇ ଯାଇଥିଲେହେଁ ସବୁ ଆଶା ଛାଡ଼ି ଦେଇ ନ ଥିଲା । ସେ ହଠାତ୍ ବୋଝଟା ଫିଙ୍ଗି ଦେଇ ବୁଲିପଡ଼ିଲା ଓ ଧନୁରେ ଶର ବସାଇ ତା ପାଖ ସିପାହୀକୁ ଲକ୍ଷକରି ମାରିଲା । ସେ ଲୋକଟା ଏକାଥରକେ ମରି ପଡ଼ିଲା । ଆଉ ଏକ ଶରରେ ଆଉ ଜଣେ ସିପାହୀ ମରି ଶୋଇଲା । ତହୁଁ ଉଇଲ୍ ପୁଣି ବୋଝଟି ଧରି ଦଉଡ଼ିବାକୁ ଲାଗିଲା । ଦୁଇ ଜଣ ସିପାହୀ ମରି ପଡ଼ିବାର ଦେଖି ଅନ୍ୟମାନେ ଆଉ ଉଇଲ୍ ପଛରେ ଗୋଡ଼ାଇବାକୁ ସାହସ କଲେ ନାହିଁ ।

ଲିଟିଲ୍ ଜନ ଦୂରରୁ ଏସବୁ ଦେଖୁଥାଏ । ସିପାହୀମାନେ ହଟି ଗଲେଣି; ଆଉ ଉଇଲ୍ ସ୍କାର୍ଲେଟ ନିରାପଦରେ ପଳାଉଥିବାର ଦେଖି

ଜନ୍ ଏତେ ଆନନ୍ଦିତ ହେଲା ଯେ ସେ କହି ପକାଇଲା, "ମାବାପ, କେଡ଼େ ସୁନ୍ଦର ଲକ୍ଷ !"

ଦୁର୍ଭାଗ୍ୟର କଥା, ସେତିକି ବେଳକୁ ଶେରିଫ ଠିକ ସେଇ ବାଟେ ଆସୁଥିଲେ । ସେ ଜନ୍‌ର କଥା ଶୁଣି ବୁଝି ପାରିଲେ ଯେ ଏ ଜଣେ ରବିନ୍ ହୁଡ଼ର ସାଥୀ । ତା ହୋଇ ନ ଥିଲେ ଏପରି କହନ୍ତା କାହିଁକି ? ଶେରିଫ ତାଙ୍କ ପାଖରେ ଥିବା ଲୋକଙ୍କୁ କହିଲେ, ଏ ନିଶ୍ଚୟ ରବିନ୍ ହୁଡ଼ର ଲୋକ । ଏହାକୁ ଧର । "

ଏତେ ଲୋକଙ୍କ ସଙ୍ଗେ ଲଢ଼େଇ କରିବା ବୃଥା ବୋଲି ବରୁଣ ଜନ୍ ଦୌଡ଼ିବାକୁ ଲାଗିଲା । ଏଣେ ଶେରିଫଙ୍କ ଲୋକେ ଚାରିଆଡ଼ୁ ଘେରି ଆସିଲେ । ବରୁଣ ମୁହଁ ମାଡ଼ି ତଳେ ପଡ଼ିଗଲା । ସିପାହି-ମାନେ ତାକୁ ଧରିବା ବେଳକୁ ସେ ଖୁବ୍ ଲଢ଼ିଲା ; କିନ୍ତୁ ଏତେ ଲୋକଙ୍କ ସାଥିରେ ଜଣେ ଲୋକ କେତେବେଳ ଯାଏ ଲଢ଼ିବ ? ସେମାନେ ଲିଟିଲ୍ ଜନର ଦୁଇ ହାତକୁ ତା ପଛପଟେ ବାନ୍ଧିପକାଇ ଗୋଟାଏ ପାହାଡ଼ ଉପରକୁ ନେଇଗଲେ । ଶେରିଫ ସେଠାକୁ ଆସି ତାକୁ ଥଟ୍ଟା କରି କହିଲେ, "ସାବାସ୍, କେଡ଼େ ସୁନ୍ଦର ଲକ୍ଷ ! ମୁଁ ତୋ କଥା ବୁଝୁଛି ।" ତାପରେ ନିଜ ସିପାହିଙ୍କୁ କହିଲେ, "ଏ ଲୁଚାକୁ ନେଇ ଏହିକ୍ଷଣି ଫାଶୀଦିଅ । ଲୋକେ ଜାଣନ୍ତୁ, ରବିନ-ହୁଡ଼ର ଦଳର ଲୋକଙ୍କୁ ମୁଁ କଅଣ କରିପାରେ ।"

ଲିଟିଲ୍ ଜନ ବୁଝିପାରିଲା ଯେ, ତାର ଶେଷ ମୁହୂର୍ତ୍ତ ଆସି ଉପସ୍ଥିତ । ଉଦ୍ଧାର ପାଇବାର କିଛି ଉପାୟ ନାହିଁ । ତେବେ ମରିବାକୁ ମୁଁ ଭୟ କରିବି କାହିଁକି ? ଶେରିଫଙ୍କ କଥା ଶୁଣି ସେ ଖାଲି ହସିଲା । ସିପାହିମାନେ ତାକୁ ଫାଶୀ ଦେବା ପାଇଁ ତରତର ତିଆରି କରୁଥିବାର ଦେଖି ମଧ୍ୟ ସେ ବିଚଳିତ ହେଲାନାହିଁ ।

ଏହି ସମୟରେ ଦୂରରୁ ଶିଙ୍ଘାର ସ୍ୱର ଶୁଣାଗଲା । ସ୍ୱରଟି ଖୁବ୍ ଲମ୍ବ । ଥରେ ମାତ୍ର ଶିଙ୍ଘାଟି ବାଜଲା । ଏଥି ପୂର୍ବରୁ ସାର୍ ଗାଏ ଓ ଶେରିଫଙ୍କ ଭିତରେ ସ୍ଥିର ହୋଇଥିଲା ଯେ ସାର୍ ଗାଏ ରବିନହୁଡ଼କୁ ଧରିଲେ ଏହିପରି ଥରେ ଶିଙ୍ଘା ବଜାଇବେ । ତାହା ହେଲେ ସମସ୍ତେ ରବିନ୍ ହୁଡ଼କୁ ଧରି ସାରିଛନ୍ତି ।

ଶେରିଫ ସିପାହୀମାନଙ୍କୁ କହିଲେ, "ଆଜ ଆମର ଗୋଟାଏ ଶୁଭ ଦିନ । ଏଇ ଯେଉଁ ଶିଙ୍ଘାଧ୍ୱନି ଶୁଣିଲ, ତାହା ହେଉଛି ସାର୍ ଗାଏଙ୍କର । ଏହାର ଅର୍ଥ ହେଉଛି, ରବିନ୍ ହୁଡ଼କୁ ସେ ଧରିଛନ୍ତି ।"

ତାପରେ ଜନ୍‌କୁ ଲକ୍ଷ୍ୟକରି ଶେରିଫ କହିଲେ, "ଆରେ କୁହୁ ଟିକଏ ରହିଥା । ଏବେ ତୁ ଆଉ ତୋର ସରଦାର ଦୁହେଁ ଯାକ ଏକାଠି ଫାଶୀ ପାଇବ ।"

ରବିନ ଧରି ପଡ଼ିଥିବା କଥାଟା ଶୁଣି ଲିଟିଲ୍ ଜନ୍‌ର ମୁଣ୍ଡରେ ବଜ୍ର ପଡ଼ିଲାପରି ଲାଗିଲା । କିନ୍ତୁ ସେ ମନର କଥା ମନରେ ରଖି ଶେରିଫଙ୍କୁ ଉପହାସ କଲାପରି କହିଲା, 'ତମ ପାଖରେ ହଜାରେ ସିପାହୀ ଥିଲେ ବି ତୁମେ ରବିନ୍ ହୁଡ଼କୁ ଫାଶୀ ଦେଇ ପାରିବ ନାହିଁ ।

ମୁହଁରେ ସିନା ଏପରି କହିଲା, କିନ୍ତୁ ଜନ୍‌ର ମନ ଦୁଃଖରେ ଦବି ଯାଇଥିଲା ।

ଏହି ସମୟରେ ସେ ଦେଖିବାକୁ ପାଇଲା ଯେ ସାର ଗାଏ ରବିନ୍‌କୁ ଘୋଷାଡ଼ି ଘୋଷାଡ଼ି ଆଣୁଛନ୍ତି । ରବିନ୍‌ର ପୋଷାକ ଚିରି ଯାଇଥାଏ । ଲିଟିଲ୍ ଜନ୍ ଏହି ଦୃଶ୍ୟ ଦେଖି ଅତ୍ୟନ୍ତ ଦୁଃଖିତ ହେଲା ।

ଲିଟିଲ୍ ଜନ୍ ବନ୍ଧା ହୋଇ ଠିଆ ହୋଇଥାଏ । ତା ପାଖରେ ଶେରିଫ୍ ଓ ଦୁଇଜଣ ଘାତକ ।

ସାର ଗାଏ ରବିନ୍‌କୁ ଟାଣିଟାଣି ଆଣୁଥିବାର ଦେଖି ଶେରିଫ୍ ଆନନ୍ଦରେ କହି ଉଠିଲେ, "ବେଶ୍ ଭଲ କାମ କରିଛ ।"

ହଠାତ୍ ସାର ଗାଏ ନିଜର ଉପରୁ ପୋଷାକ ଫିଙ୍ଗି ଦେଲେ । ଶେରଫ୍ ଦେଖିଲେ ଯେ ସେ ଯାହାକୁ ସାର ଗାଏ ବୋଲି ମନେ କରିଥିଲେ, ପ୍ରକୃତରେ ସେ ହେଉଛି ରବିନ୍ ଏବଂ ତାହା ପାଖରେ ଥିବା ଅନ୍ୟଲୋକଟି ଉଇଲ୍ ସ୍କାରଲେଟ୍ । ଶେରଫଙ୍କର ଆଖି ଖୋସି ହୋଇଗଲା । ସେ ହଠାତ୍ ଚାଲିଆସି ଜନ୍ ହାତର ବନ୍ଧନକୁ କାଟି ଦେଲା ଏବଂ ତିନିହେଁ ଯାକ ଲୋକମାନଙ୍କ ଭିତରେ ପଳାଇବାକୁ ଲାଗିଲେ । ଶେରଫ ଓ ତାଙ୍କର ଲୋକେ ଏହି ଘଟଣାରେ ଏପରି ବିଚଳିତ ହୋଇ ଯାଇ ଥିଲେ ଯେ, ସେମାନଙ୍କୁ କିଛି ବୁଦ୍ଧି ଦିଶିଲା ନାହିଁ ଓ ସେମାନେ ରବିନ୍ ହୁଡ୍ କିମ୍ବା ତାର ଦୁଇ ସାଥୀଙ୍କର ପଥ-ରୋଧ କରି ପାରିଲେ ନାହିଁ । ରବିନ୍ ଓ ତାହାର ସାଥୀ ଦୁଇଜଣ ନିରାପଦରେ ଶେର୍‌ଉଡ୍ ଜଙ୍ଗଲକୁ ଚାଲିଗଲେ ।

ଏପରି ଗୋଟିଏ ଅଦ୍ଭୁତ କୌଶଳ କିପରି ରବିନ୍ କରି-ପାରିଲା, ତାହା କହିବାକୁ ଜନ୍ ଅନୁରୋଧ କଲା । ସେ କହିଲା, "ସରଦାରଜୀ ! ତୁମେ ଠିକ୍ ସେତିକିବେଳେ ପହଞ୍ଚି ନ ଥିଲେ, ଆଜି ଟିକକ ପରେ ମୋ ପ୍ରାଣ ଯାଇଥାନ୍ତା । ପୁଣି ତୁମେ ସାର ଗାଏ ବେଶରେ ଓ ଉଇଲ୍ ସ୍କାରଲେଟ୍ କିପରି ତୁମ ବେଶରେ ସେଠାରେ ପହଞ୍ଚିଲ ? ଏ ସବୁ ଆଶ୍ଚର୍ଯ୍ୟ ଲାଗୁଛି ।"

ରବିନ୍ କହିଲା—ମୁଁ ନଟିଂହାମ୍‌କୁ ପଡିଥିବା ରାସ୍ତାରେ ଯାଉ ଯାଉ ଗୋଟିଏ ବୁଢ଼ା ବାଟୋଇଟିକୁ ଦେଖିଲି । ଏହି ବାଟୋଇ ସଙ୍ଗେ କଥାବାର୍ତ୍ତାରୁ ଜଣାଗଲାଯେ ସେ ମୋ ବିଷୟରେ ଖବର ନେବାପାଇଁ ବ୍ୟାକୁଳ । ସେ ପଚାରିଲା, "ରବିନ୍ ହୁଡ୍ ଏହି ଅଞ୍ଚଳରେ କେଉଁଠାରେ ରହେ ପରା ?" ମୁଁ ଉତ୍ତର କଲି, "ମୁଁ ଶୁଣିଛି ଯେ ଏହି ପାଖ ଜଙ୍ଗଲରେ ସେ ରହେ । ଆହୁରି ମଧ୍ୟ ଅନେକ ଲୋକ କହନ୍ତି ଯେ ସେ ଏହି ପାଖରେ ରହେ ।" ବାଟୋଇ ପୋଷାକ-

ତନ୍ତୁ ଟଗୋଟିଏ ତରବାରୀ ଦେଖାଇ କହିଲେ "ଏଇ ଖଣ୍ଡିଏ ଦେଖୁଛ ? ମୁଁ ଏଥିରେ ସେ ସଇତାନ୍ ରବିନ୍‌ହୁଡ୍‌କୁ ମାରିବି । ମତେ ସାମାନ୍ୟ ବାଟୋଇ ମନେ କରନା । ମୁଁ ହେଉଛି ସାର ଗାଏ ।

ରତନ୍ ଟିକିଏ ହସି ପ୍ରଶଂସା କରି କହିଲେ, "ବାଃ, ଆପଣଙ୍କର ସାହସ ମନ୍ଦ ନୁହେଁ । କିନ୍ତୁ ଯଦି ଆପଣଙ୍କର ରବିନ୍ ହୁଡ୍ ଓ ତାହାର ସାଥୀମାନଙ୍କ ସହିତ ଏକାବେଳକେ ଦେଖାହୁଏ, ତାହାହେଲେ କଣ ହେବ ?" ଛଦ୍ମବେଶୀ ସାର୍ ଗାଏ ଉତ୍ତର କଲେ, "ମୁଁ ସେ କଥା ଭାବୁଛି । ମୋ ବେକରୁ ଯେଉଁ ଶିଙ୍ଘାଟି ଝୁଲୁଛି ତାକୁ ଦୁଇ ତିନି ଦଶ ବାରଥର ବଜାଇଲେ ନଟିଂହାମର ଶେରିଫ୍ ସଙ୍ଗେ ସଙ୍ଗେ ସିପାହୀ ସହିତ ସାହାଯ୍ୟ କରିବାକୁ ମୋ ପାଖେ ପହଞ୍ଚିଯିବେ ।

ରତନ୍—"ଯଦି ରବିନ୍ ହୁଡ୍‌କୁ ଧରିବ ତେବେ କଣ କରିବ ?" ବାଟୋଇ—ତେବେ ମୋ ଶିଙ୍ଘାରେ ଲମ୍ବ ସ୍ୱରରେ ଥରେ ବଜାଇବି । ତହୁଁ ଶେରିଫ୍ ଜାଣିବେଯେ ମୁଁ ରବିନ୍‌କୁ ଧରିଛି । ସେ ତାକୁ ଫାଶୀ ଦେବା ପାଇଁ ଫାଶୀଖୁଣ୍ଟ ତିଆରି କରିବେ ।

ରବିନ୍ ଆପଣଙ୍କ ଉପାୟଟି ବେଶ୍ । ମାତ୍ର ଏ ସବୁକଥା ଶୁଣିବା ଆଗରୁ ଆପଣ ମୋର ପରିଚୟ ପାଇବା ଉଚିତ ଥିଲା ।

ସାର ଗାଏ ଏବେ ନିଜର ଭୁଲଟା ବୁଝିପାରି ଖୁଲିଯିବାକୁ ବସିଥିଲେ । ମାତ୍ର ରବିନ୍‌ହୁଡ୍ ସଙ୍ଗେ ସଙ୍ଗେ କହିଲେ, "ଆପଣ ଯେଉଁ ରବିନ୍ ହୁଡ୍‌କୁ ମାରିବାକୁ ବାହାର କରୁଛନ୍ତି, ମୁଁ ହେଉଛି ସେହି ରବିନ୍‌ହୁଡ୍ ।"

ଏହାପରେ ଦୁହିଁଙ୍କ ଭିତରେ ଭୀଷଣ ଯୁଦ୍ଧ ହେଲା ଓ ଶେଷରେ ରବିନ୍‌ର ତରବାରିରେ ସାର୍ ଗାଏଙ୍କର ପ୍ରାଣ ଗଲା । ରତନ୍ ମୁହଁରୁ ଏହି ସବୁ ଘଟଣା ଶୁଣି ଲିଟିଲ ଜନ ବିସ୍ମିତ ହେଲା । ତଥାପି ତାହାର ସମସ୍ତ ସନ୍ଦେହ ଯାଇ ନଥାଏ ।

ଏହି ସମୟରେ ଉଇଲ୍ ସ୍କାର୍ଲେଟ୍ କହିଲ, "ମୁଁ ଶେରିଫର ସିପାହୀଙ୍କଠାରୁ ଖସିଯାଇ କିଛି ଦୂର ଯିବାପରେ ପଛକୁ ଚାହିଁଲି । ସିପାହୀମାନେ ମୋତେ ଗୋଡ଼ାଉଛନ୍ତି କି ନା ଏହା ଜାଣିବା ମୋର ଉଦ୍ଦେଶ୍ୟ ଥିଲା । କିନ୍ତୁ ମୁଁ ଦେଖେଯେ, ତୁମକୁ ଫାଶୀ ଦେବାପାଇଁ ଆୟୋଜନ ଚାଲିଛି । ମୁଁ ସେଠାରେ କିଛି ସାହାଯ୍ୟ କରିବାର ଦେଖି ନପାରି ସର୍ଦ୍ଦାରଙ୍କ ପାଖକୁ ଦୌଡ଼ିଲି । ସେଠାରେ ଦେଖେତ 'ସାର୍ ଗାଏ ମରି ପଡ଼ିଛନ୍ତି ଆଉ ସର୍ଦ୍ଦାର ତାଙ୍କ ଗୁଣ୍ଡ ଉପରେ ଛିଡ଼ା ହୋଇଛନ୍ତି । ମୋଠାରୁ ଲିଟିଲ ଜନର ଅବସ୍ଥା ଶୁଣି ସେ ହଠାତ୍ ସାର ଗାଏଙ୍କ ଦେହର ପୋଷାକକୁ ନିଜ ଦେହରେ ଗଳାଇ ଦେଇ ଆସିଲେ । ତା ପରେ ତୁମକୁ କିପରି ଉଦ୍ଧାର କଲେ ତାହା ଜାଣିଛ ।"

ତିନି ସାଥୀଯାକ ଜଙ୍ଗଲର ଆଡ୍ଡାକୁ ଚାଲିଗଲେ । ଶେରିଫ ରବିନ୍‌କୁ ଧରିବାର ଯେଉଁ ଉପାୟ କରିଥିଲେ, ତାହା ଏହିପରି ଏଥର ମଧ୍ୟ ବିଫଳ ହେଲା ।

---

## ୧୭

# ରବିନ୍ ହୁଡ୍‌ର ବିବାହ

ଗାମ୍‌ୱେଲ୍‌ଙ୍କ କୋଠା ପୋଡ଼ିଯିବା ପରଦିନ ଏସବୁ ଘଟିଗଲା । ରବିନର ଚିନ୍ତା ଦୂର ହୋଇ ପାରିଲା ନାହିଁ । ମେରିଆନର ଭାଗ୍ୟରେ କଅଣ ଘଟିଲା, ସେ ଜାଣି ପାରି ନ ଥାଏ । ସେ ମେରିଆନକୁ ଖୁବ ଭଲ ପାଉଥିଲା ଓ ତାକୁ ବିବାହ କରିବାକୁ ଇଚ୍ଛା କରୁଥିଲା । କିନ୍ତୁ ତା ମନରେ ଗୋଟିଏ ସନ୍ଦେହ ଥାଏ । ମେରିଆନ୍ ଧନୀ ଘରର ଝିଅ । ବିଳାସରେ ବଢ଼ି ଆସିଛି । ଆଜି ସେ ବଣରେ ରହିବା ଲୋକ; ତା ଜୀବନରେ କେତେବେଳେ କଅଣ ହେବ ସ୍ଥିର ନାହିଁ । ଏପରି ସ୍ଥଳେ ସେ ମେରିଆନକୁ ବିବାହ କଥା କିପରି କହିବ ?

ବାସ୍ତବରେ ମେରିଆନ୍‌ର ପ୍ରକୃତି କିପରି ଓ ସେ କି ପ୍ରକାର ଜୀବନ ନିର୍ବାହ କରିବାକୁ ଇଚ୍ଛା କରେ ତାହା ରବିନ୍‌କୁ ଜଣା ନ ଥିଲା । ସେ ମଧ୍ୟ ରବିନ୍‌କୁ ଅନ୍ତରର ସହିତ ଭଲ ପାଉଥିଲା । ରବିନ୍‌ଠାରୁ ବିବାହ ପ୍ରସ୍ତାବ ଆସିଥିଲେ ସେ ଆନନ୍ଦରେ ସ୍ୱୀକୃତି ଦେଇଥାନ୍ତା । ଯେ ଭାବିଥିଲା ଯେ ରବିନ୍ ବିବାହବନ୍ଧନରେ ଛନ୍ଦି ହେବାକୁ ଚାହେଁ ନାହିଁ ।

ଯେଉଁ ଦିନ ସାର୍ ଗାଏ ଷ୍ଟୋପ୍ୱାର ଗାମ୍‌ୱେଲ୍‌ଙ୍କ ଗଡ଼ ଉପରେ ଆକ୍ରମଣ କଲେ, ସେଦିନ ମେରିଆନ୍ ଓ ରବିନ୍‌ର ପିଲାଦିନର ବନ୍ଧୁ ଉଇଲ୍ ଦୁହେଁଯାକ ଜଣେ ବନ୍ଧୁଘରକୁ ବୁଲି ଯାଇଥିଲେ। ସେମାନେ ବନ୍ଧୁଘରୁ ଫେରିଆସି ଦେଖିଲେ ଯେ ଗଡ଼ ପୋଡ଼ିଯାଇଛି । ଓ ଗାମ୍‌ୱେଲ୍‌ର ଜମିଦାର ନିହତ ହୋଇଅଛନ୍ତି । ଏବେ ସେମାନଙ୍କର ଆଶ୍ରୟ କାହିଁ ? ଦୁହେଁଯାକ ବସି ବିଚାର କଲେ ।

ଊଇଲ୍—ମୋର ବାପାଙ୍କୁ ଅନ୍ୟାୟରେ ହତ୍ୟା କରାଯାଇଛି । ମୁଁ ନିଶ୍ଚୟ ଏହାର ପ୍ରତିଶୋଧ ନେବି ।

ମେରିଆନ— କିନ୍ତୁ କିପରି ? ତୁମେ ଏପରି ପ୍ରବଳ ଶତ୍ରୁ ବିରୁଦ୍ଧରେ କଅଣ କରି ପାରିବ ?

ଊଇଲ୍ ମୁଁ ଶେରଉଡ଼ ଜଙ୍ଗଲକୁ ଯାଇ ରବିନ୍ ସହିତ ଯୋଗ ଦେବି ।

ମେରିଆନ୍—ହଁ । ତାହାହିଁ ହେଉଛି ଶ୍ରେଷ୍ଠ ଉପାୟ । ମୋତେ ତେବେ ସାଥିରେ ସେହି ଶେର୍ଉଡ଼କୁ ନେଇଯାଅ ।

ଊଇଲ – କଅଣ ? ତୁମେ ଶେରଉଡ଼କୁ ଯିବ ? ଏହା କଅଣ ସମ୍ଭବ ?

ମେରିଆନ୍ – କାହିଁକି ସମ୍ଭବ ନୁହେଁ ? ମୁଁ ମଧ୍ୟ ରବିନ୍‌ର ଦଳରେ ରହିବି ।

ଊଇଲ୍—ଏପରି ଅସମ୍ଭବ କଥା କହୁଛ କାହିଁକି ? ଗୋଟାଏ ଝିଅ ପକ୍ଷରେ ଶେର୍ଉଡ଼ରେ ରହିବା କି କଷ୍ଟ, ଭାବିଛକି ? ସେଠାରେ ଅତି କଠୋର ଜୀବନ କଟାଇବାକୁ ହୁଏ । କେତେବେଳେ କି ବିପଦ ପଡ଼ିବ ତାର ସ୍ଥିରତା ଅଛି ?

ମେରିଆନ୍—ଜଙ୍ଗଲ ଜୀବନ କଠୋର ହୋଇପାରେ । ଏଠାରେ ତ ମୋର ରହିବାକୁ ଘରନାହିଁ; ସାହାଯ୍ୟ କରିବାକୁ କେହି ନାହିଁ । ଜଙ୍ଗଲକୁ ଗଲେ କ୍ଷତି କଅଣ ?

ଊଇଲ୍ ଏହାର ପ୍ରତିବାଦ କରି ପାରିଲା ନାହିଁ । ବାସ୍ତବରେ ମେରିଆନ୍‌ର ସଂସାରରେ କିଏ ଅଛି ? ବାପ ମାଆ ଯାଇଥିଲେ । ହୋପୁର ଗାମ୍‌ଓ୍ୱେଲ ତାକୁ ଆଶ୍ରୟ ଦେଇଥିଲେ । ସେ ମଧ୍ୟ ଆଉ ନାହାନ୍ତି । ତାଙ୍କ ଘରଟି ମଧ୍ୟ ଧ୍ୱଂସ ପାଇ ଯାଇଛି । ସେ କେଉଁଠାରେ ଆଶ୍ରୟ ନେବ ? ଆହୁରି ମଧ୍ୟ ଊଇଲ ଜାଣିଥିଲା ଯେ ମେରିଆନ୍ ରବିନ୍‌କୁ ଭଲପାଏ । ତେବେ ମେରିଆନ

ଜଙ୍ଗଲକୁ ଯାଇ ରବନ ପାଖରେ ରହିଲେ ମନ୍ଦ ହେବନି ନାହିଁ ।
କେବଳ ଏବିଷୟରେ ରବନ୍‌ର ମତ କଅଣ ।
ଉଇଲ ତୁମେ ଜଙ୍ଗଲରେ ଯାଇ ପହଞ୍ଚିଲେ ରବନ୍ କଅଣ
କହିବ ?
ମେରିଆନ୍— ଆମକୁ ଦେଖିଲେ ସେ ହଠାତ୍ ଚକିତ
ହୋଇଯିବ ।

ଆଉ କଥାବାର୍ତ୍ତାର ଦରକାର ନ ଥିଲା । ଯାହା କିଛି ଜିନିଷ ଥିଲା, ତାକୁ ବନ୍ଧାବନ୍ଧ କରି ସେଇ ଦିନ ଦୁହେଁଯାକ ବାହାରି ପଡ଼ିଲେ । ବଣଭିତର ବାଟେ ଗଲା ଗଲା ସେମାନେ ରବନ୍‌ର ଆଡ୍ଡା ପାଖେ ପହଞ୍ଚିବା ବେଳକୁ ସନ୍ଧ୍ୟା ହୋଇ ଯାଇଥିଲା ।

ରବନ୍‌ର ଜଣେ ସାଥି କିଏ ଦୁଇଜଣ ଆସୁଥିବାର ଦେଖି ରବନକୁ ଡାକି କହିଲା, "ସରଦାର, ଦୁଇଜଣ କିଏ ଅଶ୍ୱାରୋହୀ ଆସୁଛନ୍ତି ?"

ରବନ୍ ଟିକିଏ ମେଲା ଜାଗାକୁ ଆସି ଅଶ୍ୱାରୋହୀ ଦୁହିଁଙ୍କୁ ଦେଖିଲାକ୍ଷଣି ଆନନ୍ଦରେ କହି ଉଠିଲା, "ଏ କିଏ ? ମେରିଆନ୍ !"

ସେ ହସ ହସ ମୁହଁରେ ଆଗେଇ ଯାଇ ମେରିଆନ୍‌ସଙ୍ଗେ ଦେଖାକଲା । ଯେଉଁ ମେରିଆନର ସମ୍ବାଦ ପାଇବାକୁ ସେ ଏତେ ଚେଷ୍ଟାକରି ବିଫଳ ହୋଇଥିଲା, ଏବେ ତାକୁ ପାଖରେ ପାଇବାରୁ ତାର ଆନନ୍ଦର ସୀମା ରହିଲା ନାହିଁ । ଉଇଲ ଓ ମେରିଆନ୍ ଏତେଦିନ କେଉଁଠାରେ ଥିଲେ ଓ କଅଣ କରୁଥିଲେ ଜାଣିବାକୁ ସେ ଅଧୀର ହେଉଥିଲା । ଦୁହେଁଯାକ ସେମାନଙ୍କର କାହାଣୀ ବର୍ଣ୍ଣନା କରିସାରି କହିଲେ, "ଆମେ ଏବେ ତୁମ ଦଳରେ ଯୋଗ ଦେବାକୁ ସ୍ଥିରକରି ଏଠାକୁ ଆସିଛୁ ।"

ମୁଷ୍ଟିଭିକ ପାଇଁ ରବିନ୍ ଖିନ୍ନତ ହେଲାପରି ଜଣାଗଲା । କିନ୍ତୁ ସେ ବହୁଦିନରୁ ମନ କରିଥିଲା ଯେ ମେରିଆନ୍ କିପରି ତା ସାଥିରେ ଯୋଗଦିଅନ୍ତା । ଏବେ ତାହା କାର୍ଯ୍ୟରେ ପରିଣତ ହେବାକୁ ଯାଉଥିବାର ଦେଖି ସେ ଆନନ୍ଦିତ ହେଲା । ମାତ୍ର ମନକଥା ମନ ଭିତରେ ରଖି କହିଲା, "ଆଚ୍ଛା, ସେ କଥା ଦେଖାଯିବ । ଆଗ ଆମ ଆଡ୍ଡାରେ କିଛି ଦିନ ରହ । ଆମେ କିପରି ଚଳୁଛୁ, କଅଣ ଖାଉଛୁ, କିପରି ବିପଦଭିତରେ ଆମର ଦିନ କଟୁଛି, ମେ ସବୁ କିଛି ଦିନ ଦେଖ । ତାପରେ ଯାହା କରିବାର କରିବ ।"

ଏହିପରି କହି ରବିନ୍ ସେ ଦୁହିଁଙ୍କୁ ଆଡ୍ଡାକୁ ନେଇଯାଇ ଆପଣାର ସାଥିମାନଙ୍କ ସଙ୍ଗେ ପରିଚୟ କରାଇଦେଲା । ସେମାନେ ରବିନ୍‌ର ଓ ତା ସାଥିମାନଙ୍କର ରହିବା, ରନ୍ଧାବଢ଼ା, ଖାଇବା ପିଇବା ଏସବୁ ବିଷୟରେ ଅନେକ କଥା ଜାଣିପାରିଲେ ।

ମେରିଆନ୍ କହିଲା, "ଏପରି ଜୀବନ କଟାଇବାରେ ରବିନ୍‌ର ବେଶ୍ ଆନନ୍ଦ । ମୁଁ ଏପରି ଚଳିଲେ ଆନନ୍ଦିତ ନ ହେବି କାହିଁକି ?"

ଅଳ୍ପ କେତେଦିନ ଭିତରେ ମେରିଆନ୍ ଏପ୍ରକାର ବିପଦପୂର୍ଣ୍ଣ ଜୀବନରେ ଅଭ୍ୟସ୍ତ ହୋଇଗଲା । ଦଳର ସମସ୍ତେ ତାକୁ ବିଶେଷ ଆଦର ଦେଖାଇଲେ । ଅନେକ ସମୟରେ ରବିନ୍ ଓ ମେରିଆନ୍ ଏକତ୍ର ବସି ଗଳ୍ପକରି ଆନନ୍ଦ ପାଉଥିଲେ ।

ଆଗରୁ ରବିନ୍‌ର ଧାରଣା ଥିଲା ଯେ ଧନୀଘରର ଝିଅ କୌଣସି ଧନୀ ଓ ସମ୍ଭ୍ରାନ୍ତ ପରିବାରର ପୁଅକୁ ବିବାହ ନ କଲେ ସୁଖୀ ହୋଇ ପାରିବନାହିଁ । କିନ୍ତୁ ଧନ ଯେ ଚିରସ୍ଥାୟୀ ନୁହେଁ, ଏହା ସେ ଷ୍ଟୋଫୁର ଗାମ୍‌ଓ୍ୱେଲ୍‌ଙ୍କ ଜୀବନରୁ ଶିକ୍ଷା ପାଇଛି

ଆଜି ମେ ଷ୍ଟୋୟାରଗାମ୍ ଓ ସ୍ୱେଲ ନାହାନ୍ତି କି ତାଙ୍କ ନୌଠାବାଡ଼ି ନାହିଁ । ଯେଉଁ ଜଇଲ ଧନସମ୍ପତ୍ତିରେ ଲୋଟୁଥିଲା, ଗଣ୍ଡା ଗଣ୍ଡା ଗ୍ଳକର ଯାହାକୁ ଖଟୁଥିଲେ ସେହି ଆଜି ବଣରେ ଗଛତଳେ ପଥର ଉପରେ ଶୋଉଛି, ବଣର ହରିଣ ମାଂସ ଖାଇ ପେଟ ପୂରାଉଛି । ମେରିଆନ୍ ମଧ୍ୟ ସେହିପରି କଠୋର ଜୀବନ ଯାପନ କରୁଛି । ତେବେ ସେ ମେରିଆନ୍‌କୁ ବିବାହ କଲେ ତାହାର ଅସୁବିଧା ହେବ କାହିଁକି ?

ରବିନ୍ ଓ ମେରିଆନ୍‌ଙ୍କର ବିବାହ ସ୍ଥିର ହେଲା । ବିବାହ ଉତ୍ସବ ପାଇଁ ଜଙ୍ଗଲର ଗୋଟିଏ ସ୍ଥାନ ସ୍ଥିର କରାଗଲା । ବସନ୍ତର ଗୋଟିଏ ସନ୍ଧ୍ୟା ସମୟ । ଗୋଟିଏ ଉଚ୍ଚ ବରଗଛର ଗହଳ ମସୃଣ ଛାୟାତଳେ ଦୁହେଁ ଛିଡ଼ାହେଲେ । କେତେ ଡାଳ ପତ୍ର ସେ ଦୁହିଁଙ୍କ ମସ୍ତକକୁ ଛୁଇଁ ଯାଉଥାନ୍ତି । ଡାଳ ମାନଙ୍କରେ ପକ୍ଷୀମାନେ ମଧୁର ସ୍ୱରରେ ରାବୁଥାନ୍ତି ।

ଫ୍ରାୟାର ଟକ୍ ଦୁହିଁଙ୍କ ଆଗରେ ବିବାହ ମନ୍ତ୍ର ପାଠ କରିବାକୁ ଉପସ୍ଥିତ । ରବିନ୍‌ର ସାଥୀମାନେ ଘେରିପାଖେ ବେଢ଼ି ରହିଥାନ୍ତି । ବରକନ୍ୟାଙ୍କ ପାଦତଳେ ସବୁଜ ଘାସପତ୍ର ଗଦା ଗଦା ପଡ଼ିଥାଏ ।

ସେହି ବିବାହଦିନ ପିନ୍ଧିବାପାଇଁ ମେରିଆନ୍ ନିଜହାତରେ ଗୋଟିଏ ପୋଷାକ ତିଆରି କରିଥିଲା । ତାକୁ ପିନ୍ଧିବାରୁ ସେ ଆହୁରି ସୁନ୍ଦରୀ ଦିଶୁଥିଲା । ଦଳର ସାଥୀମାନେ ଏହି ଉତ୍ସବ ଉପଲକ୍ଷରେ ନିଜ ନିଜ ପୋଷାକକୁ ସଫା ଚକ୍‌ଚକ୍ କରି ଦେଇଥିଲେ । ସମସ୍ତଙ୍କ ଆଗରେ ଥିଲେ ଲିଟିଲ୍ ଜନ୍ ଓ ଉଇଲ୍ ସ୍କାର୍ଲେଟ ।

ଟକ୍ ମନ୍ତ୍ରପାଠ କଲେ । ବିବାହ ଶେଷ ହେଲା । ଦଳର ସମସ୍ତେ ଉଚ୍ଚସ୍ୱରରେ ପ୍ରାର୍ଥନା କଲେ । ଏହାର ଧ୍ୱନି ବନଭୂମିରେ ପ୍ରତିଧ୍ୱନିତ ହେଲା । ରବିନ୍ ଓ ମେରିଆନ୍ ପତିପତ୍ନୀ ଭାବରେ

ଆଡ଼୍ଡ଼ାକୁ ଫେରିଗଲେ । ରବିନ୍ ମନରେ ବହୁଦିନରୁ ଥିବା ଏକ ଆଶା ପୂର୍ଣ୍ଣ ହେଲା ।

ରବିନ୍ ମେରିଅନ୍ ସହିତ ବିବାହବେଦୀରୁ ଫେରି ଯାଉଥିବା ବେଳେ ହଠାତ୍ କାହିଁ ଗୋଟାଏ ଶର ଆସି ସେମାନଙ୍କ ପଛରେ ଥିବା ଗୋଟାଏ ଗଛରେ ବାଜିଲା । ବନଦେଶର ଶାନ୍ତିମୟ ପରିସ୍ଥିତିରେ ଏ ଶର କିଏ ମାରିଲା ? ରବିନ୍ କ୍ରୁଦ୍ଧ ହୋଇ କହିଲା, "ଯେ ଶର ମାରିଛି, ତାର ପ୍ରାଣ ନେବାକୁ ହେବ ।"

ସେ ସଙ୍ଗେ ସଙ୍ଗେ ମେରିଆନ୍‌କୁ କେତେକ ସାଥୀଙ୍କ ପାଖରେ ଛାଡ଼ି ତାକୁ ନିରାପଦରେ ରଖିବାକୁ କହି ବଣ ଭିତରେ ପଶିଗଲା । କିଛି ଦୂର ଯାଇ ସେ ଶେରିଫଙ୍କର କେତେଜଣ ସିପାହୀଙ୍କୁ ଦେଖି ପାରିଲା ।

ଯେତେବେଳେ ରବିନର ସାଥୀମାନେ ପ୍ରାର୍ଥନା ସଙ୍ଗୀତ ଗାଉଥିଲେ, ସେତେବେଳେ ସେମାନଙ୍କର ସ୍ୱର ଶୁଣି ପାରି ସିପାହୀ-ମାନେ ଲୁଚି ଲୁଚି ବଣ ଭିତରକୁ ଆସିଥିଲେ । ସିପାହୀମାନେ ଚକ-ଚକଆ ପୋଷାକ ପିନ୍ଧିଥିବାରୁ ରବିନ୍ ବନମଧ୍ୟରେ ସହଜରେ ସେମାନଙ୍କୁ ଦେଖି ପାରୁଥାଏ ।

ଅବସ୍ଥା ବାସ୍ତବରେ ସାଙ୍ଘାତିକ । ରବିନ୍‌ର ଲୋକମାନଙ୍କ ଭିତରୁ କେବଳ ବାରଜଣଙ୍କ ହାତରେ ସେତେବେଳକୁ ଧନୁଶର ଥାଏ । ତେବେ ଗୋଟାଏ ସୁବିଧା ଥିଲା ଯେ ସବୁଜରଙ୍ଗର ପୋଷାକ ପିନ୍ଧିଥିବାରୁ ଶତ୍ରୁ ସହଜେ ସେମାନଙ୍କୁ ଦେଖିବାର ଉପାୟ ନ ଥିଲା ।

ଏବେ ଯୁଦ୍ଧ ଉପସ୍ଥିତ ।

ଶେରିଫ ତାଙ୍କ ସିପାହୀମାନଙ୍କୁ ଗୋଟିଏ ଲମ୍ବ ଧାଡ଼ିରେ ଠିଆ ହେବାକୁ ଆଦେଶ ଦେଇଥାନ୍ତି । ଏଣେ ରବିନ୍ ତାର ବାରଜଣ

ଅପ୍ରଧାରୀ ସାଥୀଙ୍କୁ ଖୁବ୍ ଛଡ଼ା ଛଡ଼ା କରି ଠିଆ କରାଇ ଦେଲେ । ପ୍ରତି ଜଣକ ପଛରେ ଆଉ ତିନିଜଣ ଲେଖାଏଁ ଛିଡ଼ା ହୋଇଗଲେ । ରବିନ୍‌ର ଆଦେଶ—ପ୍ରତି ଶରରେ ଯେପରି ଗୋଟିଏ ସିପାହୀର ପ୍ରାଣ ନେବାକୁ ହେବ । ଆଗ ଜଣକ ଶର ମାରି ମାରି କ୍ଳାନ୍ତ ହୋଇ ପଡ଼ିଲେ ପଛ ଜଣକ ତାହାର ସ୍ଥାନ ଅଧିକାର କରିବ ।

ରବିନ୍‌ର ସାଥୀମାନେ ଧନୁର୍ବିଦ୍ୟାରେ କେହି କାହାକୁ ଊଣା ନୁହନ୍ତି । ସେମାନଙ୍କ ଶରରେ ଜଣକ ପରେ ଜଣେ ସିପାହୀ ଟଳି ପଡ଼ୁଥାନ୍ତି । ଶର ପରେ ଶର ବର୍ଷୁଥାଏ । ଏହା ଦେଖି ଶେରିଫ ଭାବିଲେ ଯେ ରବିନ୍‌ର ଲୋକ ସଂଖ୍ୟା ଅଧିକ । ତେଣୁ ଫେରି ପଳାଇବା ଉଚିତ । ଏହି ସମୟରେ ଗୋଟିଏ ଶର ଆସି ଶେରିଫଙ୍କ ଟୋପିରେ ବାଜିଲା । ସେ ଆଉ ମୁହୂର୍ତ୍ତେ ଅପେକ୍ଷା ନ କରି ଘୋଡ଼ାରେ ଚଢ଼ି ପଳାଇଲେ ।

ଶେରିଫ ପଳାଉ ଥିବାର ଦେଖି ତାଙ୍କର ଅବଶିଷ୍ଟ ସୈନ୍ୟ ପଳାଇ ଯାଇ ପ୍ରାଣରକ୍ଷା କରିବାକୁ ବୁଦ୍ଧିର କାର୍ଯ୍ୟ ବୋଲି ମନେ କଲେ ।

ଏହା ଦେଖି ଲିଟିଲ୍ ଜନ୍ ପଚାରିଲା, "ସରଦାର, ଶେରିଫର ସିପାହୀଗୁଡ଼ାକ ପଳାଉଅଛନ୍ତି । ଆମେ କଅଣ ସେମାନଙ୍କ ପଛରେ ଗୋଡ଼ାଇ ମାରିବା ?"

ରବିନ୍ ହସି ହସି କହିଲା, "ନା, ନା, ଦରକାର ନାହିଁ । ଆଜି ପରା ମୋର ବିବାହ ଦିନ । ଭୁଲି ଯାଇଛ କି ?

—— —— ——

୧୮

# ଲିଟିଲ୍ ଜନ୍‌ର କୌଶଳ

ଶେରିଫ ତାଙ୍କ ନଟିଙ୍ଗହାମ କୋଠାର ଝରକା ପାଖେ ଠିଆ ହୋଇ ଶେରଉଡ଼ ଜଙ୍ଗଲକୁ ଅନାଇଥିଲେ । ସେ ସବୁବେଳେ ରବିନ୍ ହୁଡ଼ କଥା ଭାବୁଥିଲେ । ଜଙ୍ଗଲ ଉପରେ ନଜର ପଡ଼ିଲାକ୍ଷଣି ଭାବିଲେ, "ଏତେ ଦିନ ବିତିଗଲା । ରବିନ୍ ହୁଡ଼କୁ ଉଚିତ ଦଣ୍ଡ ନ ଦେଲେ ଚଳିବ ନାହିଁ ।"

ଏଣେ ରବିନ୍ ଶେରଉଡ଼ ବଣ ଭିତରେ ବସି ଭାବୁଥାଏ, "ଏ ଅତ୍ୟାଚାରୀ ଶେରିଫକୁ ଶିକ୍ଷା ଦେବା ଦରକାର ।"

ରବିନ୍ ଶେରିଫ କଥା ଚିନ୍ତା କରି ଟହଲୁ ଥାଏ । ସକାଳର ଖାଇବା ତିଆରି ହେଉଥାଏ । ତାର ସୁବାସ ପବନରେ ବହି ଆସି ତା ନାକରେ ବାଜିଲା । ସେ କିଛି ସମୟ ପାଇଁ ଶେରିଫର କଥା ଭୁଲିଗଲା ।

ଦୁହେଁ ଯାକ ପରସ୍ପରର ଶତ୍ରୁ । ଶେରିଫ ଭାବୁଥାଏ, କିପରି ରବିନ୍‌କୁ ଧରି ଆଣି ଫାଶିକାଠରେ ଝୁଲାଇ ଦେବ । ତେଣେ ରବିନ୍‌ର ଚିନ୍ତା ଥାଏ, କିପରି ଶେରିଫର ସବୁ କୌଶଳ ପଣ୍ଡ କରି ଦେବ ।

ଏହି ସମୟରେ ଲିଟିଲ୍ ଜନ୍ ଆସି ରବିନ୍‌କୁ କହିଲା, "ସରଦାର, ମୁଁ ଗୋଟାଏ କଥା ଭାବୁଛି । ଶେରିଫ ବେଶ୍ ଗୋଟାଏ ଶିକ୍ଷା ପାଇପାରିବ । ମୁଁ କଅଣ କରିବି, ତା ଏଇକ୍ଷଣି କହିବି ନାହିଁ । କାମଟା ହୋଇଗଲେ ବଳେ ବଳେ ସବୁ ଜାଣି ପାରିବ ।"

"ରବିନ ଲିଟିଲ୍ ଜନ୍‌କୁ ଭଲ କରି ଜାଣେ । ତାଙ୍କ ବିଶ୍ୱାସୀ ଓ ଗୁଲାଖ ଲୋକ କମ୍ ଥିବେ । ସେ ରବିନ୍‌ଙ୍କୁ ପ୍ରାୟ ସବୁ କଥାରେ ପରାମର୍ଶ କରି ଚଳେ । ଏବେ ସେ କଅଣ କରିବାକୁ ଯାଉଛି, କହୁନାହିଁ । କିନ୍ତୁ ସେ ଯାହା କରିବ ନିଶ୍ଚୟ ରବିନ୍‌ର ମଙ୍ଗଳ ପାଇଁ । ଏ ବିଶ୍ୱାସ ରବିନର ଥିଲା । ତେଣୁ ସେ ଆଉ କିଛି ନ ପଚାରି ଲିଟିଲ୍ ଜନ୍‌କୁ କହିଲା, "ହେଉ ।"

ତା ଆରଦିନ ସକାଳୁ ଦେଖାଗଲା ଯେ ଲିଟିଲ୍ ଜନ୍ ଆଡ୍ଡାରେ ନାହିଁ । ଅନ୍ୟମାନେ ଉଠିବା ଆଗରୁ କୁଆଡେ ଚାଲି ଯାଇଛି । ଏଥିରେ ରବିନ ଟିକିଏ ବିସ୍ମିତ ହେଲା ।

ଏଣେ ଜନ୍ ଜଙ୍ଗଲରୁ ବାହାରି ସିଧା ସିଧା ସାର୍ ରିଚାର୍ଡ଼ଙ୍କ କୋଠାରେ ଉପସ୍ଥିତ । ଜଣେ ଚାକର ତାକୁ ନେଇ ସାର୍ ରିଚାର୍ଡ଼ଙ୍କ ପାଖେ ପହଞ୍ଚାଇ ଦେଲା । ସେ କହିଲା, "ହଜୁର୍, ମୁଁ ଜଙ୍ଗଲରେ ରହି ଦିନ କାଟୁଥିଲି । କିନ୍ତୁ ସେ କଠୋର ଜୀବନ ଆଉ ଭଲ ଲାଗୁନାହିଁ । ଆପଣଙ୍କ ସୈନ୍ୟଦଳରେ ଯୋଗ ଦେବାକୁ ଇଚ୍ଛାକରି ଆସିଛି । ମୋତେ ଆପଣଙ୍କ ସୈନ୍ୟଦଳରେ ଖଣ୍ଡିଏ ଚାକିରି ଦିଅନ୍ତୁ ।"

ଲିଟିଲ ଜନର କଥା କହିବା ଭଙ୍ଗୀରୁ ତାଙ୍କର ଟିକିଏ ସନ୍ଦେହ ହେଲା କିନ୍ତୁ ସେ ଦେଖିଲେ ଯେ ଲୋକଟିର ଚେହେରା ଭଲ । ଦେହରେ ଯଥେଷ୍ଟ ବଳ ଅଛି । ଏପରି ଜଣେ ସୈନ୍ୟ ଥିଲେ ଲାଭଛଡ଼ା କ୍ଷତି ନାହିଁ । ତାକୁ ନିଯୁକ୍ତି ମିଳିଗଲା ।

ସାର୍ ରିଚାର୍ଡ଼ଙ୍କ ଗଡ଼କୁ କେତେ ଜଣ ସିପାହୀ ପହରା ଦିଅନ୍ତି । ଲିଟିଲ୍ ଜନ୍ ସେମାନଙ୍କ ଭିତରେ ଜଣେ ହୋଇ ରହିଲା । ଅଳ୍ପଦିନ ମଧ୍ୟରେ ସିପାହୀମାନେ ତାକୁ ଖୁବ ଭଲ ପାଇଲେ । କ୍ରମେ ସାର୍ ରିଚାର୍ଡ଼ ଜାଣିପାରିଲେ ଯେ ତାଙ୍କ ସିପାହୀମାନଙ୍କ ଭିତରେ ଧନୁଶର ବ୍ୟବହାର କରିବାରେ ଲିଟିଲ ଜନ୍ ସବୁଠାରୁ ପାରଙ୍ଗମ ।

ଥରେ ନଟିଙ୍ଗହାମରେ ଖେଳ ପ୍ରତିଯୋଗିତା ହେଉଥିଲା । ସେଥିରେ ସାର୍ ରିଚାର୍ଡଙ୍କ ସୈନ୍ୟମାନଙ୍କ ଭିତରୁ କେତେ ଜଣ ଯୋଗ ଦେବାକୁ ବାହାରିଲେ । ଧନୁରେ ଶର ଲକ୍ଷ କରିବା ଗୋଟିଏ ପ୍ରତିଯୋଗିତା । ଏଥିରେ ଲିଟିଲ୍ ଜନ୍‌କୁ ନ ନେଲେ ହେବ କିପରି ? ରିଚାର୍ଡଙ୍କ ମନରେ ତା ବିଷୟରେ ଟିକିଏ ସଂଶୟ ରହିଥାଏ । କିନ୍ତୁ ମନା କରିବେ ବା କିପରି ? ସେ ଅନ୍ୟମାନଙ୍କ ସାଥିରେ ନୀଳବର୍ଣ୍ଣର ପୋଷାକ ପିନ୍ଧି ପ୍ରତିଯୋଗିତାରେ ଯୋଗ ଦେବାକୁ ଗଲା ।

ପ୍ରତିଯୋଗିତାରେ ଶେରିଫ ଉପସ୍ଥିତ ଥାନ୍ତି । କିନ୍ତୁ ସେଠାରେ ଯେଉଁମାନେ ଥିଲେ ସେମାନେ କେହି ଲିଟିଲ୍ ଜନକୁ ଚିହ୍ନି ପାରି ନ ଥିଲେ । ରବିନ୍ ହୁଡ୍‌ର ସାଥୀ ବୋଲି ଜାଣି ପାରିଥିଲେ ଗୋଟାଏ କିଛି କାଣ୍ଡ ହୋଇ ଯାଇଥାନ୍ତା । କିନ୍ତୁ ସମସ୍ତେ ମନେ କଲେ ଯେ ଏ ସାର୍ ରିଚାର୍ଡଙ୍କ ସୈନ୍ୟମାନଙ୍କ ଭିତରୁ କିଏ ଜଣେ ହୋଇଥିବ ।

ପ୍ରତିଯୋଗିତା ଆରମ୍ଭ ହେଲା । ଶରରେ ଲକ୍ଷ୍ୟଭେଦ କରିବାରେ ଜଣକ ପରେ ଜଣେ ଲିଟିଲ ଜନ ପାଖରେ ହାରିଗଲେ । ଶେରିଫ ତାହାର କୌଶଳ ଦେଖି ବିସ୍ମିତ ହୋଇଗଲେ । ପ୍ରତିଯୋଗିତା ଶେଷରେ ସମସ୍ତେ ଏକ ବାକ୍ୟରେ ସ୍ୱୀକାର କଲେ ଯେ ସେହି ଲୋକଟି ଏଥିରେ ପ୍ରଥମ ।

ପୁରସ୍କାର ଦିଆଯିବାର ସମୟ ହେଲା । ଶେରିଫ ଲିଟିଲ୍ ଜନ୍‌କୁ ବହୁତ ପ୍ରଶଂସା କରି ପୁରସ୍କାର ଦେଇ କହିଲେ, "ମୁଁ ତୁମକୁ ମୋ ପାଖରେ ରଖିବାକୁ ଚାହେଁ ? ଭଲ ଦରମା ଦେବି । କଅଣ କହୁଛ ?"

ଲିଟିଲ୍ ଜନ୍ ଆନନ୍ଦ ପ୍ରକାଶ କରି କହିଲା, "ଆପଣଙ୍କ ପାଖରେ ଚାକିରି କରିବାକୁ ମୋର ଖୁବ୍ ଇଚ୍ଛା ।"

ଶେରିଫ ପଚ୍ଚାରିଲେ, "ତୁମର ନାମ କଅଣ ?"

ଜନ୍ ଉତ୍ତର ଦଲା, "ମୋର ନାଁ—ମୋର ନାଆଁ ହେଉଛି, ରିନଲଡ଼ ଗ୍ରୀନଲିଫ ।

ଅବଶ୍ୟ ସେତେବେଳେ ଯେଉଁ ନାଁଟା ମନକୁ ଆସିଗଲା, ଜନ୍ ତାହା କହି ପକାଇଲା ।

ସାର୍ ରିଚ୍ଚାର୍ଡ୍ ଓ ଶେରିଫ୍‌ଙ୍କ ଭିତରେ କଥାବାର୍ତ୍ତା ହେଲା । ସାର୍ ରିଚ୍ଚାର୍ଡ୍ ଏପରି ଜଣେ ଚାକରକୁ ଛାଡ଼ିବାକୁ ସ୍ୱୀକୃତ ହେଲେ ନାହିଁ । କିନ୍ତୁ ଲିଟିଲ ଜନ ଶେରିଫଙ୍କ ପାଖରେ ଚାକରି କରିବ ବୋଲି ଆଗ୍ରହ ପ୍ରକାଶ କଲା । ଆଗରୁ ତାଙ୍କର ସନ୍ଦେହ ଥିଲା ସେ ଲୋକଟିର ଚାକରି କରିବାରେ କୌଣସି ବିଶେଷ ଉଦ୍ଦେଶ୍ୟ ଅଛି । ତେଣୁ ସେ ଲୋକଟିକୁ ଛାଡ଼ିବାକୁ ରାଜି ହେଲେ ।

ଶେରିଫ୍ ଲିଟିଲ ଜନର କୌଶଳ ଜାଣି ନ ପାରି କହିଲେ "ରିନଲଡ଼ ! ତୁମେ ସାର୍ ରିଚ୍ଚାର୍ଡ୍‌ଙ୍କଠାରୁ ଯେତେ ଦରମା ପାଉଛ, ତାର ଦୁଇଗୁଣ ଦରମା ପାଇବ । ତାଛଡ଼ା ତୁମକୁ ଖାଇବା ପିଇବା ଓ ପୋଷାକ ମାଗଣା ଦିଆଯିବ ।"

ଏହିପରି ଲିଟିଲ୍ ଜନ ଶେରିଫଙ୍କ ପାଖରେ ଚାକରି କଲା । ସେ ଧନୁଶର ଧରି ସିପାହୀ କାମ କରେ । କେତେ ଦିନ ଯାଏ କିଛି ବିଶେଷ ଘଟଣା ଘଟିଲନାହିଁ । କିନ୍ତୁ ସେ ସବୁବେଳେ ସୁଯୋଗକୁ ଅପେକ୍ଷା କରି ରହିଥାଏ । ବେଳ ପଡ଼ିଲେ ସେ ତାର କାମ କରିବ ବୋଲି ଭାବୁଥାଏ ।

ସେ ଦେଖିଲା ଯେ ଚାକରମାନଙ୍କ ପ୍ରତି ଶେରିଫଙ୍କର ବ୍ୟବହାର ଅତି କଦର୍ଯ୍ୟ । ଠିକ୍ ସମୟରେ କେହି ଦରମା ପାଆନ୍ତି ନାହିଁ । ସେମାନଙ୍କୁ ଯାହା ଖାଇବାକୁ ଦିଆଯାଏ, ତାହା ଯଥେଷ୍ଟ ନୁହେଁ ଏବଂ ଅତି ଖରାପ । ଖାଇବାବେଳେ ଲିଟିଲ୍ ଜନ ଶେରଉଡ୍

ଜଙ୍ଗଲରେ ହରିଣ ମାଂସ ତରକାରି ଖାଇବା କଥା ମନେ ପକାଉ ଥାଏ । ପ୍ରକୃତରେ ରବିନ୍‌ହୁଡ୍ ଓ ତାହାର ସାଥୀମାନଙ୍କ ପାଖକୁ ଫେରିଯିବା ପାଇଁ ତାହାର ମନ ଅସ୍ଥିର ହେଉଥାଏ ।

ଦିନେ ଶେରିଫ୍ ତାହାକୁ ଡାକି କହିଲେ, "ରିନ୍‌ଲଡ଼ ! ମୁଁ କେତେକ ଲୋକ ନେଇ ଦୂରକୁ ଗୋଟିଏ ସହରକୁ ଯାଉଛି । ମୁଁ ସେଠାରେ କିଛିଦିନ ରହିପାରେ । ମୁଁ ଫେରିବାଯାଏ ଏ ଗଡର ଘର ଦ୍ୱାର ଉପରେ ରହିବ ।" ଲିଟିଲ୍ ଜନ ଉତ୍ତର କଲା, "ଅତି ଉତ୍ତମ, ମୁଁ ଆପଣଙ୍କ ଆଦେଶ ଯଥାସାଧ୍ୟ ପାଳନ କରିବି ।"

ଶେରିଫ ଗଡ ଛାଡ଼ି ଗଲେ । ଅବଶିଷ୍ଟ ସିପାହୀମାନଙ୍କର ଖାଇବା ପିଇବା କଥା ବୁଝିବାକୁ ଯେଉଁ ବେବର୍ଚ୍ଚି ଥିଲା, ସେ ନିତାନ୍ତ ଅଳସୁଆ । ଜଣେ ରନ୍ଧା ହେଲା ନ ହେଲା କିଛି ବୁଝେ ନାହିଁ । ସେଦିନ ସେ ଜନ୍‌କୁ କିଛି ଖାଇବାକୁ ଦେଲା ନାହିଁ । ଲିଟିଲ୍ ଜନ ରନ୍ଧା ଘରକୁ ପଶିଯାଇ ଦେଖିଲା ଯେ ବେବର୍ଚ୍ଚି ଗୋଟିଏ ଚୌକି ଉପରେ ବସି ଘୁମାଉଛି । ସେ ପାଟିକରି କହିଲା, "ମୁଁ ଏତେବେଳଯାଏ କିଛି ଖାଇନାହିଁ । ମୋତେ ଖାଇବାକୁ ଦେବାକୁ ହେବ ।"

ବେବର୍ଚ୍ଚିଙ୍କ ନିଦ ଭାଙ୍ଗିଗଲା । ସେ ଆଖି ମଳି ମଳି କହିଲେ, "ହୁଃ !

ଜନ୍ ପୁଣି କହିଲା, "ମୁଁ ଖାଇବାକୁ ଚାହେଁ ।" ବେବର୍ଚ୍ଚି ଚଟିଯାଇ ହୋଇ କହିଲେ "କେଉଁଠୁ ଖାଇବୁ ଖା ।"

ଲିଟିଲ ଜନ୍ ତାଙ୍କୁ ଧରିବା ପାଇଁ ହାତ ବଢ଼ାଇଲା । ତହୁଁ ସେ ବାହାରକୁ ପଳାଇବାକୁ ବସିଲେ, କିନ୍ତୁ ଲିଟିଲ୍ ଜନ୍ ତାହାଙ୍କୁ ଧରି ପକାଇ ଏପରି ଗୋଟିଏ ଚଟିଧା ଦେଲା ଯେ ସେ ସେହିଠାରେ ମଡ଼ି ରହିଲେ । ଏଣେ ଜନ୍ ଖୋଜିଖୋଜି ଘରେ ଯାହା ଥିଲା ସବୁ ଆଣି ନିଶ୍ଚିନ୍ତରେ ଖାଇଲା ।

ଏହି ସମୟରେ ପୁଷ୍ପାଗ୍ନି କେଉଁଠାରୁ ଆସି ଦ୍ୱାରମୂହଁରେ ଥାଇ କହିଲା, "ଏଠାରେ ଏସବୁ କଣ ହେଉଛି ?" ଲିଟିଲ୍ ଜନ୍ ସଙ୍ଗେ ସଙ୍ଗେ ଉତ୍ତରଦେଲା "ମୋତେ ଭୋକ ହେଉଥିଲା । ବେବର୍ତ୍ତାଙ୍କ କହିବାରୁ ଯେଉଁଠାରୁ ଇଚ୍ଛା ସେଠାରୁ ଆଣି ଖାଇବାକୁ ମୋତେ କହିଲେ । ମୁଁ ତାହାହିଁ କଲି ।"

ପୁଷ୍ପାଗ୍ନି ପୁଣି ପଚାରିଲା, "ବେବର୍ତ୍ତା ଛଟଲେ କମି କଣ କରୁଛନ୍ତି ?"

ଲିଟିଲ ଜନ ହସି ହସି କହିଲା "ସେ ମୋତେ ବାଠ ଗୁଡ଼ ନ ଥିଲେ ।"

ପୁଷ୍ପାଗ୍ନି ଏ ସବୁ ଶୁଣି କାନ୍ଥରେ ଆଉଜା ହୋଇଥିବା ବାଡ଼ି ଖଣ୍ଡିକ ଧରିଲା । ସେ ଜାଣିପାରିଲା ଯେ ଏହି ଲୋକଟା ଭଣ୍ଡାରରେ ପଶି ସବୁ ଜିନଷ ଚୋରିକରି ଖାଇଛି । ଲିଟିଲ ଜନ୍ ଦେଖିଲା ଯେ ପୁଷ୍ପାଗ୍ନି ହାତରେ ବାଡ଼ି ଧରିଲାଣି । ସେ ମଧ୍ୟ ଖଣ୍ଡେ ବାଡ଼ି ଯୋଗାଡ଼ କରିନେଲା ଏବଂ ଦୁହିଁଙ୍କଭିତରେ ଅନେକବେଳଯାଏ ପିଟାପିଟି ଚାଲିଲା । ଅନ୍ୟ କେହି ହୋଇଥିଲେ, ଜନ୍‌ର ପ୍ରହାରରେ ଅଳ୍ପସମୟ ଭିତରେ ଶେଷହୋଇ ଯାଇଥାନ୍ତା ; କିନ୍ତୁ ପୁଷ୍ପାଗ୍ନିଟିର ଦେହରେ ଯେପରି ବଳ, ମନରେ ମଧ୍ୟ ସେହିପରି ସାହସ । ଜନ୍ କହିଲା, "ପୁଷ୍ପାଗ୍ନିମହାରାଜ ତୁମେ ଜଣେ ବେଶ ଲୋକ । ତୁମର ବଳ ଓ ସାହସର ଅଭାବ ନାହିଁ ।" ପୁଷ୍ପାଗ୍ନି କହିଲା "ତୁମଠାରେ ମଧ୍ୟ କମ ନୁହେଁ । ଜନ୍ କହିଲା, "ତୁମେ ଯଦି ଧନୁରେ ଶର ମାରି ଜାଣ, ତାହାହେଲେ ମୋ ସହିତ ଚାଲ । ରବିନ୍ ହୁଡ଼ ଓ ତାହାର ସାଥି-ମାନଙ୍କ ସଙ୍ଗରେ ସୁଖରେ ରହିପାରିବ ।"

ପୁଷ୍ପାଗ୍ନି ଏହା ଶୁଣି ଚକିତ ହୋଇଗଲା । ସେ ପଚାରିଲା, "ତାହାହେଲେ ତୁମେ ପ୍ରକୃତରେ କିଏ ?" ଉତ୍ତର ମିଳିଲା "ମୋ

ନାଁ ହେଉଛି ଲିଟିଲ୍ ଜନ୍ । ଶେରିଫ୍‌ଙ୍କ ଉପରେ ପ୍ରତିଶୋଧ ନେବାପାଇଁ ତାଙ୍କ ପାଖେ ସିପାହୀ କାମ କରୁଛି ।"

ଏହା ଶୁଣି ପୃଥ୍ୱୀରାଜ ଖୁବ୍ ହସିଲେ ଏବଂ ଟିକିଏ ଭାବି କହିଲେ, "ମୁଁ ତୁମ ସାଥିରେ ଯିବାକୁ ପ୍ରସ୍ତୁତ ଅଛି । ବଣଭିତରେ ରବିନ୍‌-ହୁଡ଼ର ଲୋକଙ୍କ ପରି ଜୀବନ କଟାଇବାକୁ ମୋର ଭାରି ଇଚ୍ଛା । ତେବେ ଆଉ ଡେରି କାହିଁକି ? ବେବର୍ତ୍ତା ଜାଣିପାରିଲେ ଅସୁବିଧା ।" ଜନ୍ କହିଲେ, "ହଁ, ଖୁବ୍ ଶୀଘ୍ର ଯିବା କିନ୍ତୁ ଖାଲି ହାତରେ ଯିବାନାହିଁ । ଶେରିଫ୍‌ଠାରୁ ମୋର ଦରମା ପାଇବାର ଅଛି ।" ସଙ୍ଗେ ସଙ୍ଗେ ପୃଥ୍ୱୀରାଜ କହିଲେ, "ମୋର ମଧ୍ୟ ଦରମା ବାକି ପଡ଼ିଛି ।" ଲିଟିଲ୍ ଜନ୍ ହସି ହସି କହିଲେ, "ତାହାହେଲେ ଆମେ ଦୁହେଁ ଆମ ଦରମା ତ ନେବା ତାହାଙ୍କୁ କିଛି ସୁଧ ମଧ୍ୟ ନେଇଯିବା ।"

ଦୁହେଁଯାକ ଶେରିଫ୍‌ଙ୍କ ବୈଠକଖାନା ଓ ଭଣ୍ଡାର ଘରେ ପଶି ବାକ୍‌ସ ଭାଙ୍ଗି ସୁନା ରୂପା ଓ ରୂପାବାସନ ଯାକ ଦୁଇଟି ବସ୍ତାରେ ଭର୍ତ୍ତିକଲେ ଓ ଶେଉଉଡ୍ ଜଙ୍ଗଲ ଆଡ଼କୁ ଗଲେ । ଯାଉ ଯାଉ ଜନ୍ କହିଲେ, "ଆଜି ରବିନହୁଡ଼ ରଜାଘର ବଧିରେ ରୂପାବାସନରେ ଭୋଜନ କରିବେ ।" ଯେ ଦୁହେଁ ଶେଷରେ ଜଙ୍ଗଲ ଭିତର ଆଡ଼୍ଡ଼ା ପାଖରେ ପହଞ୍ଚିଲେ । ଦୂରରୁ କିଏ ଦୁଇଜଣ ଆସୁଥିବାର ଦେଖି ରବିନ୍‌ହୁଡ଼ ପ୍ରକୃତ କଥା ଜାଣିବାପାଇଁ କେତେଜଣ ସାଥୀଙ୍କୁ ପଠାଇଲେ । ସେମାନେ ସେ ଦୁହିଁଙ୍କୁ ରବିନ୍ ପାଖକୁ ନେଇଗଲେ । ବୋଝଦୁଇଟି ତଳେ ରଖିଦେଇ ଜନ୍ କହିଲେ "ସରଦାରଜୀ !" ସଙ୍ଗେ ସଙ୍ଗେ ରବିନ୍ ପଚାରିଲେ "ଏ କିଏ ? ତୁମ ଦେହରେ ଶେରିଫ୍‌ଙ୍କ ସିପାହୀର ପୋଷାକ କାହୁଁ ଆସିଲା ?" ଲିଟିଲ୍ ଜନ୍ ଉତ୍ତରକଲେ, "ମୁଁ ପରା ଶେରିଫ୍‌ଙ୍କ ଲୋକ । ଅନ୍ତତଃ ଦୁଇଘଣ୍ଟା ପୂର୍ବରୁ ମୁଁ

ତାଙ୍କର ସ୍ୱୀକାର କରୁଥିଲା ।" ସବୁ ଘଟଣା ଶୁଣି ରବିନ୍ ହସି ହସି ଗଡ଼ିଗଲା । ତା'ପରେ କହିଲା, "ବେଶ୍ ମଜ୍ଜାକଥା । କିନ୍ତୁ ଶେରିଫ୍ ଫେରି ଆସିଲାଣି, ନଟିଙ୍ଗହାମ୍ ସହରରେ ହୁଲସ୍ଥୂଲ ପକାଇଦେବ । ମୋର ଆଶଙ୍କା ହେଉଛି, ଖୁବ୍ ଶୀଘ୍ର ତା ସଙ୍ଗେ ଆମର ସାକ୍ଷାତ ହେବ ।"

ରବିନ୍ ଯାହା କହିଥିଲା, ତାହାହିଁ ଘଟିଲା ।

---

୧୯

# ଶେରିଫ ଫାଶରେ ପଡିଲେ

ତା ଆରଦିନ ସକାଳେ ଲିଟିଲ୍ ଜନ୍ ଓ ରବିନ ଏକାଠି ବସି ଖାଉଥିଲେ । ଜନ୍ କହିଲ, "ମୁଁ ଯାହା କରିଆସିଛି, ତାହା ଜଣାପଡ଼ିବାକୁ କେତେଦିନ ଲାଗିବ ?"

ରବିନ କହିଲା, "ବେଶୀଦିନ ନୁହେଁ, ନିଶ୍ଚୟ ।"

ଲିଟିଲ ଜନ୍—"ଆମକୁ ଗୋଟାଏ କିଛି ଉପାୟ ସ୍ଥିର କରିବାକୁ ହେବ, ଯେପରିକି ଶେରିଫ ଆମକୁ ଆକ୍ରମଣ କରି ନ ପାରେ । ଆମ ଉପରେ କିଛି ଗୋଟାଏ ଭୀଷଣ ପ୍ରତିଶୋଧ ନେବା ଆଗରୁ ତାକୁ ବନ୍ଦ କରି ରଖିବାକୁ ହେବ । ମୋ ମନରେ ଗୋଟାଏ ଉପାୟ ଅଛି । ସରଦାର, ତୁମେ ଗୋଟାଏ କଥା କରି ପାରିବ ? ମୁଁ ଭାବୁଛି, ଶେରିଫର ରୁପା ବାସନପାକ ଆମ ମେଜ ଉପରେ ସଜା ହେବ । ସେଥିରେ ଖାଇବାକୁ ବଡ଼ାମିବ । ଆଜ ଶେରିଫର ଏଇ ପୁଷ୍ଟାଗ୍ର ଶେରିଫକୁ ଏଇଠାରେ ପରଶିଦେବ ।"

ରବିନ୍ କହିଲା; "ଏସବୁ ଯାହା କହୁଛ ବନ୍ଦୋବସ୍ତ ହୋଇ ପାରିବ । କିନ୍ତୁ ଏପରି କଲେ କଅଣ ହେବ ମୁଁ ବୁଝି ପାରୁନାହିଁ । ଶେରିଫ ଏଠାକୁ କିପରି ଆସିବ ?"

ଲିଟିଲ୍ ଜନ ଏତିକି ମାତ୍ର କହିଲା, "ସରଦାର, ସବୁ ବୁଝି ପାରିବ ?" ଏତିକି କହି ସେ ଶେରିଫଙ୍କ ସିପାହୀର ପୋଷାକ ପିନ୍ଧି ବାହାରି ପଡ଼ିଲା ।

ଜନ୍ ଭାବିଲା ଯେ ଶେରିଫ ଆଜି ନଟିଙ୍ଗହାମ୍‌କୁ ଫେରିବାର କଥା । ସେ ଗଡ଼କୁ ଯିବା ପୂର୍ବରୁ ତା ସଙ୍ଗେ ଯେପରି ଦେଖାହୁଏ ।

ନଟିଙ୍ଗହାମକୁ ପଡ଼ିଥିବା ରାସ୍ତା ଉପରକୁ ଯାଇ ଲିଟିଲ୍ ଜନ୍ ଅପେକ୍ଷା କରି ରହିଲା । କିଛି ସମୟ ପରେ ସେ ଦେଖି ପାରିଲା ଯେ ଶେରିଫ ଗୋଟାଏ ଘୋଡ଼ାରେ ବସି ଆସୁଛି । ତା ପଛରେ ତାର ଲୋକମାନେ ଆସୁଛନ୍ତି । ଶେରିଫଙ୍କୁ ଦେଖିଲାକ୍ଷଣି ଜନ୍ ତାଙ୍କ ଆଗକୁ ଦଉଡ଼ି ଯାଇ ଆଣ୍ଠେଇ ପଡ଼ି ସମ୍ମାନ ଦେଖାଇଲା ।

ଶେରିଫ ନିଜର ଚାକରକୁ ସେଠାରେ ଦେଖି ପଚାରିଲେ, "ତୁ ଏଠାକୁ କାହିଁକି ଆସିଲୁ ?"

ଜନ୍ ଉତ୍ତର କଲା, "ହଜୁର, ମୁଁ ଶୁଣିଲି ଯେ ଆପଣ ଆଜି ଗଡ଼କୁ ଫେରିବେ । ଆପଣ ତ ଏଇ ଜଙ୍ଗଲ ବାଟେ ଆସିବେ । ମୁଁ ଭାବିଲି ଯେ ଆପଣ ଟିକିଏ ଶିକାର କରି ପାରିଲେ ଖୁସି ହେବେ ।"

ଶେରିଫ ରାଗିଯାଇ କହିଲେ, "ସେ କଥା ମୁଁ ଜାଣେ, ତୁ—"

ଜନ୍ ସଙ୍ଗେ ସଙ୍ଗେ କହିଲା, "ହଜୁର, ସେ କଥା ସତ ; ମାତ୍ର ମୋର ଏଠାକୁ ଆସିବାର କାରଣ ଜାଣିଲେ ଆପଣ ବିରକ୍ତ ନ ହୋଇ ମୋତେ ପ୍ରଶଂସା କରିବେ । କଥା ହେଉଛି ଯେ ମୁଁ ଗୋଟିଏ ଅସଲ ହରିଣ ଦେଖିଛି । ତା ଭଳି ବଡ଼ ହରିଣ କେବେ ଦେଖି ନ ଥିଲି । ତାର ଶିଙ୍ଗ ଗୁଡ଼ିକ ଖୁବ୍ ଲମ୍ବା ; ଆଉ ତା ସାଥିରେ ଗୋଟାଏ ପ୍ରକାଣ୍ଡ ଦଳ । ହରିଣ ଦଳର ସେ ବୋଧ ହୁଏ ଦଳପତି ।"

ଶେରିଫ ଟିକିଏ ନରମିଯାଇ କହିଲେ, "ସେ ହରିଣଟା କେଉଁଠି ଦେଖିଥିଲୁ ?"

ଲିଟିଲ ଜନ୍ କହିଲା, "ଏଠାରୁ ବାଟ ଦୁଇ ପାଆ ହେବ । ହୁକୁମ ହେଲେ ହଜୁରଙ୍କୁ ନେଇ ଦେଖାଇ ଦେବି । ଅସଲ ଶିକାରଟାଏ ।"

ଶେରଫ ଏଥିରେ ରାଜି ହୋଇଗଲେ । ଲୋକମାନଙ୍କୁ ଗଡ଼କୁ ପଠାଇ ଦେଇ ସେ ଏକୁଟିଆ ଜନ୍ ସାଥିରେ ବଣ ଭିତରକୁ ପଶିଲେ ।

ଜନ ଜାଣିଥିଲା ଯେ ଶେରଫଙ୍କର ଶିକାରରେ ଖାସ୍ ସଉକ୍ । ଭଲ ଶିକାରୀ ବୋଲି ତାଙ୍କର ମଧ୍ୟ ସୁନାମ ଅଛି । ତେଣୁ ସେ ଶିକାର ବାହାନାରେ ଶେରଫଙ୍କୁ ଫାଶରେ ପକାଇ ଦେଲା ।

ଲିଟିଲ୍ ଜନ୍ ଆଗେ ଆଗେ ଚାଲିଲା । ଶେରଫ୍ ଘୋଡ଼ାରେ ଚଢ଼ି ତା ପଛେ ପଛେ ଯାଉଥାନ୍ତି । ଏହିପରି ଯାଉ ଯାଉ ସେମାନେ ବଣର ଗୋଟାଏ ମେଲା ଜାଗାରେ ପହଞ୍ଚିଗଲେ । ଶେରଫ ଦେଖିଲେ ଯେ ସେଠାରେ ରବିନ୍‌ହୁଡ୍ ଓ ତାର ସାଥୀମାନେ ଗୋଟାଏ ଗଛ-ମୂଳରେ ବସିଛନ୍ତି । ତାଙ୍କ ମନରେ ଛନକା ପଶିଗଲା । ସେ ବୁଝି ପାରିଲେ ଯେ ତାଙ୍କୁ ଜନ୍ ଫାଶରେ ପକାଇଛି ।

ରବିନ୍‌ର କେତେଜଣ ସାଥୀ ଆସି ଶେରଫଙ୍କୁ ଘୋଡ଼ାରୁ ଓହ୍ଲାଇ ପକାଇଲେ । ରବିନ୍ ଆସି କହିଲା, "ଆପଣଙ୍କୁ ଅଭ୍ୟର୍ଥନା କରୁଛୁ ।" ଶେରଫ ରାଗିଯାଇ କହିଲେ, "ଏ ଅଭ୍ୟର୍ଥନା ନା ମୋ ଉପରେ ଅତ୍ୟାଚାର । ଦେଖ ରବିନ୍‌ହୁଡ୍; ତୋତେ ଏହାର ପ୍ରତିଫଳ ଭୋଗିବାକୁ ହେବ ।"

ରବିନ୍ କିଛି ନ ଶୁଣିଲା ପରି ଖୁବ ଭଦ୍ରତା ଦେଖାଉଥାଏ । ଶେରଫ ତା ପ୍ରତି ହଠାତ୍ କ୍ରୋଧ ପ୍ରକାଶ କରି ଭୁଲ କରିଛନ୍ତି ବୋଲି ଭାବୁଥାନ୍ତି । କିଛି ସମୟ ପରେ ରବିନ୍ ତାଙ୍କୁ ଖାଇବା ଜାଗାକୁ ନେଇଗଲା । ଚୁପ୍ କରି ବସି ଖାଇବା ଛଡ଼ା ତାଙ୍କର ଅନ୍ୟ ଉପାୟ ନ ଥିଲା । କିନ୍ତୁ ସେ ମନେ ମନେ ଭାବୁଥାନ୍ତି— ରବିନ୍ ମୋ' ପ୍ରତି କଅଣ କରିବ ? ମୁଁ ତ ତାକୁ ପ୍ରାଣରେ ମାରି ଦେବି ବୋଲି କହୁଥିଲି । ସେ କଥା ସେ ନିଶ୍ଚୟ ଶୁଣିଥିବ । ଏବେ ମୋତେ ହାତରେ ପାଇଛି, କଅଣ କରିବ କିଏ ଜାଣେ ?

ଶେରଫ ଖାଉ ଖାଉ ଦେଖିଲେ ଯେ ଥାଳ, ଗିନା ସବୁ ତାଙ୍କର ମେସ ରଚିଉଠିଲେ; କିନ୍ତୁ କିଛି ନ କହି ଘର ଆଡ଼କୁ ଅନାଇଲେ । ଦେଖନ୍ତି ତ ତାଙ୍କର ପୁଷ୍ପାଶ୍ୱ ସେଠାରେ ଛିଡ଼ା ହୋଇଛି । ତାଙ୍କ ମୁଣ୍ଡ ବୁଲେଇ ଗଲା । ଭୋକ କୁଆଡ଼େ ଉଭେଇଗଲା ।

ବେଶି ବେଳଯାଏ ସେ ଧୈର୍ଯ୍ୟ ଧରି ନପାରି କହିଲେ, "ତୁ ମତେ ଫାଶରେ ପକାଇଛୁ । ଖାଲି ମେସନ୍ତକ ନୁହେଁ । ମୋର ଦୁଇ ବାସନ ଯାକ ନେଇ ଆସିଛୁ; ଆଉ ମୋର ପୁଷ୍ପାଶ୍ୱ ଆସି ତୋ ଦଳରେ । ତୋର ମତଲବ କଅଣ ମନା କହିଦେ ।"

ରତନ୍ ହସି ହସି କହିଲା, "ଆପଣଙ୍କୁ ମୋର ମନ ସାଗୁଆ ରଙ୍ଗର ପୋଷାକ ପିନ୍ଧାଇବା ମୋର ଇଚ୍ଛା ।"

ରତନ୍‌ର ଆଦେଶରେ କେତେ ଜଣ ଲୋକ ଶେରଫଙ୍କ ଦେହରୁ ପୋଷାକ କାଢ଼ି ଆଣିଲେ; ଖଦଡ଼ ସାଗୁଆ ପୋଷାକ ସାରେ ବଢ଼ାଇ ଦେଲେ । ଶେରଫ ଅନ୍ୟଗତି ନ ଦେଖି ତାହାକୁ ପିନ୍ଧିଲେ । ତାପରେ ରତନ୍ ଶେରଫଙ୍କୁ କହିଲା, "ଆପଣ ଯେତେବେଳେ ଏଠାକୁ ଆସିଛନ୍ତି, ଏଠାରେ କିଛିଦିନ ରହନ୍ତୁ । ଆମେ କିପରି ରହିଛୁ, କଅଣ ଖାଉଛୁ, କିପରି ଚଳୁଛୁ ଏସବୁ ନିଜ ଆଖିରେ ଦେଖିପାରିବେ ।" ଶେରଫ ଏହାର ପ୍ରତିବାଦ କରିବାର ବାଟ ପାଇଲେ ନାହିଁ ।

ସନ୍ଧ୍ୟା ହେଲା । ରତନର ସାଥୀମାନେ ଯେପରି ଗଛମୂଳେ ମାଟି ଉପରେ ଶୋଇଲେ, ଶେରଫଙ୍କୁ ମଧ୍ୟ ସେହିପରି ଭୂଇଁ ଉପରେ ଶୋଇବାକୁ ହେଲା । ଶନ୍ତାରେ ରାତିରେ ତାଙ୍କୁ ଆଦୌ ନିଦ ହେଲା ନାହିଁ ।

ସକାଳ ହେଲା । ଶେରଫଙ୍କର ମନର ବଳ କେତେବେଳେ ତୁଟି ଯାଇଥାଏ । ସେ ଦେଖିଲେ ଯେ ରତନର କଥା ଅନୁସାରେ କାର୍ଯ୍ୟ ନ କଲେ ଜୀବନ ରହିବ ନାହିଁ ।

ରବନ୍ କହିଲା, "ଆପଣଙ୍କୁ ଏଠାରେ ଆମ ସାଥିରେ ଠିକ୍ ଗୋଟିଏ ବର୍ଷ ରହିବାକୁ ପଡ଼ିବ ।"

ଶେରିଫ କହିଲେ, "ରବିନ୍, ତୁ ମତେ ଯାହା କହିବୁ ମୁଁ ତାହା କରିବାକୁ ପ୍ରସ୍ତୁତ । କିନ୍ତୁ ମୋତେ ଏଠାରେ ରହିବାକୁ କହନା । ମୁଁ ତୋର ଅନୁଗ୍ରହ ଭିକ୍ଷା କରୁଛି । ମୋପ୍ରତି ଏତିକି ଦୟାକର ।"

ରବିନ୍ କହିଲା, "ଆଚ୍ଛା, ଆପଣ ଯଦି ମୋତେ ଏହିପରି ଅବସ୍ଥାରେ ପାଇଥାନ୍ତେ, ତେବେ ମୋତେ ଦୟା ଦେଖାଇ ଛାଡ଼ି ଦେଇଥାନ୍ତେ କି ?

ଶେରିଫ—ନା, କଦାପି ନୁହେଁ ।

ରବିନ ହସି ହସି କହିଲା, "ଯାହା ହେଉ, ଆପଣ ସତକଥା କହିଲେ ।"

ତା'ପରେ ରବିନ୍ ତାର ସାଥୀମାନଙ୍କୁ ଡାକି ପଚାରିଲା, "ଏବେ ଏ ଶେରିଫଙ୍କୁ କଅଣ କରିବା ? ସେ ଆମର ଜୀବନ ନେବାକୁ ଚେଷ୍ଟା କରି ଆସିଛି; କିନ୍ତୁ ଆମେ ତାର ଜୀବନ ନେବା ନାହିଁ ।"

ଦଳଭିତରୁ ଅନେକେ କହିଲେ, "ଆମର ସରଦାର ଯେବେ ତା ହାତରେ ପଡ଼ିଥାନ୍ତେ ତେବେ ସେ ତାଙ୍କୁ ନ ମାରି ଛାଡ଼ି ନ ଥାନ୍ତା । ଏକଥା ତ ସେ ମାନୁଛି । ତାହାହେଲେ ସେ ଯେତେବେଳେ ଆମ ହାତରେ ପଡ଼ିଛି, ଆମେ ତା ପ୍ରତି ସେହିପରି ବ୍ୟବହାର କରିବା ।"

କିନ୍ତୁ ରବିନ୍ କହିଲା, "ସେ ତ ଭୁଲ୍‌କରି ଆମ ପାଖକୁ ଆସିନାହିଁ । ସେପରି ସେ ଯେବେ ଆସିଥାନ୍ତା ଓ ଆମେ ତାକୁ ବଳରେ କିଣି ଧରିଥାନ୍ତେ ; ତେବେ ତାକୁ ମାରିବା ଠିକ ହୁଅନ୍ତା ; କିନ୍ତୁ ଗୋଟାଏ କୌଶଳ କରି ତାକୁ ଏଠାକୁ ଆଣିଥାଏଁ । ତାର

ରୁପା ବାସନଗୁଡ଼ିକ ଓ ତାର ପୁଷ୍ଟାକ୍ଷ ଏବେ ଆମର । ଆମେ ଯେ କପରି କୌତୁକ କରୁଁ ସେ ଜାଣି ସାରିଲଣି । ତେବେ ସେ ଯଦି ଭବିଷ୍ୟତରେ ଆମ ସଙ୍ଗେ ନ ଲଗିବ ବୋଲି ଶପଥକରେ ତେବେ ତାଙ୍କୁ ଦଣ୍ଡ ନ ଦେବା କାହିଁକି ?" ଏଥିରେ ଦଳର ସମସ୍ତେ ସ୍ୱୀକୃତ ହେଲେ ।

ରବିନ୍ ସେରିଫଙ୍କୁ ଚାହିଁ କହିଲ, "ଆପଣ ଆମର ଶତ୍ରୁ ହୋଇ ଏଠାକୁ ଆସିଥିଲେ ; ଆମେ ଆପଣଙ୍କର ପ୍ରାଣ ନେବାକୁ ଚାହୁଁ ନାହିଁ । ଆମେ ଚାହୁଁ, ଆପଣ ଆମର ବନ୍ଧୁ ହୋଇ ରହନ୍ତୁ । ଆପଣ ବୁଝିପାରୁଥିବେ ଯେ ଆମେ ଇଚ୍ଛା କଲେ ମୁହୂର୍ତ୍ତିକ ଭିତରେ ଆପଣଙ୍କ ପ୍ରାଣ ନେଇ ପାରୁଁ । କିନ୍ତୁ ଆମେ ତା କରିବୁନାହିଁ । ଆପଣ ଭବିଷ୍ୟ-ତରେ ଆମ ପ୍ରତି ବନ୍ଧୁ ଭଳି ବ୍ୟବହାର କରିବେ ବୋଲି ଶପଥକରନ୍ତୁ ତା'ପରେ ସ୍ୱାଧୀନ ଭାବରେ ଯେଉଁଠାକୁ ଇଚ୍ଛା ଚାଲି ଯାଆନ୍ତୁ ।"

ଏହା ଶୁଣିଲକ୍ଷଣି ସେରିଫଙ୍କର ଗୋଟାଏ ଭୟଙ୍କର ଦୁଶ୍ଚିନ୍ତା ଦୂର ହୋଇଗଲା । ସେ ବିସ୍ମିତ ହୋଇ କହିଲେ, "ମୁଁ ଆପଣଙ୍କ ପ୍ରତି ଯେଉଁ ଦୟା ବା ଉଦାରତା ଦେଖାଇ ନ ଥାନ୍ତି,ଆପଣ ମୋତେ ତା ଅପେକ୍ଷା ଅଧିକ ଦେଖାଇଅଛନ୍ତି । ଆପଣଙ୍କଠାରେ ପ୍ରକୃତ ମନୁଷ୍ୟତା ଅଛି । ମୁଁ ଶପଥ କରୁଛି ଯେ ମୁଁ ଏଣିକି ଆପଣଙ୍କ ପ୍ରତି ବନ୍ଧୁ ଭଳି ବ୍ୟବହାର କରିବି । ଆପଣଙ୍କ ପ୍ରାଣ ନେବାକୁ କେବେହେଁ ଚେଷ୍ଟା କରିବି ନାହିଁ ।"

ସେରିଫ ବିଦାୟ ନେଇ ଗଲେ । ସେ ନିଜର ପ୍ରତିଜ୍ଞା ରକ୍ଷା କରିବାକୁ ଯଥାସାଧ୍ୟ ଚେଷ୍ଟା କଲେ । କିନ୍ତୁ ଯେତେବେଳେ ଖାଇ-ବସନ୍ତି, ଦେଖନ୍ତି ଯେ ତାଙ୍କ ରୁପାର ବାସନଗୁଡ଼ିକ ଆଉ ନାହିଁ । ସେ ଭାବନ୍ତି ଯେ ସେଗୁଡ଼ିକ ଏବେ ରବିନ୍ ହୁଡ୍‌ର ବ୍ୟବହାରରେ ଲଗୁଥିବ । କେବେକେବେ ସେ ଏପରି ଶପଥ କରିଥିବାରୁ ଅନୁତାପ କରନ୍ତି । ଭାବନ୍ତି, କିପରି ଏ ଶପଥରୁ ମୁକ୍ତ ହୁଅନ୍ତି କି ?

---

## ୨୦

# ରୂପାର ଶର

ଶେରଫ ଘରକୁ ଫେରି ଯାଇ ସ୍ତ୍ରୀଙ୍କ ଆଗରେ ୯ବୁ ଘଟନା ବର୍ଣ୍ଣନା କରି କହିଲେ ଯେ ସେ ଏଣିକ ରବିନ୍ ହୁଡ଼ ସଙ୍ଗରେ ଶତ୍ରୁତା କରିବେ ନାହିଁ ବୋଲି ପ୍ରତିଜ୍ଞା କରି ଆସିଛନ୍ତି । ଏହା ଶୁଣି ସେ ରାଗରେ ଜଳି ଉଠିଲେ । ଶେରିଫ କହିଲେ, "ମୁଁ ଯେଉଁ ଫାନ୍ଦରେ ପଡ଼ିଥିଲି ମୋ ପ୍ରାଣ ଯାଇଥାନ୍ତା ; ମୁଁ ଯେ ପ୍ରାଣ ଘେନି ଫେରି ଆସିଛି, ସେ ବହୁତ ଭାଗ୍ୟ । ବନ୍ଧୁଭାବ ରଖିବାକୁ ପ୍ରତିଜ୍ଞା ନ କରି ଆଜି କଅଣ କରିଥାନ୍ତି ।"

ତାଙ୍କ ସ୍ତ୍ରୀଙ୍କର କ୍ରୋଧ ଏଥିରେ ଶାନ୍ତ ହେଲାନାହିଁ । ସେ ସ୍ୱାମୀଙ୍କ ଉପରେ ବିରକ୍ତ ହୋଇ କହିଲେ—ତୁମେ କଅଣ ଜାଣ ନାହିଁ ଯେ ରବିନ୍ ହୁଡ଼ ନରହତ୍ୟାରେ ଅପରାଧୀ ! ତୁମେ ତା ସାଥିରେ ବନ୍ଧୁଭଳି ବ୍ୟବହାର କରୁଛ କପରି ? ତାକୁ ଛାଡ଼ ଦେବ କପରି ?

ଶେରଫ—ମୁଁ ପ୍ରତିଜ୍ଞା କରିଛି ଯେ ତାଂ ସଙ୍ଗେ ଆଉ ଲଗିବି ନାହିଁ ।

ସ୍ତ୍ରୀ—କିନ୍ତୁ ସେ ତମ ସାଙ୍ଗରେ ଯେ ଲଗିବ ନାହିଁ, କପରି ଜାଣିଲ ?

ଶେରିଫ—ସେ ଯାହାହେଉ ମୁଁ ଯାହା ଶପଥ କରିଛି, ତାହା ଅବଶ୍ୟ ପାଳିବି ।

ସ୍ତ୍ରୀ—ତେବେ ମୁଁ ଗୋଟିଏ ଉପାୟ ସ୍ଥିର କରିଛି । ତାହା କଲେ ତେଣିକି ତୁମେ ପ୍ରତିଜ୍ଞା ରକ୍ଷାକରିବାକୁ ବାଧ୍ୟ ହେବ ନାହିଁ ।

ଶେରିଫ—ରବିନ୍ ଯେପରି ନିଃସହାୟ ଅବସ୍ଥାରେ ମୋତେ ପାଇ

ସୁଦ୍ଧା ମୁକ୍ତ ଦେଇଥିଲ, ମୁଁ ତାକୁ ଅସହାୟ ଅବସ୍ଥାରେ ପାଇ ସୁଦ୍ଧା ମୁକ୍ତ ଦେଲେ ତେଣିକ ମୋର ପ୍ରତିଜ୍ଞାର ଅନ୍ୟଥା କରିପାରେଁ । ତା ପୂର୍ବରୁ କରି ପାରିବି ନାହିଁ ।

ସ୍ତ୍ରୀ— ଭଲ କଥା ! ତୁମେ ଯାହା କହୁଛ ତା ନ୍ୟାୟର କଥା । ତେବେ ଗୋଟିଏ କଥା କର । ନଟିଙ୍ଗହାମରେ ଗୋଟିଏ ବିରାଟ ପ୍ରତିଯୋଗିତା ହେବ ବୋଲି ଘୋଷଣା ଦିଅ । କେବଳ ଶର ମାରିବାରେ ପ୍ରତିଯୋଗିତା ହେବ ଓ ଯେ ଶ୍ରେଷ୍ଠ ବୋଲି ବିବେଚିତ ହେବ, ତାକୁ ବହୁମୂଲ୍ୟର ଗୋଟିଏ ପୁରସ୍କାର ଦିଆଯିବ ।

ଶେରିଫ—ତା ମୁଁ ଅକ୍ଳେଶରେ କରିପାରିବି । କିନ୍ତୁ ମୁଁ ଏହାର ଉଦ୍ଦେଶ୍ୟ ବୁଝିପାରୁନାହିଁ ।

ସ୍ତ୍ରୀ—ତାହା ହେଲେ ରବିନ୍ ହୁଡ଼ ନିଶ୍ଚୟ ଏହି ପ୍ରତିଯୋଗିତାରେ ଯୋଗ ଦେବ । ଆଜି ତୁମେ ତ ଜାଣ, ସେ ଧନୁର୍ବିଦ୍ୟାରେ କେଡ଼େ ପାରଦର୍ଶୀ । ତେଣୁ ସେ ନିଶ୍ଚୟ ପୁରସ୍କାର ନେବାକୁ ତୁମ ପାଖକୁ ଆସିବ । ତୁମର ସିପାହୀମାନେ ତାକୁ ଧରିବାକୁ ଯିବେ । କିନ୍ତୁ ତୁମେ ତାକୁ ସେମାନଙ୍କ ହାତରେ ନ ଧରାଇ ପଳାଇବାର ସୁବିଧା କରିଦେବ । ତାହା ହେଲେ ତୁମର ପ୍ରତିଜ୍ଞା ତୁଟିଯିବ ।

ଶେରିଫ୍—ଉପାୟଟି ମନ୍ଦ ନୁହେଁ । ସେ ମତେ ଧରି ଥରେ ଛାଡ଼ିଦେଇଥିଲା । ମୁଁ ତାକୁ ଧରି ସେହିପରି ଥରେ ଛାଡ଼ିଦେବି । ଏତିକ କଲାପରେ ମୋର ଆଉ ଦୋଷ ରହିବନାହିଁ । ତେଣିକି ମୁଁ ପୁଣି ତାକୁ ଧରିଆଣି ତାର ଅପରାଧ ପାଇଁ ଦଣ୍ଡ ଦେବି । ସେଥିରେ ଅନ୍ୟାୟ କଅଣ ?

ଶେରିଫ ସହରଯାକ ବିଜ୍ଞାପନ ଦେଲେ ଯେ ନଟିଂହାମରେ ଗୋଟିଏ ଧନୁର୍ବିଦ୍ୟାର ପ୍ରତିଯୋଗିତା ହେବ । ସହରର ସବୁ ଅଞ୍ଚଳର ଲୋକେ ଏହି ପ୍ରତିଯୋଗିତା କଥା ଶୁଣି ପାରିଲେ । ରବିନ ପାଖକୁ ଏ ଖବର ଯିବାରେ ଡେରି ହେଲାନାହିଁ । ରବିନ ଯେତେବେଳେ ଜାଣିଲା ଯେ ବିଜେତାକୁ ଗୋଟିଏ ରୁପାର ଶର ପୁରସ୍କାର ମିଳିବ, ସେ ସେଥିରେ ଯୋଗଦେବାକୁ ସ୍ଥିରକଲା । ସେ ତାର ସାଥୀମାନଙ୍କୁ କହିଲା, "ମୁଁ ନିଶ୍ଚୟ ଏଥିରେ ଯୋଗଦେବି । ରୁପାର ଶରଟି ପୁରସ୍କାର ପାଇଲେ ମୁଁ ତାକୁ ଆଣି ମେରିଆନ୍‌କୁ ଉପହାର ଦେବି ।"

ସାଥିମାନେ ଭାବିଲେ ଯେ ରବିନ୍ ଏଥିରେ ଯୋଗଦେବା ଭୟଙ୍କର ଦୁଃସାହସ ହେବ । ନଟିଂହାମରେ ଦେଖାଦେଲାକ୍ଷଣି ରବିନ୍ ଚିହ୍ନାପଡ଼ିବ ଓ ଶେରିଫର ଲୋକେ ତାକୁ ବନ୍ଦୀ କରିବେ । ତେଣୁ ସେମାନେ ରବିନକୁ ଏଥିରେ ଯୋଗ ନ ଦେବା ପାଇଁ ପରାମର୍ଶ ଦେଲେ । କିନ୍ତୁ ରବିନ୍ କହିଲା, "ମୁଁ ନିଶ୍ଚୟ ଯିବି । ଶେରିଫ ମୋର କିଛି ଅନିଷ୍ଟ କରିବେ ନାହିଁ ବୋଲି ଶପଥ କରି ଯାଇଛନ୍ତି । ସେ କଅଣ ନିଜ କଥା ରଖିବେ ନାହିଁ ?"

ସରଦାର ଯିନା ଶେରିଫର କଥା ଉପରେ ବିଶ୍ୱାସ କରିଥିଲେ କିନ୍ତୁ ତାଙ୍କ ସାଥୀମାନଙ୍କର ସେଥିରେ ବିଶ୍ୱାସ ନ ଥିଲା । ସେମାନେ ଜାଣିଥିଲେ ଯେ ଶେରିଫ ଜଣେ ବିଶ୍ୱାସଘାତକ ଲୋକ । ତାର କଥା ଉପରେ ନିର୍ଭର କରି ବିପଦକୁ ନିମନ୍ତ୍ରଣ କରିବା ଠିକ ହେବନାହିଁ ।

ମାତ୍ର ରବିନର ମନକୁ ଟଳାଇବା ସହଜ ନୁହେଁ । ତେଣୁ ସେ ସ୍ଥିରକଲା ଯେ ଛଦ୍ମବେଶଧରି ସେ ପ୍ରତିଯୋଗିତାରେ ଯୋଗ

ଦେବାକୁ ଯିବ । ପୁଣି ଭାବି ଭାବି ସେ ସାଥୀମାନଙ୍କୁ କହିଲା, "ଯଦି ତୁମ୍ଭମାନଙ୍କର ସନ୍ଦେହ ଯେ ଶେରଫ ବିଶ୍ୱାସଘାତକତା କରିବ, ତେବେ ଗୋଟିଏ କାମ କରାଯାଉ । ଚାଲ, ସମସ୍ତେ ଛଦ୍ମବେଶଧରି ପ୍ରତିଯୋଗିତାରେ ଯୋଗ ଦେବା ।"

ଯେଉଁଦିନ ପ୍ରତିଯୋଗିତା ହେବାର କଥା, ସେଦିନ ରବିନ ଓ ତାହାର ସାଥୀମାନେ ସମସ୍ତେ ଛଦ୍ମବେଶ ଧରି ନଟିଙ୍ଗହାମକୁ ଚାଲିଲେ । ସେମାନେ ଏପରି ବେଶ ବଦଳାଇଥିଲେ ଯେ କେହି ସେମାନଙ୍କୁ ଚିହ୍ନିବାର ଉପାୟ ନ ଥିଲା । ସମସ୍ତେ ନିଜ ନିଜର ଧନୁ ଓ ଶର ଧରି ଯେତେବେଳେ ସହର ପାଖରେ ପହଞ୍ଚିଲେ, ସେତେବେଳେ ଦେଖିଲେ ଯେ ସହରର ବହୁସଂଖ୍ୟକ ଲୋକ ଗୋଟିଏ ବଡ଼ ପଡ଼ିଆ ଆଡ଼କୁ ଚାଲିଛନ୍ତି । ସେହି ପଡ଼ିଆରେ ପ୍ରତିଯୋଗିତା ହେବାର କଥା ।

ପଡ଼ିଆର ଏକ ପ୍ରାନ୍ତରେ ଗୋଟିଏ ସରୁ କୁଶ ପୋତା ଯାଇଥିଲା । ଏହାହିଁ ଲକ୍ଷ୍ୟ । ଏହାର ଦୁଇପାଖରେ ଲୋକେ ଛିଡ଼ାହୋଇ ଦେଖିବାର ବ୍ୟବସ୍ଥା କରା ହୋଇଥିଲା ।

ମୋଟଉପରେ ଆଠଶହ ପ୍ରତିଯୋଗୀ ଥିଲେ । ରବିନ ଓ ତାହାର ସାଥୀମାନେ ସହଜରେ ଏମାନଙ୍କ ଭିତରେ ମିଶିଗଲେ । ପୁଣି ଏମାନେ ସମସ୍ତେ ଛଦ୍ମବେଶ ପିନ୍ଧିଥିବାରୁ କେହି ଏମାନଙ୍କର ପ୍ରକୃତ ପରିଚୟ ପାଇ ପାରି ନ ଥିଲେ । ଯେତେବେଳେ ପ୍ରତିଯୋଗିତା ଆରମ୍ଭ ହେଲା, ରବିନ୍ ଦେଖିଲା ଯେ ସମସ୍ତେ ଏଥିରେ ଯୋଗ ଦେବାରେ କିଛି ଲାଭନାହିଁ । ତେଣୁ କେବଳ ରବିନ ଓ ଲକ୍ଷ୍ୟ-ଭେଦରେ ପାରଦର୍ଶୀ ଚାରିଜଣ ସାଥୀ ଏଥିରେ ଯୋଗଦେବା ସ୍ଥିର ହେଲା । ଅନ୍ୟମାନେ ଆବଶ୍ୟକ ହେଲେ ସାହାଯ୍ୟ କରିବାକୁ ଦର୍ଶକମାନଙ୍କ ମଧ୍ୟରେ ମିଶି ରହିଲେ ।

ପ୍ରତିଯୋଗୀ ସଂଖ୍ୟା ବହୁତ ହୋଇଥିବାରୁ ଅନେକବେଳ-ଯାଏ ପ୍ରତିଯୋଗିତା ଚାଲିଲା । ଜଣକ ପରେ ଜଣେ ଅକୃତକାର୍ଯ୍ୟ ହୋଇ ପ୍ରତିଯୋଗିତାରୁ ବିଦାୟ ନେବାକୁ ବାଧ୍ୟ ହେଲେ । ଶେଷରେ ମାତ୍ର ପାଞ୍ଚଜଣ ରହିଲେ । ଏମାନେ ହେଉଛନ୍ତି ରବିନ ଓ ତାର ଚାରିଜଣ ସାଥୀ । କିନ୍ତୁ ସହରର କୌଣସି ଦର୍ଶକ ଏମାନଙ୍କୁ ଚିହ୍ନି ପାରି ନ ଥିଲେ ।

ଶେରିଫ ସଭାପତି ଆସନରେ ବସି ଚାରିଆଡ଼କୁ ଚାହିଁ ଚାହିଁ ଭାବିଲେ, "ଏତେ ଅର୍ଥବ୍ୟୟ ଓ ଏତେ ସମୟ ବୃଥାଗଲା । ରବିନ୍ ଭୟକରି ଏଠାକୁ ଆସିଲାନାହିଁ । ମୋ ସ୍ତ୍ରୀର କିଛି ବୁଦ୍ଧିନାହିଁ । ତା କଥାରେ ଏତେ ଆୟୋଜନ କରି କ୍ଷତିଗ୍ରସ୍ତ ହେବା ସାର ହେଲି "

ପ୍ରକୃତରେ ରବିନ୍ ସେତେବେଳକୁ ଶେରିଫଙ୍କଠାରୁ ମାତ୍ର କେତେ ଗଜ ଦୂରରେ ରହିଥିଲା ।

ବର୍ତ୍ତମାନ ଏହି ପାଞ୍ଚଜଣ ନିଜର କୃତିତ୍ୱ ଦେଖାଇଲେ । ଜଣକ ପରେ ଜଣେ ହାରିଯାଇ ଶେଷରେ ଜଣେ ମାତ୍ର ରହିଲା । ଦର୍ଶକମାନେ ହାତ ତାଳି ଦେଇ ତାର ପ୍ରଶଂସା କଲେ । ସେ ଯେ ରୁପାର ଶର ପୁରସ୍କାର ପାଇବାକୁ ଯୋଗ୍ୟ ଏଥିରେ' କିଛି ସନ୍ଦେହ ନାହିଁ । କିନ୍ତୁ ଏହି ଲୋକଟି ଯେ ରବିନ୍ ତାହା କେହି ଜାଣିପାରି ନ ଥିଲେ ।

ପ୍ରତିଯୋଗିତା ଶେଷରେ ରବିନ୍ ଶେରିଫଙ୍କ ହାତରୁ ପୁରସ୍କାର ଆଣିବାକୁ ଗଲା । ରୂପାଶରଟି ରବିନ୍‌ର ହାତକୁ ବଢ଼ାଇ ଦେଲା ବେଳେ ସେ ତାର ମୁହଁକୁ ଭଲରୂପେ ଦେଖିବାର ସୁବିଧା ପାଇଲେ । ସେ ଜାଣି ପାରିଲେ ଯେ ଏହି ପୁରସ୍କାର ବିଜେତା ହେଉଛି ରବିନ୍ । ସେ ରବିନ୍‌କୁ ଶରଟି ଦେବା ସଙ୍ଗେ ସଙ୍ଗେ ତାଙ୍କର ଜଣେ ଲୋକକୁ ଚୁପ୍ କରି କଅଣ କହିଲେ । ହଠାତ୍ ଜଣେ ଚିତ୍କାରକଲା, "ଏଇ ହେଉଛି ରବିନ୍ ହୁଡ଼ । ତାକୁ ଧର, ବାନ୍ଧ ।"

ସିପାହୀମାନେ ରବିନ୍ ହୁଡ଼ ପାଖକୁ ଧାଇଁ ଆସୁ ଆସୁ ଶେରିଫ ରବିନ୍ ହୁଡ଼୍‌କୁ ଚୁପ୍‌କରି କହିଲେ, "ନିଜ ଜୀବନ ନେଇ ପଳାଅ । ମୁଁ ମୋର ପ୍ରତିଜ୍ଞା ରଖି ଛାଡ଼ି ଦେଉଛି । ତୁମର ଋଣ ଏତିକରେ ସୁଝିଗଲା ।"

ରବିନ୍ ଏବେ ସବୁ କୌଶଳ ବୁଝି ପାରିଲା । ସେ ହଠାତ୍ ପୋଷାକ ଭିତରୁ ତାର ଶିଙ୍ଘାଟି ବାହାରି କରି ତିନଥର ଫୁଙ୍କି ଦେଲା । ସଙ୍ଗେ ସଙ୍ଗେ ପଡ଼ିଆର ଦର୍ଶକମାନଙ୍କ ଭିତରେ ଥିବା ତା ସାଥୀମାନେ ବାହାରି ପଡ଼ି ଶେରିଫଙ୍କ ସୈନ୍ୟମାନଙ୍କୁ ଆକ୍ରମଣକଲେ । ଦୁଇପକ୍ଷରୁ ପ୍ରବଳ ଯୁଦ୍ଧ ଚାଲିଲା । ଶେରିଫଙ୍କ ସିପାହୀମାନେ ପରାସ୍ତ ହୋଇ ଯିବାରୁ ରବିନ ତାର ସାଥୀମାନଙ୍କୁ କହିଲା, "ଖୁବ୍ ହେଲାଣି, ଚାଲ, ଆମ ବଣକୁ ପଳାଇ ଯିବା ।"

ସରଦାରଙ୍କ ହୁକୁମ ପାଇଲାକ୍ଷଣି ରବିନର ସାଥୀମାନେ ତା ପଛେ ପଛେ ଧାଇଁଲେ । କିନ୍ତୁ ନଟିଙ୍ଗହାମ ସହରଠାରୁ ବହୁଦୂର ନ ଯାଉଣୁ ଶେରିଫଙ୍କର ଜଣେ ସୈନ୍ୟ ପଛରୁ ଏକ ଶର ମାରିଲା । ଶରଟି ଯାଇ ଲିଟିଲ୍ ଜନର ଆଣ୍ଠୁକୁ ଭେଦକରି ରହିଲା । ସେ ସେହିଠାରେ ତଳେ ପଡ଼ିଗଲା । ରବିନ୍ ଦଉଡ଼ି ଆସି ଶରଟି ଟାଣି ଆଣି ବାହାର କରିବାକୁ ବସିଲା । ଏଣେ ଶେରିଫଙ୍କ ସୈନ୍ୟମାନେ ପଛେ ପଛେ ଧାଇଁଥାନ୍ତି ।

ଲିଟିଲ୍ ଜନ୍ ଏ ଅବସ୍ଥା ଦେଖି ରବିନ୍‌କୁ କହିଲା, "ସରଦାର, ମୋ ପାଇଁ ଏପରି ସମୟ ନଷ୍ଟକଲେ ଚଳିବ ନାହିଁ । ମୋତେ ଧରିନେଲେ ଶେରିଫ ଫାଶି ଦେଇ ମାରିବ । ତୁମେ ବରଂ ତମ ଖଣ୍ଡାଟି ମୋ ଛାତିରେ ଭୁଷି ଦିଅ ଯେ ମୁଁ ଶାନ୍ତିରେ ମରିବି । ତୁମେ ମଧ୍ୟ ରକ୍ଷା ପାଇ ପାରିବ ।"

ରବିନ୍ ଏ କଥା ନ ଶୁଣିଲା ପରି ଜଣେ ସାଥୀକୁ ଡାକିଲା । ଦୁହେଁ ଯାକ ଲିଟିଲ୍ ଜନ୍‌କୁ ଟେକି ଧରି ଦଉଡ଼ିବାକୁ ଲାଗିଲେ ।

ଏଣେ ଶେରଫ୍‌ଙ୍କର ସିପାହୀମାନେ ସେମାନଙ୍କ ପଛରେ ଦୌଡ଼ୁଥାନ୍ତି । ରବିନ୍ ଜାଣିପାରିଲା ଯେ ଆଉ ଅଳ୍ପ ସମୟ ଭିତରେ ସେମାନେ ପାଖରେ ପହଞ୍ଚିଯିବେ । ସେତେବେଳେ ତିନହେଁ ଯାକ ଶତ୍ରୁ ହାତରେ ଧରା ପଡ଼ିବେ । ରବିନ୍ ତାର ସାଥୀ ଜଣକୁ କହିଲା, "ଏଠାରେ ରକ୍ଷାପାଇବାର ଗୋଟିଏ ମାତ୍ର ଉପାୟ ଅଛି । ଚାଲ, ସାର୍ ରିଚାର୍ଡ଼ଙ୍କ ଗଡ଼ ଭିତରକୁ ପଳାଇଯିବା । ଶେରଉଡ୍ ବଣ-ଯାଏ ପଳାଇବାକୁ ସମୟ ନାହିଁ । ମୁଁ ନିଶ୍ଚୟ କରି ଜାଣେ ଯେ ସାର ରିଚାର୍ଡ ଆମ୍ଭମାନଙ୍କୁ ଆଶ୍ରୟ ଦେଇ ନିରାପଦରେ ରଖିବେ ।"

ଏହିପରି ପରାମର୍ଶକରି ସେମାନେ ସାର ରିଚାର୍ଡ଼ଙ୍କ ଗଡ଼କୁ ଧାଇଁଲେ । ବାଟରେ ଅନେକ ଘାସ ପଡ଼ିଆ ପାରି ହେବାକୁ ହେଲା । ସେଥିରେ ପୁଣି ଜଣେ ଆହତ ଲୋକକୁ ଟେକି ଟେକି ନେବା ଯେ କେଡ଼େ କଷ୍ଟକର ତାହା ବର୍ଣ୍ଣନା କରିବା କଠିନ । ଯାହା ହେଉ, ସେମାନେ ଗଡ଼ରେ ସିପାହୀମାନଙ୍କ ଆଗରୁ ପହଞ୍ଚିଗଲେ । ରିଚାର୍ଡ ଅତି ଆନନ୍ଦରେ ଗଡ଼ ଭିତରେ ଏମାନଙ୍କୁ ସ୍ଥାନ ଦେଲେ । ଲିଟିଲ-ଜନ୍‌ର ଚିକିତ୍ସାର ମଧ୍ୟ ବନ୍ଦୋବସ୍ତ ହେଲା ।

ଏଣେ ଶେରିଫଙ୍କର ସିପାହୀମାନେ ଦେଖିଲେ ଯେ ଶିକାର ଖସି ଯାଇଛି । ସାର ରିଚାର୍ଡ଼ଙ୍କ ସୁଦୃଢ଼ ପଥର୍‌ରେ ତିଆରି ଗଡ଼ ଭିତରେ ପଶିବାକୁ ଚେଷ୍ଟାକରିବା ବୃଥା । ସେମାନେ ହତାଶ ହୋଇ ପୁଣି ନଟିଙ୍ଗହାମ୍‌କୁ ଫେରି ଆସିଲେ ।

ରବିନ୍ ସାର ରିଚାର୍ଡ଼ଙ୍କ ଆଗରେ ସେଦିନର ସମସ୍ତ ଘଟଣା ବର୍ଣ୍ଣନା କରି ପୁରସ୍କାର ପାଇଥିବା ରୁପାର ଶରଟି ଦେଖାଇଲା । ତହୁଁ ସାର୍ ରିଚାର୍ଡ଼ ପ୍ରଶଂସା କରି କହିଲେ, "ମେରିଆନ ଏହି ଶରଟି ପାଇଲେ ଅତ୍ୟନ୍ତ ଆନନ୍ଦିତ ହେବ ଓ ତୁମର ପ୍ରଶଂସା କରିବ ।"

ଯଥା ସମୟରେ ରବନ୍ ଓ ତାହାର ଦୁଇସାଥୀ ସେଠାରୁ ଶେର-ଉଡ୍‌କୁ ଚାଲିଗଲେ । ରବନ୍ ପୁରସ୍କାର ପାଇଥିବା ରୂପାର ଶରଟି ନିଜ ସ୍ତ୍ରୀକୁ ଉପହାର ଦେଲା । ସେ ଏଥିପାଇଁ ସ୍ୱାମୀର ବହୁତ ପ୍ରଶଂସା କଲା । ମେରିଆନ୍ ଏହି ଶରଟିକୁ ଅତି ମୂଲ୍ୟବାନ୍ ମନେକରି ସର୍ବଦା ପାଖେ ପାଖେ ରଖୁଥିଲା ଓ ଅନ୍ୟ କାହାକୁ ଦେଉ ନ ଥିଲା ।

— — —

—୨୧—

# ରବିନ୍ ହୁଡ଼୍ ଧରା ପଡ଼ିଲା

ଦିନେ ସକାଳେ ରବିନ୍ ହୁଡ଼୍ ନଟିଙ୍ଗହାମକୁ ଯିବାକୁ ବାହାରିଲା । ଏହା ଶୁଣି ଲିଟିଲ ଜନ୍ ଉଇଲ ସ୍କାର୍ଲେଟ ଏବଂ ଆଉଜଣକୁ କହିଲା, "ଆଜି ସର୍ଦ୍ଦାର ନଟିଙ୍ଗହାମ୍‌କୁ ଯିବାକୁ ବସିଛନ୍ତି । ତାଙ୍କର ଏପରି କରିବା ଘୋର ମୂର୍ଖତା । ଉଇଲ୍ ସ୍କାର୍ଲେଟ ଉତ୍ତରକଲା, "ମୂର୍ଖତା କାହିଁକି ହେବ ? ସେ ଅନେକ ଥର ଏଥିମଧ୍ୟରେ ନଟିଙ୍ଗହାମ୍‌କୁ ଗଲେଣି ।" ଲିଟିଲ ଜନ୍ କହିଲା, "ସେ ଅନେକ ଥର ଯାଇଛନ୍ତି ସତ, କିନ୍ତୁ ପ୍ରତ୍ୟେକ ଥର ଗୋଟାଏ କିଛି ଛଦ୍ମବେଶ ଧରି ଯାଇଛନ୍ତି । କିନ୍ତୁ ଆଜି ସେ ଛଦ୍ମ ବେଶରେ ନ ଯିବେ ବୋଲି ସ୍ଥିର କରିଛନ୍ତି ।"

ଛଦ୍ମବେଶ ଧରିବାରେ ରବିନ୍ ଅଦ୍ୱିତୀୟ । ଜଙ୍ଗଲରେ ତା'ର ଆଡ୍ଡାରେ ନାନା ଛଦ୍ମବେଶର ଉପକରଣ ରହିଥାଏ । ଯେତେବେଳେ ଯେଉଁ ବେଶ ଉପଯୋଗୀ, ସେ ସେହି ବେଶ ପିନ୍ଧେ । ଏହି ଉପକରଣଗୁଡ଼ିକ ଥିଲେହେଁ ନିତାନ୍ତ ଦରକାର ନ ପଡ଼ିଲେ, ସେ ଛଦ୍ମବେଶ ଧାରଣ କରିବାକୁ ଇଚ୍ଛା କରୁ ନ ଥିଲା ।

ସେଦିନ ରବିନ୍ କୌଣସି ଛଦ୍ମବେଶ ନ ପିନ୍ଧି ନଟିଙ୍ଗହାମ୍‌ର ଗିର୍ଜାକୁ ଯିବାକୁ ସ୍ଥିର କରିଥିଲା । ଲିଟିଲ୍ ଜନ୍‌ର ମତରେ ଏପରି ସ୍ଥାନକୁ ଯିବାକୁ ହେଲେ ଛଦ୍ମବେଶ ନିତାନ୍ତ ଦରକାର । କିନ୍ତୁ ରବିନ୍ କୌଣସି ଛଦ୍ମବେଶ ବ୍ୟବହାର ନ କରିବ ବୋଲି ସେଦିନ ସ୍ଥିର କରିଥିଲା । ଆହୁରି ମଧ୍ୟ ଲିଟିଲ୍ ଜନ୍ ପ୍ରସ୍ତାବ ଦେଇଥିଲା ଯେ,

ରବିନ ସଙ୍ଗରେ କେତେଜଣ ସାଥୀ ଜଙ୍ଗଲ ଭିତରେ ଯିବେ । କିନ୍ତୁ ରବିନ୍ ସେଥିରେ ମଧ୍ୟ ରାଜି ହୋଇ ନ ଥିଲା । ଶେଷରେ ଲିଟିଲ ଜନ୍ କହିଲା, "ମୁଁ ତୁମ୍ଭର ବନ୍ଧୁ । ମୋ କଥା ମାନି ଆଜି ଏକୁଟିଆ ଯାଅନାହିଁ ।" ରବିନ୍ ଉତ୍ତର ଦେଲା, "ତୁମେ ମୋର ବନ୍ଧୁ ସତ, ତୁମର କଣ ମୋର ବାହୁବଳରେ ବିଶ୍ୱାସ ନାହିଁ ? ଆହୁରି ମଧ୍ୟ ଶେରିଫ୍ ମୋ ସାଥିରେ ବିରୋଧ କରିବେ ନାହିଁ ବୋଲି ପ୍ରତିଜ୍ଞା କରିଛନ୍ତି । ସେ କଥା କଣ ଭୁଲିଗଲ ?"

ରବିନ୍ ଶେରିଫ୍‌ଙ୍କ କଥାରେ ବିଶ୍ୱାସ କରିଥିଲା ସତ, କିନ୍ତୁ ତାର ସାଥୀମାନେ କେହି ବିଶ୍ୱାସ କରି ନ ଥିଲେ ଯେ ଶେରିଫ ସେମାନଙ୍କୁ ଯାହା ଇଚ୍ଛା ତାହା କରିବାପାଇଁ ଛାଡ଼ିଦେବ ।

ରବିନ୍‌କୁ କୌଣସି ମତେ ନିବର୍ତ୍ତାଇ ହେଲାନାହିଁ । ରବିବାର ଦିନ ସକାଳୁ ସେ ନଟିଙ୍ଗହାମ୍ ଯିବାପାଇଁ ବାହାରି ପଡ଼ିଲା ।

ଦୈବାତ ସେଦିନ ଜଣେ ମଙ୍କ୍ ଗୀର୍ଜାକୁ ଆସିଥିଲେ । ଥରେ ରବିନ୍ ଏହି ମଙ୍କ୍‌ଙ୍କଠାରୁ ତାଙ୍କର ଟଙ୍କା ପଇସା ଛଡ଼ାଇ ନେଇ-ଥିଲା । ତେଣୁ ରବିନ୍‌କୁ ଗୀର୍ଜାରେ ଦେଖିବାମାତ୍ରେ ସେ ଶେରିଫ୍‌ଙ୍କ ପାଖକୁ ଖବର ଦେଇ ପଠାଇଲା ।

ଶେରିଫ୍ ବଡ଼ ଅଡୁଆରେ ପଡ଼ିଲେ । ଯଦି ସେ ରବିନ୍‌କୁ ଧରିବା ପାଇଁ କିଛି ଚେଷ୍ଟା ନ କରନ୍ତି, ତାହାହେଲେ ରାଜା ସେ କଥା ଜାଣିବେ ଓ ରାଜାଙ୍କ ପ୍ରତି ତାଙ୍କର କର୍ତ୍ତବ୍ୟହାନି ଘଟିଛି ବୋଲି ସେ ଦଣ୍ଡ ପାଇବେ । ତେଣୁ ସେ ବାଧ୍ୟହୋଇ ରବିନ୍‌କୁ ଧରିବା ପାଇଁ ଦଳେ ସୈନ୍ୟ ଗୀର୍ଜାକୁ ପଠାଇଲେ । ଅବଶ୍ୟ ସେ ନିଜ ପ୍ରତିଜ୍ଞା କଥା ମନେ ପକାଇଲେ । କିନ୍ତୁ ଭାବିଲେ, "ଯେ ଯେପରି ମୋତେ ଥରେ ଛାଡ଼ି ଦେଇଥିଲା, ମୁଁ ମଧ୍ୟ ଥରେ ତାକୁ ଛାଡ଼ି ଦେଇଛି । ଏତିକରେ ମୋର ପ୍ରତିଜ୍ଞା ପାଳନ ହୋଇଗଲା । ଏଣିକି ତାକୁ ଧରି ନେବାରେ ଦୋଷ କ'ଣ ?"

ପ୍ରାର୍ଥନା ଅଧାବେଳକୁ ଗିର୍ଜାର ଦ୍ୱାର ପାଖରେ ବଡ଼ ଗୋଳମାଳ ଶୁଣାଗଲା । ରବନ୍ ଦେଖି ପାରିଲା ଯେ ଶେରିଫ୍‌ଙ୍କର ଦଳେ ସୈନ୍ୟ ତା ଆଡ଼କୁ ମାଡ଼ି ଆସୁଛନ୍ତି । ସେ ସଙ୍ଗେ ସଙ୍ଗେ ଯୁଦ୍ଧ କରିବାକୁ ପ୍ରସ୍ତୁତ ହୋଇଗଲା । ସେ ଚିତ୍କାର କଲା —ଏ ରାଜ୍ୟରେ ଜଣେ ଲୋକ ଶାନ୍ତିରେ ଗିର୍ଜାକୁ ମଧ୍ୟକୁ ଆସି ପାରିବ ନାହିଁ ?

ରବନ୍‌କୁ ସୈନ୍ୟମାନଙ୍କ ସଙ୍ଗେ ଭୟଙ୍କର ଯୁଦ୍ଧ କରିବାକୁ ହେଲା । ଅନେକ ସୈନ୍ୟ ରବନ ହାତରେ ମଲେ । ରବନ୍ ଜଣେ ମନୁଷ୍ୟ । ସୈନ୍ୟ ସଂଖ୍ୟା ବହୁତ । ଅବଶେଷରେ ସେମାନେ ରବନ୍‌କୁ ମାଡ଼ିବସି ଧରିଲେ । ବନ୍ଦୀହୋଇ ରବନ ଚିନ୍ତାକଲା; "ଲିଟିଲ ଜନ୍‌ର କଥା ନ ଶୁଣି ଏପରି ଆସିବା ମୋର ସମ୍ପୂର୍ଣ୍ଣ ଭୁଲ୍ ହୋଇଛି ।"

ସିପାହୀମାନେ ରବନ୍‌କୁ ଟାଣିଟାଣି ଶେରିଫ୍‌ଙ୍କ ଘରକୁ ନେଇଗଲେ । କିନ୍ତୁ ନିଜର ପ୍ରତିଜ୍ଞା କଥା ସ୍ମରଣ କରି ରବନ୍‌କୁ ଦେଖା ଦେବା ପାଇଁ ତାଙ୍କୁ ଲାଜ ମାଡ଼ିଲା । ଦୂରରେ ଥିବା ଗୋଟିଏ ଅନ୍ଧକୂପମଧ୍ୟରେ ରବନ୍‌କୁ ବନ୍ଦୀ କରି ରଖିବା ପାଇଁ ସେ ଆଦେଶ ଦେଇ ପଠାଇଲେ । ସେଠାରେ ତାର ହାତ ଓ ଗୋଡ଼ରେ ବେଡ଼ି ପଡ଼ିବାର ବ୍ୟବସ୍ଥା ହେଲା । ଶେରିଫ ଭାବିଲେ ଯେ ରବନ୍ ହୁଡ୍‌ପରି ଜଣେ ଜଣାଶୁଣା ଅପରାଧୀ ଧରାପଡ଼ିଥିବା ଖବର ରାଜାଙ୍କୁ ଜଣାଇଦେବା ଉଚିତ ଓ ତାଙ୍କ ଆଦେଶ ଅନୁସାରେ ରବନ୍ ହୁଡ୍‌କୁ ଦଣ୍ଡ ଦେବାକୁ ହେବ ।

ରାଜାଙ୍କୁ ଏହି ସମ୍ବାଦ ଦେବାପାଇଁ ଶେରିଫ୍ ଜଣେ ବିଶ୍ୱାସୀ ଲୋକ ଖୋଜୁଥିଲେ । ଏହି ସମୟରେ ସେହି ମଙ୍କ୍ ଆସି କହିଲେ, "ମୁଁ ନିଜେ ଓଏଷ୍ଟ୍‌ମିନଷ୍ଟରକୁ ଯାଇ ରାଜାଙ୍କୁ ଏ ସମ୍ବାଦ ଜଣାଇଦେବି ।" ଶେରିଫ୍ ଆନନ୍ଦରେ ଏହି ପ୍ରସ୍ତାବରେ ସ୍ୱୀକୃତ ହେଲେ ।

ମର୍କ୍ ଆଉ ବିଳମ୍ବ ନ କରି ସେହିଦିନ ଗୋଟିଏ ଘୋଡ଼ାରେ ବସି ଓଏଷ୍ଟମିନ୍‌ଷ୍ଟର ଅଭିମୁଖେ ବାହାରି ପଡ଼ିଲେ ।

ସେହିଦିନ ଲିଟିଲ୍ ଜନ୍ ଆଉ ଜଣେ ସାଥୀ ମଚ୍‌କୁ ଡାକି କହିଲା, "ଆଜି ସକାଳେ ସର୍ଦ୍ଦାର ନଟିଙ୍ଗହାମ୍‌କୁ ଯାଇଥିଲେ । ଏତେବେଳକୁ ତାଙ୍କର ଫେରି ଆସିବାର କଥା । କାହିଁକି ଆସିଲେ ନାହିଁ ।" ମଚ୍ ଉତ୍ତର କଲା, "ମୁଁ ମଧ୍ୟ ସେହି କଥା ଭାବୁଥିଲି । ତାଙ୍କ ବିଷୟରେ ମୋର କାହିଁକି ଆଶଙ୍କା ହେଉଛି ।" ତହୁଁ ଲିଟିଲ୍ ଜନ୍ କହିଲା, "ତେବେ ମୁଁ ନିଜେ ନଟିଙ୍ଗହାମ୍ ଯାଉଛି । ଯଦି ତାଙ୍କର କିଛି ଅସୁବିଧା ହୋଇଥାଏ, ତେବେ ଜାଣି ପାରିବି ।" ମଚ୍ କହିଲା, "ତୁମେ ଏକା ଯିବ କାହିଁକି ? ମୁଁ ମଧ୍ୟ ଯିବି । ଚାଲ,ଦୁହେଁଯାକ ସଙ୍ଗ ହୋଇଯିବା ।"

ଏହିପରି ବିଚାରି ସେ ଦୁହେଁ ନଟିଙ୍ଗହାମ୍‌କୁ ପଡ଼ିଥିବା ରାସ୍ତାରେ ଚାଲିଲେ । ବାଟରେ ସେମାନଙ୍କର ଜଣେ ପରିଚିତ ବନ୍ଧୁଙ୍କର ଭେଟ ହେଲା । ସେଠାରୁ ସେମାନେ ଖବର ପାଇଲେ ଯେ ରବିନ୍‌କୁ ଶେରିଫ୍‌ଙ୍କର ସିପାହୀମାନେ ଧରି ବନ୍ଦୀକରି ରଖିଅଛନ୍ତି । ବନ୍ଧୁଙ୍କ ସହିତ କଥାବାର୍ତ୍ତା ଚାଲିଥିବାବେଳେ, ସେମାନେ ଦେଖିଲେ ଯେ ଜଣେ ମଙ୍କ ଘୋଡ଼ାରେ ବସି ନଟିଙ୍ଗହାମ୍ ଆଡ଼ୁ ଆସୁଛି । ତାହାକୁ ଦେଖିଲାକ୍ଷଣି ଜନ୍ ପଚାରିଲା, "ମଙ୍କ୍ ମହାଶୟ ! ରବିନ୍ ହୁଡ୍ ତ ଧରା ପଡ଼ିଲା । କିନ୍ତୁ ତା'ପରେ ଖବର କଣ ?"

ମଙ୍କ୍ ଜଣକ ରଜାଙ୍କପାଖକୁ ସମ୍ବାଦଦେବାକୁ ଯାଉଥିବାରୁ ଖୁବ୍ ଆନନ୍ଦିତ ଥିଲା । ସେ ରବିନ୍ ହୁଡ୍‌କୁ ଧରିବାରେ ବହୁତ ସାହାଯ୍ୟକରି ଥିବାରୁ ପ୍ରଶଂସା ପାଇବ ବୋଲି କହିବାକୁ ଲାଗିଲା । "ଯାହାହେଉ ଏତେଦିନେ ଦୁଷ୍ଟ ରବିନ୍ ହୁଡ୍ ଧରାପଡ଼ିଲା । ତା ଅପରାଧର ଉପଯୁକ୍ତ ଦଣ୍ଡ ପାଇବ । ଯେ ଗିର୍ଜାରେ ଲୋକଙ୍କ

ଭିତରେ ମିଶି ଯାଉଥିଲା । ମୁଁ ପ୍ରଥମେ ତାକୁ ଚିହ୍ନିପକାଇଲି । ସ୍ୱୟଂ ରାଜା ତାର ଦଣ୍ଡାଦେଶ କରିବେ । ସେଥିପାଇଁ ସମ୍ବାଦ ଦେବାକୁ ମୁଁ ରାଜାଙ୍କ ପାଖକୁ ଯାଉଛି ।"

ଲିଟିଲ୍ ଜନ୍ ମନକଥା ମନରେ ରଖି କହିଲା, "ସାବାସ୍, ଆପଣ ଖୁବ୍ ଭଲ କାମ କରିଛନ୍ତି । ଆପଣ ଯେ ଏକୁଟିଆ ଏତେଦୂର ଯିବାକୁ ବସିଛନ୍ତି ସେଥିରୁ ଆପଣଙ୍କ ସାହସ ବେଶ୍ ଜଣାପଡ଼ୁଛି । କିନ୍ତୁ ରବିନ୍ ହୁଡ୍ ସିନା ଧରା ପଡ଼ିଛି ; ତା ଦଳର କେହି ଯଦି ଆପଣଙ୍କୁ ଆକ୍ରମଣ କରେ, ତେବେ ଆପଣ କଣ କରିବେ ?"

ମଙ୍କ୍ ଉତ୍ତରକଲେ, "ସେପରି ଭୟ କରିବାର କିଛି କାରଣ ନାହିଁ । ଦେଖୁଛ, ମୁଁ ଧର୍ମ ସମ୍ପ୍ରଦାୟର ଜଣେ ଲୋକ । ମୁଁ ଯେ, ରାଜାଙ୍କ ପାଖକୁ ଖବର ନେଇ ଯାଉଛି ସେ କଥା କିଏ କାହିଁକି ସନ୍ଦେହ କରିବ ?" ଲିଟିଲ୍ ଜନ୍ କହିଲା, "ଆପଣ ଯାହା କହିଲେ, ସେ କଥା ସତ । କିନ୍ତୁ କଥା ଅଛି ଯେ 'ଭୁଣ୍ଡ ବାଇଦ ପଦସ୍ତେ କୋଶ ।" ଆମେ ଦୁହେଁ ଆପଣଙ୍କୁ ସାହାଯ୍ୟ କରିବାକୁ ପ୍ରସ୍ତୁତ । କିନ୍ତୁ ଆମେ ବିଶେଷ କଣ କରିପାରିବୁ ? କେବଳ ଆପଣଙ୍କ ସାଥିରେ କିଛିଦୂର ଯାଇ ନିରାପଦରେ ଛାଡ଼ି ଦେଇ ଆସିବୁ ।"

ବାଟରେ ରବିନ୍ ହୁଡ୍‌ର ସାଥିମାନଙ୍କ ସଙ୍ଗେ କାଳେ ଦେଖାହେବ, ସେଥିପାଇଁ ମଙ୍କ୍‌ଙ୍କ ମନରେ ଭୟ ପଶି ଯାଇଥିଲା । ତେଣୁ ସେ ଆନନ୍ଦରେ ଏ ଦୁଇଜଣଙ୍କର ସାହାଯ୍ୟ ଗ୍ରହଣ କଲେ । ଦୁହେଁଯାକ ପ୍ରାୟ ଅଧକୋଶଯାଏ ତାଙ୍କ ପଛେ ପଛେ ଚାଲିଲେ । ଏଣିକି ରାସ୍ତା ଖୁବ୍ ନିଘୁଞ୍ଚିଆ ବୋଧହେଲା । ମଚ୍ ଲିଟିଲ୍ ଜନ୍‌ର କାନରେ ଚୁପ୍ ଚୁପ୍ କରି କହିଲା, "ଏହିଠାରେ ମଙ୍କ୍‌ଙ୍କ ଯାତ୍ରା ଶେଷ କରିଦେବା ।"

ହଠାତ୍ ଦୁହେଁଯାକ ତାଙ୍କୁ ଆକ୍ରମଣ କଲେ । ଲିଟିଲ୍ ଜନ୍ ଡେଇଁପଡ଼ିଲା ଏବଂ ତାଙ୍କୁ ଘୋଡ଼ାଉପରୁ ତଳେ ପକାଇ ଦେଇ ତାଙ୍କ ପିଠିଉପରେ ବସିଗଲା । ତାଙ୍କ ପଗଡ଼ିକୁ ଭିଡ଼ିଆଣି ଆଖି ଓ ମୁହଁ ବାନ୍ଧି ପକାଇଲା । ଏହାପରେ ମଚ୍‌କୁ ଜବରଦସ୍ତ କରି ଦୁହେଁଯାକ ତାଙ୍କର ହାତ ଧରି ଶେରଉଡ଼ ଜଙ୍ଗଲ ଭିତରକୁ ନେଇଗଲେ ଓ ଆଡ୍ଡାରେ ପହଞ୍ଚି କେତେଜଣ ସାଥୀଙ୍କ ଜମା କରିଦେଲେ ।

———

୨୨

# ରବିନ ହୁଡ୍‌ର ଉଦ୍ଧାର

ରବିନ୍‌ହୁଡ଼ ବନ୍ଦୀହେବାର ସପ୍ତାହକ ପରେ ଦିନେ ସନ୍ଧ୍ୟା ସମୟରେ ଦୁଇଜଣ ପଥିକ ଆସି ଶେରିଫଙ୍କ ଘରେ ପହଞ୍ଚିଲେ ।

ରବିନ୍ ହୁଡ଼ ବନ୍ଦୀ ହେବା ଦିନୁଁ ଶେରିଫଙ୍କର ଚିନ୍ତା ବଢ଼ି ଯାଇଥିଲା । ତାଁର ସାଥୀମାନେ ତାକୁ ଉଦ୍ଧାର କରିବାକୁ ଚେଷ୍ଟା କରିଥିଲେହେଁ ସେଥିରେ ସଫଳ ହୋଇ ପାରି ନ ଥିଲେ । ଏଣେ ରାଜାଙ୍କ ଆଦେଶ ପହଞ୍ଚି ନ ଥିବାରୁ ସେ ରବିନ୍‌କୁ କୌଣସି ଦଣ୍ଡ ଦେଇ ପାରୁ ନ ଥାନ୍ତି । ଏହିପରି ଚିନ୍ତାକୁଳ ଥିବା ସମୟରେ ଦୁଇ-ଜଣ ପଥିକ ଆସିଥିବାରୁ ଶୁଣି ଶେରିଫ ଟିକିଏ ଆଶ୍ୱସ୍ତ ହେଲେ । ସେ ପଥିକ ଦୁହିଁଙ୍କୁ ନିଜର ଖାଇବା ଘରକୁ ଡାକି ଆଣିଲେ ।

ଲିଟିଲ୍ ଜନ୍ ବଡ଼ ଅସୁବିଧାରେ ପଡ଼ିଲା । ସେ ରିନଲ୍‌ଡ଼ ନାମରେ ପରିଚୟ ଦେଇ କେତେକ ଦିନ ଶେରିଫଙ୍କ ପାଖେ ଚାକିରି କରିଥିଲା । ଏବେ ତାକୁ ପାଖରୁ ଦେଖିଲେ ସେ ନିଶ୍ଚୟ ଚିହ୍ନି ପାରିବେ । ତେଣୁ ସେ ଯଥାସମ୍ଭବ ଦୂରରେ କାନ୍ଥ ଛାଇରେ ନିଜକୁ ରଖିଥାଏ ।

ମଚ୍ ରାଜାଙ୍କର ଖଣ୍ଡିଏ ଆଦେଶପତ୍ର ନିଜ ପୋଷାକ ଭିତରୁ କାଢ଼ି ଶେରିଫଙ୍କ ହାତକୁ ବଢ଼ାଇ ଦେଲା ।

ଶେରିଫ— ଯେଉଁ ମଙ୍କ୍ ମୋର ପତ୍ର ନେଇ ରାଜାଙ୍କ ପାଖକୁ ଯାଇଥିଲେ ସେ କୁଆଡ଼େ ରହିଲେ ?

ମର୍—ରାଜା ତାଙ୍କ ଉପରେ ଏତେ ସନ୍ତୁଷ୍ଟ ଯେ ତାଙ୍କୁ ଲଣ୍ଡନରେ ନିଜ ପାଖରେ ରଖି ଆମ ଦୁଇଜଣଙ୍କୁ ପତ୍ର ଦେଇ ପଠାଇ ଅଛନ୍ତି ।

ଶେରଫ ଆଉ କିଛି ନ ପଚାରି ରାଜାଙ୍କ ଆଦେଶପତ୍ରଟି ପଢ଼ିଲେ । ସେଥିରେ ଲେଖାଥିଲା ଯେ ରାଜା ସ୍ୱୟଂ ରବନ୍‌ର ବିଚାର କରି ଦଣ୍ଡଦେବାକୁ ଇଚ୍ଛା କରିଅଛନ୍ତି । ତେଣୁ ତାକୁ ଲଣ୍ଡନକୁ ପଠାଇ ଦେବାକୁ ହେବ ।

ଯାହାହେଉ ରବନ୍ ପରି ଗୋଟାଏ ବିପଜ୍ଜନକ ବନ୍ଦୀର ଦାୟିତ୍ୱରୁ ମୁକ୍ତ ମିଳିବ ବୋଲି ଶେରଫ ଟିକିଏ ଖୁସି ହେଲେ । କିନ୍ତୁ ତାକୁ କିପରି ଲଣ୍ଡନକୁ ପଠାଇବା ଉଚିତ, ଏ ବିଷୟରେ ପରାମର୍ଶ କରିବାକୁ ସେ କେତେଜଣ ବନ୍ଧୁଙ୍କୁ ନିମନ୍ତ୍ରଣ କଲେ । ଚାକରମାନେ ଚାଲିଗଲେ । ହଠାତ୍ କ୍ଲିଟିଲ ଜନ୍ ତାର ଗୋଟାଏ ହାତ ଶେରଫଙ୍କ ମୁହଁ ଭିତରେ ଭର୍ତ୍ତି କରିଦେଲା । ତାଙ୍କର ଚିତ୍କାର କରିବାର ଉପାୟ ରହିଲା ନାହିଁ । ସଙ୍ଗେ ସଙ୍ଗେ ମର୍ ଉତ୍ତମରୂପେ ତାଙ୍କୁ ଚଉକି ଉପରେ ବାନ୍ଧି ପକାଇଲା । ଏହିପରି ତାଙ୍କ ମୁହଁ ବନ୍ଦ କରି ଓ ବାହାରିବାର ବାଟ ବନ୍ଦ କରି ଦୁହେଁଯାକ ଗଡ଼ଭିତରୁ ବାହାରି ପଡ଼ିଲେ ।

ରବନ୍ ବନ୍ଦୀ ହେବାଦିନଠାରୁ ଅନ୍ଧକୂପରେ ରଖାଯିବା ଦିନଠାରୁ ନଗରରେ ଏପରି କଡ଼ା ପହରାର ବ୍ୟବସ୍ଥା କରାଯାଇଥିଲା ଯେ ରବନ୍‌ର କୌଣସି ଲୋକ ସହର ମଧ୍ୟରେ ପଶି ପାରି ନ ଥିଲା । ଏବେ କ୍ଲିଟିଲ୍ ଜନ୍ ଓ ମର୍ ସହର ଭିତରେ ପଶି ରବନ୍‌କୁ ଉଦ୍ଧାର କରିବାର ଚେଷ୍ଟାରେ ଲାଗିଲେ । ଆଗେ ରବନ୍ ବନ୍ଦୀ ହୋଇଥିବା ଅନ୍ଧକୂପ କେଉଁଠି ତାହା ଜାଣିବା ଦରକାର ।

ସେମାନେ ସହରର ଗୋଟାଏ ପ୍ରାନ୍ତରେ ପହଞ୍ଚିଲେ । ଏ ସ୍ଥାନଟି ସହରର ପାଚୀର ଓ ଗଡ଼ର ମଧ୍ୟରେ ଅବସ୍ଥିତ । ଲିଟିଲ ଜନ ଦେଖି ପାରିଲା ଯେ ସେଠାରୁ ଗୋଟିଏ ଗୁହା ଭିତରକୁ ଯିବାର ବାଟ ପଡ଼ିଛି । ଏହି ଗୁହାର ଶେଷରେ ରବିନ୍ ଗୋଟିଏ ଅନ୍ଧକୂପ ମଧ୍ୟରେ ବନ୍ଦୀ ଥିଲା ।

ଗୁହା ମୁହଁରେ ଗୁଡ଼ାଏ ଗହଳିଆ ବୁଦା ଥିଲା । ସେଥିରେ ମଚ୍ ଝୁଣ୍ଟି ପଡ଼ିଲା । ଏହା ଫଳରେ ଟିକଏ ଶବ୍ଦ ହେଲାକ୍ଷଣି ଜଣେ ପ୍ରହରୀ ଗୁହା ମୁହଁକୁ ଦୌଡ଼ି ଆସିଲା । ସେ କିଛି ଶବ୍ଦ କରିବା ପୂର୍ବରୁ ଲିଟିଲ୍ ଜନ୍ ତାକୁ ଏପରି ଧକ୍କା ଦେଲା ଯେ ସେଇଠାରେ ସେ ଅଚେତ ହୋଇ ପଡ଼ିଗଲା ।

ଦୁହେଁଯାକ ଗୁହା ଭିତରେ ପଶିଲେ; ମାତ୍ର ଭିତରଟା ଅନ୍ଧକାରମୟ ହୋଇଥିବାରୁ ସେମାନେ ବେଗରେ ଯାଇ ପାରିଲେ ନାହିଁ । ଶେଷରେ ସେମାନେ ଗୋଟାଏ ଦ୍ୱାର ପାଖରେ ପହଞ୍ଚିଲେ । ଲିଟିଲ୍ ଜନ୍ ଫାଟକରେ ଏପରି ଧକ୍କା ମାରିଲା ଯେ ସେଇଟା ଭାଙ୍ଗିଗଲା । ତା ପରେ କେତେଗୁଡ଼ିଏ ପାହାଚ ଉପରକୁ ଯାଇଥିଲା । ଶେଷ ପାହାଚରେ ଜଣେ ପ୍ରହରୀ ଠିଆ ହୋଇଥିଲା । ଲିଟିଲ ଜନ୍ ତଳ ପାହାଚରେ ରହି ଡାକିଲା, "ହେ ପହରିବାଲା !"

ପ୍ରହରୀ ଉପରେ ଜଳୁଥିବା ଗୋଟାଏ ମଶାଲ ଧରି ତଳକୁ ଆସିଲାକ୍ଷଣି ଲିଟିଲ୍ ଜନ୍ ତାକୁ ଗୋଟାଏ ଧକ୍କାରେ ତଳେ ପକାଇ ଦେଲା । ସେ ଉଠିପାରିଲା ନାହିଁ ।

ଉପରେ କେତେ ଜଣ କଥାବାର୍ତ୍ତା ହେବାର ଶୁଣାଗଲା । ତା ସଙ୍ଗେ ପାଦଶବ୍ଦ ମଧ୍ୟ ଶୁଣାଯାଉଥାଏ । ଲିଟିଲ ଜନ୍ ଉଚ୍ଚସ୍ୱରରେ ପହରିବାଲାକୁ ଡାକିବା ହେତୁ ଅନ୍ୟ ପ୍ରହରୀମାନେ ଉଠି ପଡ଼ିଥିଲେ । ଅତି ଅଳ୍ପ ସମୟ ଭିତରେ କାର୍ଯ୍ୟ ସାଧନ କରିବା ଦରକାର ବୋଲି

ଲିଟିଲ୍ ଜନ୍ ବୁଝିପାରିଲା । ସେ ହଠାତ୍ ଚିତ୍କାର କଲା, "ଧାଇଁ ଆସ; ରବିନ୍ ହୁଡ଼ ପଳାଇଲା ।" ପ୍ରହରୀମାନେ ଦଉଡ଼ି ଆସିଲେ ।

ଜଣେ ପ୍ରହରୀ କହିଲା, "କୁଆଡ଼େ ଗଲା ?"

ଲିଟିଲ୍ ଜନ୍ ଏପରି ଏକ ଅନ୍ଧାରୁଆ ଜାଗାରେ ଛିଡ଼ା ହୋଇ ଥିଲା ଯେ ପ୍ରହରୀ ତାକୁ ଦେଖି ପାରିଲା ନାହିଁ । ସେ କହିଲା, "ରବିନ୍ ହୁଡ଼ ପାହାଚବାଟେ ତଳକୁ ଆସି ଗଡ଼ରୁ ଆସିଥିବା ଗଳିରେ ଖସି ପଳାଇଲା । ପ୍ରହରୀ ସେହି ବାଟେ ଦଉଡ଼ିଲା । ଆଉ ଜଣେ ପ୍ରହରୀ ମଧ୍ୟ ତା ପଛେ ପଛେ ଦଉଡ଼ିଲା । କିନ୍ତୁ ଆଉ ଜଣେ ପ୍ରହରୀ କିଛିଦୂର ଆସି ପୁଣି ଅନ୍ଧକୂପର ଦ୍ୱାର ପାଖକୁ ଫେରିଯାଇ ଧକ୍କା ମାରିଲା ।

"କିଏ ? କିଏ ? କିଏ ଧକ୍କା ମାରୁଛି ?" [ପାଠ ଅଂଶ: "କିଏ ? କଥା କଅଣ ? କିଏ ଧକ୍କା ମାରୁଛି ?"]

ଏହି କେତୋଟି ପଦ ଲିଟିଲ୍ ଜନ୍ ଶୁଣିପାରିଲା । ସେ ବୁଝି ପାରିଲା ଯେ ଏହା ରବିନ୍‌ର ସ୍ୱର ।

ଏହି ସମୟରେ ପ୍ରହରୀଟି କହିଲା, "କିଏ ପଳେଇ ଯାଇଥିଲେ ଯାଇଥିବ । ମାତ୍ର ରବିନ୍‌ହୁଡ଼ ପଳେଇ ଯାଇନାହିଁ ।"

ଲିଟିଲ ଜନ୍ ପ୍ରହରୀକୁ ଏପରି ଧକ୍‌କା ଦେଲା ଯେ ସେ ତଳେ ପଡ଼ିଗଲା । ତା ମୁଣ୍ଡ ଭୁମିଗଲା । ଆଖିରୁ ଜଳୁଜଳୁଆ ବାହାରିଗଲା । ପ୍ରଥମ ପ୍ରହରୀ ଗଲାବେଳେ ଚାବିପେନ୍ଥାଟି ତଳେ ରଖି ଦେଇଥିଲା । ଜନ ଚାବିଟିକ ଧରି କବାଟର ତାଲା ଫିଟାଇ ଅନ୍ଧକୂପ ଭିତରେ ପଶିଗଲା । ରବିନ୍ କହିଲା, "ସାବାସ୍; ଖାଲି ମୋ ହାତ ଓ ଗୋଡ଼ର ବେଡ଼ି ଖୋଲିଦିଅ । ତେଣିକି ମୁଁ ଯାହା କରିବାର କଥା କରିବ ।"

ପରେ ଚାବିପେନ୍ଥା ନେଇ ଗୋଟିକ ପରେ ଗୋଟିଏ ପରୀକ୍ଷା କରି ରବିନ୍‌ର ହାତ ଓ ଗୋଡ଼ରୁ ବେଡ଼ି ଫିଟାଇ ଦେଲା । ରବିନ୍ ଛିଡ଼ାହୋଇ ଭିଡ଼ି ମୋଡ଼ି ହେଲା । ବନ୍ଧନରୁ ମୁକ୍ତି ପାଇ ସେ ନୂଆ ବଳ ପାଇଲା ପରି ମନେ କଲା ।

ହଠାତ୍ କେତେଜଣ ଲୋକ ଦଉଡ଼ ଦଉଡ଼ ଆସିବାର ଶବ୍ଦ ଶୁଣାଗଲା । ରବନ୍ ଓ ତାର ସଙ୍ଗୀଦୁହେଁ କାନ୍ଥକୁ ଲାଗି ଲୁଚି ରହିଲେ । ଅନ୍ଧକୂପର ଭିତରଟା ଅନ୍ଧାରୁଆ ହୋଇଥାଏ । ରବନ୍ ଦେଖିଲା ଯେ ଜଣକ ପରେ ଜଣେ ଏହିପରି ଚାରିଜଣ ପ୍ରହରୀ ସେଥିରେ ପ୍ରବେଶ କଲେ । ପ୍ରତ୍ୟେକଙ୍କ ହାତରେ ଗୋଟିଏ ଗୋଟିଏ ଖଣ୍ଡା ।

ସେମାନେ ଘରଭିତରର ଖୋଜ ଦେଖିବା ପୂର୍ବରୁ ରବନ୍ ତାର ସଙ୍ଗୀ ଦୁହିଁଙ୍କୁ ଟାଣିଆଣି ବାହାରକୁ ଚାଲିଆସିଲା ଓ ସଙ୍ଗେ ସଙ୍ଗେ କବାଟ ବନ୍ଦକରି ଦେଇ ସେଥିରେ ତାଲା ପକାଇ ଦେଲା । ଏହିପରି ଚାରିଜଣ ଯାକ ପ୍ରହରୀ ବନ୍ଦୀହୋଇ ରହିଲେ । କିଏ କିପରି ସେମାନଙ୍କୁ ହଠାତ୍ ବନ୍ଦୀ କଲା, ସେମାନେ ବୁଝି ପାରିଲେ ନାହିଁ ।

ଏବେ ଏହି ଅନ୍ଧକୂପରୁ ବାହାରି ଯିବାପାଇଁ ରବନ୍ ଓ ଲିଟିଲ୍ ଜନ୍ ଦୁହିଁଙ୍କ ଭିତରେ ପରାମର୍ଶ ହେଲା । ଏଥିମଧ୍ୟରେ ପ୍ରାୟ କୋଡ଼ିଏଜଣ ସିପାହୀ ସହର ପୁଲିସ୍‌କୁ ସତର୍କ କରାଇ ପ୍ରତ୍ୟେକ ଫାଟକ ଜଗିବାପାଇଁ ଆଦେଶ ପାଇଥିଲେ । ଦୁହେଁଯାକ ସାହସକରି ଏହି ସିପାହୀମାନଙ୍କ ସଙ୍ଗେ ଠିଣି ବାହାରିବାକୁ ଚେଷ୍ଟାକଲେ ।

ଦୁହେଁଯାକ ଏହିପରି ଯାଉଥିବା ସମୟରେ ଗୋଟାଏ ଦୁର୍ଘଟଣା ଘଟିଲା । ଜଣେ ସୈନ୍ୟ ଗୋଳମାଳର କାରଣ ଜାଣିବା ପାଇଁ ଦୌଡ଼ୁଥିଲା । ଦୈବାତ୍ ଲିଟିଲ୍ ଜନ୍ ସହିତ ତାହାର ଧକ୍କା ଲାଗିଲା । କିନ୍ତୁ ଜନ୍ ମନେକଲା ଯେ, ତାକୁ ଚିହ୍ନିପାରି ସେ ତାକୁ ଧରିବାକୁ ଆସୁଛି । ତେଣୁ ସେ ହଠାତ୍ ତାହାକୁ ଧରି ତଳେ ଫିଙ୍ଗିଦେଲା । ସେ କହିଲା, "ଏ କଣ ? ମତେ କାହିଁକି ମାରୁଛ ?"

ରବର୍ଟ୍ ଅବସ୍ଥା ବୁଝିନେଇ ସଙ୍ଗେ ସଙ୍ଗେ ଉତ୍ତରକଲା, "ନା ଭାଇ ! ମୁଁ ଭାବଥିଲି ଯେ ତୁମେ ତା ସାଥିରେ ବଳକଷିବାକୁ ଯାଉଥିଲ ।" ଏଣେ ଲିଟିଲ ଜନ ମଧ୍ୟ ତାର ଭ୍ରମ ବୁଝିପାରିଥିଲା । ତେଣୁ ସେ ମଧ୍ୟ ସଙ୍ଗେ ସଙ୍ଗେ କହିଲା, "ଭାଇ ! ମୋତେ କ୍ଷମାଦିଅ ।"

ଏଣିକି ଯେଉଁ ସୈନ୍ୟମାନେ ଏ ଦୁହିଁଙ୍କୁ ଦେଖିଲେ ସେମାନେ ମନେକଲେ ଯେ, ଏ ଦୁଇଜଣ ଓ୍ୱେକଫିଲ୍ଡରୁ ଆସିଥିବା ସୈନ୍ୟ-ମାନଙ୍କ ଭିତରୁ କେହି ହୋଇଥିବେ । ଶେରିଫ୍ ସହରର ଜଗୁଆଳି ବ୍ୟବସ୍ଥା ଦୃଢ଼ କରିବାକୁ ଓ୍ୱେକ୍‌ଫିଲ୍ଡରୁ ସୈନ୍ୟ ମଗାଇଥିବା କଥା ସେମାନେ ଜାଣିଥିଲେ ।

ଏବେ ରବର୍ଟ୍ ହୁଡ୍ ପୁଣି ମୁକ୍ତ ।

———

# ଦୁଇ ଉଇଲ୍

ଥରେ ରବର୍ଟ୍ ହୁଡ଼ ନଟିଙ୍ଗହାମ୍ ରାସ୍ତାରେ ଯାଉ ଯାଉ ଦେଖିଲା ଯେ, ଦୁଇଜଣ ଲୋକ ତାହାଆଡ଼କୁ ଆସୁଅଛନ୍ତି । ରବର୍ଟ୍ ହୁଡ଼ ସେମାନଙ୍କୁ ଦେଖି ନମ୍ରଭାବରେ କହିଲା, "ଆଜ୍ଞା, ନମସ୍କାର ।" ସେ ଦୁହିଁଙ୍କମଧ୍ୟରୁ ଜଣେ କହିଲା, "ଯେଉଁମାନେ ଏପରି ନମ୍ରତା ଦେଖାନ୍ତି ପାଦତଳେ ପଡ଼ନ୍ତି, ସେମାନଙ୍କୁ ମୁଁ ଘୃଣାକରେ । ସେମାନେ କୌଣସି କାର୍ଯ୍ୟର ନୁହନ୍ତି ।"

ଲୋକଟିର ଏହି କଥା ଶୁଣି ରବର୍ଟ୍ ମନେ ମନେ ଖୁବ୍ ରାଗିଯାଇ କହିଲା, "ଭଦ୍ରତା ଦେଖାଇବାରେ କିଛି ଖରଚ ପଡ଼େନାହିଁ ।" ଏହାଶୁଣି ସେହି ଲୋକଟି ରବର୍ଟ୍ ଆଡ଼କୁ କ୍ରୁଦ୍ଧ ଦୃଷ୍ଟିରେ ଚାହିଁଲା । ବୋଧହୁଏ ରବର୍ଟ୍‌ର ଏହି କଥା ଶୁଣିବାକୁ ସେ ଆଶାକରି ନ ଥିଲା । ସେ କହିଲା, "ଏପରି ଔଦ୍ଧତ୍ୟ ଯେବେ ଆଉ ଦେଖାଉ, ତେବେ ତୋ ଗଣ୍ଡିରୁ ମୁଣ୍ଡଟାକୁ ଅଲଗା କରିଦେବି ।" ରବର୍ଟ୍ କହିଲା, "ବେଶ୍ । ତୁମେ ଚେଷ୍ଟାକରିବାରେ ମୋର ଆପତ୍ତି ନାହିଁ ।"

ଏପରି ଦୁଇଜଣ ଲୋକଙ୍କୁ ଦେଖି ସୁଦ୍ଧା ରବର୍ଟ୍‌ର ଆଦୌ ଭୟ ନ ଥିଲା । କେତେ ଦୁଷ୍ଟଲୋକଙ୍କ ହାତୁଡ଼ରେ ସେ ଅନେକଥର ପଡ଼ିଛି । କିନ୍ତୁ କେବେହେଲେ ହାରି ଯାଇନାହିଁ । ଏବେ ଚିନ୍ତାକରିବ କାହିଁକି ?

ସେହି ଦୁଇଜଣଙ୍କ ଭିତରୁ ଅନ୍ୟଲୋକଟି କହିଲା, "ସାବଧାନ, ଆମେ କିଏ ଜାଣ ? ଆମକୁ ହିୟୁରଫୋର୍ଡ଼ର ବିଶପ୍ (୧୨) ପଠାଇଛନ୍ତି । ଆମେ ଗୋଟିଏ ଖବର ନେଇ ନଟିଙ୍ଗହାମର ଶେରିଫଙ୍କ ପାଖକୁ ଯାଉଛୁଁ । ବାଟରେ ଆମକୁ ବାଧା ଦେବାକୁ ତୋର ସାହସ ହେଉଛି କିପରି ?"

ରବିନ୍ ହସିହସି ଉତ୍ତର ଦେଲା, "କିନ୍ତୁ ମୁଁ ତ ବାଧାଦେଇ ସାରିଛି । ଖାଲି ସେତିକି ନୁହେଁ ଆପଣମାନଙ୍କୁ ଆଜି ରାତିଟି ମୋ ସାଥିରେ ରହିବାକୁ ହେବ ।"

ଲୋକ ଦୁଇଜଣ ହସି ଉଠିଲେ । ଏହି ସମୟରେ ଲିଟିଲ ଜନ ମହାକ୍ରୁଦ୍ଧ ହୋଇ ରବିନକୁ ଚୁପ୍‌କରି ପଚାରିଲା, "ଏ ଲୋକ ଦୁଇଟା କଣ କିଛି ଗୋଳମାଳ କରୁଛନ୍ତି ? ରବିନ୍ ହୁଡ଼୍ କହିଲା, "ଏ ଦୁଇଜଣଙ୍କୁ ଆମ ସାଥିରେ ଆଜି ରାତିଟି କଟାଇବାକୁ ହେବ ।" ଏତିକି ଶୁଣିଲା ମାତ୍ରେ ଲିଟିଲ ଜନ୍ ଦୁର୍ବୃତ୍ତଙ୍କ ଭିତରୁ ଜଣକୁ ଧରି ପକାଇଲା ଓ ରବିନ୍ ଅନ୍ୟଜଣକୁ ଧରିଲା । ବଳରେ ଓ କୌଶଳରେ ରବିନ୍ ଓ ଲିଟିଲ୍ ଜନ୍ ପାଖରେ ଏ ଲୋକ ଦୁଇଟାଙ୍କର ବଞ୍ଚିବାର କୌଣସି ଆଶା ନଥିଲା । ସେମାନେ ଚୁପ୍‌କରି ଏ ଦୁର୍ବୃତ୍ତଙ୍କ ସହିତ ଶେର୍‌ଉଡ଼୍‌କୁ ଗ୍ଲଲିଲେ ।

ବାଟରେ ଗଲାବେଳକୁ ରବିନ୍ ମନେ ମନେ କିପରି କୌତୁକ କରିବ ଚିନ୍ତା କରୁଥାଏ । ଆଡ୍‌ଡାରେ ପହଞ୍ଚିଲାକ୍ଷଣି, ଏହି ଲୋକ ଦୁଇଟିଙ୍କୁ ରବିନ୍‌ର ସାଥୀମାନଙ୍କ ସହିତ ଖାଇବାକୁ ଦିଆଗଲା ଓ ଅନ୍ୟମାନଙ୍କ ପରି ଏଦୁହେଁ ମଧ୍ୟ ଗଛ ମୂଳେ ମାଟି ଉପରେ ଶୋଇ

---

(୧୨) ବିଶପ୍—କୌଣସି ଅଞ୍ଚଳର ପ୍ରଧାନ ଧର୍ମଯାଜକ । ଏହାଙ୍କ ଅଧୀନରେ ଅନେକ ଧର୍ମଯାଜକ ଥାଆନ୍ତି ।

ବାକୁ ବାଧ୍ୟ ହେଲେ । ସକାଳ ହେଲାକ୍ଷଣି ରବନ୍ ଉଇଲ ସ୍କାର୍ଲେଟ ଓ ଜମିଦାର ପୁଅ ଉଇଲ୍ ଏ ଦୁହିଁଙ୍କୁ ଡାକ କହିଲା, "ମୁଁ ତୁମ ଉପରେ ଗୋଟିଏ ଗୁରୁତର କାର୍ଯ୍ୟର ଭାର ଦେବାକୁ ଚାହେଁ । ପାରିବତ ?" ଦୁହେଁଯାକ ଆଗ୍ରହରେ ତାହା କରିବାକୁ ବାହାରିଲେ । ତହୁଁ ରବନ୍ କହିଲା, "ଏ ଦୁଇଜଣ ଲୋକ ଶେରିଫଙ୍କ ପାଖକୁ ଯେଉଁ ଚିଠି ନେଇ ଯାଉଅଛନ୍ତି, ସେ ଚିଠିଟି ମୁଁ ପଢ଼ିଛି । ହିୟର-ଫୋର୍ଡର ବିଶପ୍ ଶେରିଫ୍‌ଙ୍କଠାରୁ ଦୁଇଶହ ପାଉଣ୍ଡ ଧାରପାଇଁ ଚିଠି ଲେଖିଛନ୍ତି । ତାଙ୍କର ଟଙ୍କା ନିହାତି ଦରକାର । ତୁମେ ଦୁହେଁଯାକ ଏ ଦୁଇଜଣକ ବଦଳରେ ତାଙ୍କ ପୋଷାକ ପିନ୍ଧି ଶେରିଫଙ୍କ ପାଖକୁ ଚିଠିଟି ନେଇଯିବ ଓ ଟଙ୍କା ନେଇ ଆସିବ । ଏପରି କଲେ ବିଶପ୍ ଗୋଟିଏ ଶିକ୍ଷା ପାଇଯିବେ । ଶେରିଫ୍ ମଧ୍ୟ ଅକଲ ପାଇଯିବେ ।" ଏହାଶୁଣି ଦୁହେଁଯାକ ଆନନ୍ଦରେ ନାଚିଉଠିଲେ ।

ବାଟୋଇ ଦୁହିଁଙ୍କର ପୋଷାକ ଆଣି ଏ ଦୁହେଁ ପିନ୍ଧିଲେ ଓ ଚିଠି ନେଇ ଶେରିଫ୍‌ଙ୍କ ଦୁର୍ଗରେ ପହଞ୍ଚିଲେ । ସେତେବେଳକୁ ପ୍ରାୟ ତିନି ଦିନପ୍ରହର । ସେମାନେ ଦୁର୍ଗ ଭିତରକୁ ଯାଇ ଶେରିଫ୍‌ଙ୍କୁ ଚିଠିଟି ବଢ଼ାଇ ଦେଲେ । ଚିଠି ପଢ଼ି ଶେରିଫ୍ କହିଲେ, 'ଦୁଇଶହ ପାଉଣ୍ଡ । ଏତେଟଙ୍କା କାହିଁ ? ସବୁ ଏକାଠି କଲେ ମଧ୍ୟ ଏତେ ହେବକି ନା ସନ୍ଦେହ ।" ଉଇଲ୍ ସ୍କାର୍ଲେଟ କହିଲା, "ତେବେ ଆପଣ ଯେତିକି ଦେଇ ପାରିବେ, ସେତିକି ଦେଇଥାନ୍ତୁ । ତାଙ୍କର ଟଙ୍କାର ବିଶେଷ ଦରକାର । ଖାଲି ହାତରେ ଫେରିଲେ ସେ ମନ ଦୁଃଖ କରିବେ ।"

ଶେରିଫ୍ ନାନା ଆଡ଼ୁ ସଂଗ୍ରହ କରି ଦେଢ଼ଶହ ପାଉଣ୍ଡ ଆଣି ଏମାନଙ୍କ ହାତରେ ଦେଲେ ଓ କହିଲେ, "ବିଶପ୍‌ଙ୍କୁ କହିବ ଯେ, ଏତିକିମାତ୍ର ଟଙ୍କା ହୋଇ ପାରିଲା । ଗଲାବେଳେ ଖୁବ୍ ସାବଧାନରେ ଯିବ । ବାଟରେ ଶେରଉଡ଼ ପାଖରେ ଗଲାବେଳେ ବିଶେଷ ସାବଧାନ

ରହିବ । ସେହି ବଣରେ ରବିନ୍ ହୁଡ଼୍‌ର ଦଳେ ଲୋକ ଅଛନ୍ତି । ସେମାନେ ଜାଣି ପାରିଲେ ତୁମଠାରୁ ଟଙ୍କା ଛଡ଼ାଇ ନେବାକୁ ଟିକିଏ ହେଲେ କୁଣ୍ଠିତ ହେବେ ନାହିଁ ।"

ୱିଲ୍ କହିଲା, "ଆମେ ସେ କଥା ଶୁଣିଛୁ । ସେମାନଙ୍କ ହାତରେ ଧରାପଡ଼ି ଟଙ୍କା ହରାଇବାର ଭୟ ଆମର ନାହିଁ ।" ଦୁହେଁଯାକ ଶେରିଫ୍‌ଙ୍କୁ ଧନ୍ୟବାଦ ଜଣାଇ ବାହାରିଲେ । ଗଡ଼ ଫାଟକ ପାଖରେ ସେମାନେ ପହଞ୍ଚି ଦେଖନ୍ତି ଏଣୁ ନିଜେ ବିଶପ୍ ଗଡ଼ ଭିତରକୁ ପଶୁଛନ୍ତି । ବିଶପ୍‌ଙ୍କର ଟଙ୍କା ଏତେ ଦରକାର ଥିଲା ଯେ ଚିଠିଦେଇ, ଦୁଇଜଣ ଲୋକ ପଠାଇ ସେ ନିଶ୍ଚିନ୍ତ ରହି ପାରିଲେ ନାହିଁ । ତେଣୁ ସେ ନିଜେ ଶେରିଫ୍‌ଙ୍କ ପାଖକୁ ଆସି ଟଙ୍କା ନେବାକୁ ସ୍ଥିର କରିଥିଲେ । ଦୁଇ ୱିଲ ଅତିଶୀଘ୍ର ପଳାଇବାକୁ ଚେଷ୍ଟା କଲେ କିନ୍ତୁ ସେମାନେ ବେଶୀ ଦୂର ଯିବା ଆଗରୁ ବିଶପ୍ ଶେରିଫଙ୍କ ପାଖରେ ପହଞ୍ଚିଗଲେ । ଏବେ ଦୁହେଁଯାକ ସ୍ପଷ୍ଟ ଜାଣିପାରିଲେ ଯେ ଯେଉଁ ଦୁଇଜଣ ଟଙ୍କା ନେଇଗଲେ, ସେମାନେ ଅସଲ ଠକ । ଶେରିଫ୍ କେତେଜଣ ସିପାହୀ ନେଇ ଠକଙ୍କୁ ଧରିବାକୁ ବାହାରି ପଡ଼ିଲେ ।

ୱିଲ୍ ଦୁହେଁ ଦେଖିଲେ ଯେ ଶେରଉଡ୍ ଜଙ୍ଗଲପାଏ ପଳାଇ ପାରିବା ଅସମ୍ଭବ । ପହଞ୍ଚିବା ଆଗରୁ ସେମାନେ ଧରା ପଡ଼ିଯିବେ । ସାର୍ ରିଚାର୍ଡ଼ଙ୍କର ଗଡ଼ ନିକଟରେ ଥିବାରୁ ଦୁହେଁଯାକ ସେହିଠାକୁ ଦୌଡ଼ି ପଳାଇଲେ । ସାର ରିଚାର୍ଡ ଦୁହିଁଙ୍କୁ ରବିନ୍ ହୁଡ଼୍‌ର ଲୋକ ଜାଣି ଆନନ୍ଦରେ ଆଶ୍ରୟ ଦେଲେ । ରବିନ୍ ହୁଡ ଯେ ଦିନେ ତାଙ୍କୁ ସାହାଯ୍ୟ କରିଥିଲା, ସେ କଥା ସେ ଭୁଲିଯିବେ କିପରି ?

ଅଳ୍ପ ସମୟ ମଧ୍ୟରେ ଶେରିଫ ମଧ୍ୟ ଗଡ଼ ପାଖରେ ପହଞ୍ଚି ଗଲେ । ସେ ନିଜର ସିପାହୀମାନଙ୍କୁ କହିଲେ, "ଗଡ଼ର ଫାଟକ ଆକ୍ରମଣ କର ।" କେଉଁଠାରୁ କିପରି ଆକ୍ରମଣ କଲେ ସୁବିଧା ହେବ, ତାହା ସେ ଚେଷ୍ଟା କଲେ ।

ଜଙ୍ଗୀ ଉପରେ ଗୋଟିଏ କାଠ ପୋଲ ଥିଲା । ପୋଲର ପଟା ଗୁଡ଼ିକ କେତୋଟି ଖୁଣ୍ଟା ଉପରେ ରଖାଯାଇ କଣ୍ଟାପିଟା ହୋଇଥିଲା । ସାର୍ ରବର୍ଟ ଜାଣି ପାରିଲେ ଯେ ଶେରଫ ନଷ୍ଟପୁ ଗଡ଼ ଆକ୍ରମଣ କରିବେ । ସେ କଣ୍ଟାଗୁଡ଼ିକ ଖୋଲି ନେଇଗଲେ ।

ଶେରଫ ଓ ତାଙ୍କ ଲୋକେ ପ୍ରଥମେ ଏହି ପୋଲଆଡ଼କୁ ଆସିଲେ । ଆଗରେ ଶେରଫ୍ ଓ ବଣପ ।

ଶେରଫ ଦେଖିଲେ ଯେ ପୋଲର ପଟା ଠିକ୍ ସ୍ଥାନରେ ଅଛି । ବିପଦର ଆଶଙ୍କା ଥିବାବେଳେ ପୋଲ ଉଠାଇ ନିଆଯାଇ-ଥାଏ । ତେଣୁ ସେ ଭାବିଲେ ଯେ ସାର୍ ରବର୍ଟ ସେମାନଙ୍କ ଆକ୍ରମଣ ବିଷୟରେ ଆଦୌ ସନ୍ଦେହ କରିନାହାନ୍ତି । ଅତର୍କିତ ଆକ୍ରମଣରେ ସେ ସହଜେ ବିଜୟୀ ହେବେ । ଶେରଫ, ବଣପ ଓ କେତେଜଣ ସୈନ୍ୟ ଏ ପାଖେ ପଟା ଉପରକୁ ଉଠି କିଛି ଦୂର ଯିବା ବେଳକୁ ରବର୍ଟଙ୍କ ଲୋକେ ପଟାର ଆର ମୁଣ୍ଡ ଟେକି ଦେଲେ । ପଟା ଗୁଡ଼ିକ ଖୁଣ୍ଟ ଉପରୁ ଖସି ପଡ଼ିଲା । ପଟା ଉପରକୁ ଯେଉଁମାନେ ଉଠିଥିଲେ, ସମସ୍ତେ ପାଣିରେ ପଡ଼ି ଉବୁଟବୁ ହେଲେ । କେବଳ ଶେରଫ ଓ ବଣପ ଆଗରେ ଥିବାରୁ ପାଣିରେ ପଡ଼ିଗଲେ ନାହିଁ । ସେ ଦୁହେଁ ଫାଟକକୁ ଧରି ମାଙ୍କଡ଼ ପରି ଝୁଲି ରହିଲେ । ଫାଟକ ଉପରେ ଗୋଟିଏ ଛୋଟ ଘର ଥିଲା । ସେ ଘରର ମେଝଆରେ କଣା ହୋଇ-ଥାଏ । ଘରଭିତରେ ଥିବା ଲୋକେ ଏହି କଣାବାଟେ ତଳେ କଅଣ ହେଉଛି ଦେଖି ପାରନ୍ତି ।

ଦୁଇ ଉଇଲ୍ ଯାକ ସେତେବେଳକୁ ସେହି ଘରେ ଥିଲେ । ସେମାନେ ଶେରଫ ଓ ବଣପଙ୍କୁ ଦେଖି ପାରିଲେ । ଉଇଲ୍ ସ୍କାର୍ଲେଟ ସଙ୍ଗେ ସଙ୍ଗେ ଦୁଇଟା ବାଲ୍ଟିରେ ଗୁଣ୍ଡାଏ ଚୂନ ଗୋଳାଇ ଦେଲା । ଦୁହେଁ ଯାକ ଗୋଟିଏ ଗୋଟିଏ ବାଲଟ୍ ଚୂନପାଣି କଣାବାଟେ

ଏପରି ଢାଳ ଦେଲେ ଯେ ଶେରଫ ଓ ବଣପ ସେଥିରେ 'ଜୁଡ଼ୁବୁଡ଼ୁ ହୋଇଗଲେ । ଆଖି ଜଳ ଉଠେଲା । ଦୁହେଁଯାକ ବିକଳ ହୋଇ ଫାଟକ ଗୁଡ଼ ଜଳୀକୁ ଡେଇଁ ପଡ଼ିଲେ । ଏମାନଙ୍କ ଅବସ୍ଥା ଦେଖି ଉପର ଘର ଭିତରେ ଦୁଇ ଉଇଲ ଓ ଅନ୍ୟମାନେ ହସି ଉଠେଲେ ।

ଆଉ ଠଙ୍କା କଥା ସବୁ ଭାବିବେ କିଏ ? କିପରି ପାଣିରୁ ଉଠି ଯିବେ ତାହାହିଁ ପ୍ରଧାନ ଚିନ୍ତା ହେଲା । ଶେରଫ ଓ ତାଙ୍କ ପକ୍ଷର ସମସ୍ତେ ପହଁରି ଜଳୀର କୂଳକୁ ପଳାଇ ଆସିଲେ ଓ ନଟିଙ୍ଗହାମକୁ ଧାଇଁଲେ । ଗଡ଼ ଆକ୍ରମଣ କରିବାକୁ ଯାଇ ସେମାନେ ଯାହା ଭୋଗିଲେ, ତାହା ସହଜରେ ଭୁଲିବାର କଥା ନୁହେଁ ।

ସାର ରିଚ୍ଚର୍ଡ଼ଙ୍କ ଘରେ ସେଦିନ ଉଇଲ୍ ଦୁହେଁ ଖାଇପିଇ ନିଶ୍ଚିନ୍ତରେ ରହିଲେ । ତା ପରଦିନ ସକାଳୁ ଦୁହେଁଯାକ ଠଙ୍କାତକ ଧରି ଶେରଉଡ଼ ବଣକୁ ଚାଲିଗଲେ ।

— —

# ୨୪

# ଫାଶୀରୁ ଉଦ୍ଧାର

ରବିନ୍‌କୁ ଜୀଅନ୍ତା ହେଉ ବା ମୃତ ହେଉ ଯିଏ ଧରି ଆଣିଦେବ ତାକୁ ଯଥେଷ୍ଟ ପୁରସ୍କାର ଦିଆଯିବ ବୋଲି ଆଗରୁ ଘୋଷଣା କରା ଯାଇଥିଲା । ଶେରିଫ୍ ନଟିଂଗହାମକୁ ଫେରିଆସି ପୁଣି ଘୋଷଣା ଦେଲେ ଯେ ପୁରସ୍କାରର ମୂଲ୍ୟ ଦୁଇଗୁଣ କରାଗଲା । ସେ ଭାବିଲେ ଯେ ରବିନ୍ ହୁଡ଼ ପରି ଜଣେ ଦୁର୍ଦ୍ଦାନ୍ତ ବିଦ୍ରୋହୀକୁ ଦମନ କରିବା ପାଇଁ ଯେ କୌଣସି ଖରଚ କିଛି ନୁହେଁ ।

ଏହି ଘୋଷଣା ଶୁଣି ପୁରସ୍କାର ଲୋଭରେ ଦଳେ ଲୋକ ହାତ ହତିଆର ଧରି ଶେରଉଡ୍ ଜଙ୍ଗଲକୁ ଯାଇ ରବିନ୍‌କୁ ଧରିବାକୁ ସ୍ଥିର କଲେ । ସେମାନେ ଦଳବଦ୍ଧ ହୋଇ ରବିନ୍‌ର ଆଡ୍ଡା ଆଡ଼କୁ ଚାଲିଲେ ।

ଦୈବାତ୍ ସେଦିନ ରବିନ୍ ଆଡ୍ଡାରେ ନ ଥିଲା । ସନ୍ଧ୍ୟାପୂର୍ବରୁ ସେ ଫେରିବ ନାହିଁ ବୋଲି ସାଥୀମାନଙ୍କୁ କହି ଯାଇଥିଲା ।

ୱିଲ ସ୍କାର୍ଲେଟ ଗଛ ଉପରୁ ଦେଖିଲା ଯେ ଦଳେ ଲୋକ ସେଠାକୁ ଆସୁଛନ୍ତି । ବିପଦ ଉପସ୍ଥିତ ବୋଲି ଆଶଙ୍କା କରି ସେ ଅନ୍ୟ ସାଥୀମାନଙ୍କୁ ସାବଧାନ କରିଦେଲା । ସଙ୍ଗେ ସଙ୍ଗେ ସମସ୍ତେ ଆକ୍ରମଣର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ ହୋଇଗଲେ । କିନ୍ତୁ ସେଦିନ ଦଳର ଅନେକେ ଶିକାର କରିବାକୁ ଚାଲି ଯାଇଥିଲେ । ସେଇଁ

ଅଳ୍ପ ଜେତେଜଣ ଆଡ୍ଡାରେ ଥିଲେ, ସେମାନେ ଖୁବ୍ ସାହସ ସହକାରେ ଯୁଦ୍ଧ କଲେ ।

ଆକ୍ରମଣକାରୀମାନେ ଜାଣିଥିଲେ ଯେ ରବିନର ଦଳର ଲୋକେ ବଡ଼ କୌଶଳୀ ; ଯୁଦ୍ଧ କରିବାରେ ନିପୁଣ । ଜଣକ ସହିତ ଜଣେ ପାଖାପାଖି ଯୁଦ୍ଧକଲେ ସେମାନେ କେବେହେଁ ପାରିବେ ନାହିଁ । ତେଣୁ ସେମାନେ ଦୂରରେ ରହି ଶର ମାରି ଯେତେଜଣଙ୍କୁ ମାରି ପାରିବେ ବା ଆହତ କରିପାରିବେ ସେତେ ମଙ୍ଗଳ । ସେମାନେ ଏହି ବିଚାର ଅନୁସାରେ କାର୍ଯ୍ୟକଲେ । ଯଥାସମ୍ଭବ ଦୂରରେ ରହି ସେମାନେ ଧନୁ ଧରି ସବୁଜ ରଙ୍ଗର ପୋଷାକ ପିନ୍ଧିଥିବା ଲୋକମାନଙ୍କ ଆଡ଼କୁ ଶର ମାରିଲେ । ଏହାଫଳରେ ଜଣଙ୍କ ଓ ତାର ଦୁଇଜଣ ଆଘାତ ପାଇ ତଳେ ପଡ଼ିଗଲେ । ଆକ୍ରମଣକାରୀମାନେ ମନେକଲେ ଯେ ଏ କମ୍ କଥା ନୁହେଁ । ରବିନ୍-ହୁଡ଼ ଧରା ନ ପଡ଼ୁ ପଛକେ ତାର ତିନିଜଣ ଧରା ପଡ଼ିଛନ୍ତି । ସେମାନେ ଏଇ ତିନି ଜଣଙ୍କୁ ନେଇ ଯଥାଶୀଘ୍ର ପଳାଇଗଲେ ।

ରବିନ୍ ବନ୍ଦୀ ଅବସ୍ଥାରୁ ପଳାଇ ଆସିବା ଦିନଠାରୁ ଶେରିଫ୍ ନିଜକୁ ବଡ଼ ଲଜ୍ଜିତ ବୋଧ କରୁଥିଲେ । ଅନ୍ତତଃ ତା ଦଳର ତିନିଜଣ ଧରାପଡ଼ିବା ଫଳରେ ଶେରିଫଙ୍କର କିଛି ସୁନାମ ହେବାର କଥା ।

ତିନିଜଣଙ୍କୁ ବନ୍ଦୀ ଅବସ୍ଥାରେ ପାଇ ଶେରିଫ ବିଶେଷ ଆନନ୍ଦିତ ହେଲେ । ସେ ଆଦେଶ ଦେଲେ, "କାଲି ପ୍ରକାଶ୍ୟ ସ୍ଥାନରେ ଏ ତିନିଜଣଙ୍କୁ ଫାଶୀ ଦିଆଯିବ । ତାହାହେଲେ ରବିନ-ହୁଡ଼ ବୁଝିବ, ଯେ ମୁଁ ଖାଲି କଥାର ଲୋକ ନୁହେଁ; କାମର ଲୋକ ।"

ରବିନ୍ ଆଡ଼୍ଡାକୁ ଫେରିଆସି ଶୁଣିଲା ଯେ ତିନିଭାଇଯାକ ଧରା ପଡ଼ିଛନ୍ତି । ତା ମନରେ ବଡ଼ କଷ୍ଟ ହେଲା । ଏହି ସମସ୍ତରେ

ଜଣେ ବିଧବା ବୁଢ଼ୀ ଆସି ରବନକୁ କହିଲା, "ବାପ, ମୋର ତିନି ପୁଅଙ୍କୁ ଶେରିଫର ଲୋକେ ଧରି ନେଇ ଯାଇଛନ୍ତି । ସେମାନେ ତୋ ଆଶ୍ରାରେ ପଡ଼ିଥିଲେ । ସେମାନଙ୍କ ଛଡ଼ା ଦୁନିଆରେ ମୋର ଆଉ କିଏ ଅଛି ? ମୁଁ ଏକୁଟିଆ ଲୋକ । ସେମାନେ ତୋ ପାଖରେ ରହନ୍ତି ସିନା । ବେଳେ ବେଳେ ମୋ ପାଖକୁ ଯାଇ ମୋର ଭଲମନ୍ଦ ବୁଝି ଆସନ୍ତି । ତୁ ସେମାନଙ୍କୁ ରକ୍ଷା ନ କଲେ ମୁଁ ମଲି ବୋଲି ଜାଣ ।"

ରବିନ୍ ସେମାନଙ୍କୁ ଉଦ୍ଧାର କରିବାକୁ ଚେଷ୍ଟାକରିବ ବୋଲି ବୁଢ଼ୀକୁ ଆଶ୍ୱାସନା ଦେଇ ବିଦାୟ ନେଲା ।

ଆରଦିନ ସକାଳ ହେଲାକ୍ଷଣି ସେ ନଟିଂହାମକୁ ବାହାରିଲା । କିଛିଦୂର ଯାଇ ସେ ଦେଖିଲା ଯେ ତା ଆଗରେ ଜଣେ ଲୋକ ଯାଉଛି । ତା ଦେହର ଗେରୁଆ ପୋଷାକ ଓ ହାତରେ ତାଳପତ୍ର ଛତା ଦେଖି ରବିନ ଜାଣିପାରିଲା ଯେ ଲୋକଟି ଜଣେ ପାମର୍ (୧୩) ସେ ବେଗରେ ଚାଲି ଲୋକଟି ପାଖରେ ପହଞ୍ଚି କହିଲା, "ନମସ୍କାର ମହାଶୟ, ଆପଣ କୁଆଡ଼େ ଯାଉଛନ୍ତି ?" ଲୋକଟି କହିଲା, ମୁଁ ନଟିଂହାମ ଯାଉଛି । ଆଜି ତିନିଜଣ ଲୋକ ଫାଶୀ ପାଇବାର କଥା । ମୁଁ ଯାଉଛି, ସେମାନଙ୍କର ସଦ୍‌ଗତିପାଇଁ ପ୍ରାର୍ଥନା କରିବି । ମୋ ସାଥିରେ ପ୍ରାର୍ଥନା କରିସାରିଲେ ସେମାନଙ୍କୁ ଫାଶୀ ଦିଆଯିବ ।"

ଏତିକି ଶୁଣିଲାକ୍ଷଣି ରବିନ୍‌ର ମୁଣ୍ଡରେ ଗୋଟାଏ ବୁଦ୍ଧି ପଶିଲା । ରବିନ୍ କହିଲା, "ଆପଣ ମୋତେ ଆପଣଙ୍କ ଗେରୁଆ ପୋଷାକ ଓ ତାଳପତ୍ର ଛତାଟି ଦିଅନ୍ତୁ । ମୁଁ ପାମର୍ ବେଶରେ ଫାଶୀ ଆସାମୀଙ୍କ ପାଖକୁ ଯିବାକୁ ମନକରୁଛି ।"

(୧୩) ପାମର୍—ପବିତ୍ର ଜେରୁଜେଲମର ତୀର୍ଥ ଯାତ୍ରୀ । ସେମାନେ ତାଳପତ୍ର ଛତାଧରି ଯାଉଥିଲେ ।

ପାମର୍ ପ୍ରଥମେ ସେଥିରେ ରାଜି ହେଉ ନ ଥିଲେ । ରବିନ୍ କେତେଗୁଡ଼ାଏ ଗିନି ବାହାରକରି ତାଙ୍କ ହାତରେ ଦେଲା । ଟଙ୍କା ହେଲେ କେଉଁ କାମ ନ ହେବ ? ପାମର୍ ଆନନ୍ଦରେ ନିଜର ପୋଷାକପତ୍ର ରବିନ୍‌କୁ ଦେଇ ଚାଲିଗଲେ ।

ରବିନ୍ ପାମର୍ ବେଶରେ ଅଧଘଣ୍ଟାକ ଭିତରେ ନଟିଙ୍ଗହାମରେ ଉପସ୍ଥିତ । ସେ ସମସ୍ତ ବ୍ୟସ୍ତ ନ କରି ଫାଶୀ ଦିଆଯିବା ସ୍ଥାନରେ ପହଞ୍ଚିଗଲା । ଦେଖିଲା ଯେ ଫାଶୀଖୁଣ୍ଟ ପ୍ରସ୍ତୁତ । ତିନି ଭାଇଯାକଙ୍କର ହାତ ବନ୍ଧାହୋଇଛି । ଫାଶୀ ଦେବାକୁ ବେଶୀ ବିଳମ୍ବ ନାହିଁ ।

ସେ ଶେରିଫଙ୍କୁ କହିଲା, "ମହାଶୟ, ଏ ତିନିଟା ବଦମାସଙ୍କୁ ପ୍ରାଣଦଣ୍ଡ ଦେଇ ଖୁବ ଭଲ କରିଛନ୍ତି । କିନ୍ତୁ ଗୋଟାଏ କଥା । ସେମାନଙ୍କୁ ପ୍ରାର୍ଥନାକରିବା ପାଇଁ ଟିକିଏ ସମୟ ଦିଅନ୍ତୁ । ପ୍ରାର୍ଥନା ନ କଲେ ସେମାନଙ୍କ ଆତ୍ମା ନରକରେ ପଡ଼ିବ ।"

ଶେରିଫ କହିଲେ, "କିଏ ମନାକରୁଛି ? ପ୍ରାର୍ଥନାକରିବା ପାଇଁ ଯଥେଷ୍ଟ ସମୟ ଅଛି । ତେବେ ଗୋଟାଏ କଥା ହେଉଛି, ଏ ଗୁଡ଼ାଙ୍କୁ ଫାଶୀ କାଠରେ ଝୁଲାଇବା ପାଇଁ ମୁଁ ଜଣେ ଲୋକ ପାଉନାହିଁ ।"

ଛଦ୍ମବେଶୀ ରବିନ୍ କହିଲା, "ସେଥିପାଇଁ ଚିନ୍ତା ନାହିଁ । ଅନୁମତି ଦେଲେ ମୁଁ ସେ କାମଟା ମଧ୍ୟ କରି ପାରିବି । ଆପଣ ନ୍ୟାୟ ବିଚାର କରୁଛନ୍ତି । ଦୋଷୀ ଦଣ୍ଡ ନ ପାଇଲେ ସଂସାର ଚଳିବ କିପରି ? ମୁଁ ସେମାନଙ୍କ ସଙ୍ଗେ ପ୍ରାର୍ଥନା କରିସାରି ଫାଶୀ ଦେଇଦେବି ।"

ଏ କଥା ଶୁଣି ଲୋକେ ହସି ଉଠିଲେ । ଯେ ପାମର୍ ହୋଇ ଧର୍ମଶିକ୍ଷ ଦେଉଛି, ପ୍ରାର୍ଥନା କରିବାକୁ ଆସିଛି, ସେଇ ଲୋକ ପୁଣି ଫାଶୀଦେବାକୁ ମଧ୍ୟ ପ୍ରସ୍ତୁତ । ହସିବାର କଥା ଏକା ।

ଯାହାହେଉ ଶେରଫ ଗୋଟିଏ ବଡ଼ ଚିନ୍ତାରୁ ମୁକ୍ତ ହୋଇଥିବାରୁ ମନେ ମନେ ଆନନ୍ଦିତ ହେଲେ ।

ପାମର୍ ପ୍ରାର୍ଥନାକରିବା ବାହାନାରେ ଆସାମୀମାନଙ୍କର ଖୁବ୍ ନିକଟକୁ ଯାଇ ଗୁଣୁଗୁଣୁ ସ୍ୱରରେ ବୋଲିଲେ :—

ଆଜ ତୁମ୍ଭର ନାହିଁ ଡର, ମୁଁ ପରା ତୁମ୍ଭ ସରଦାର
ହାତ ଦଉଡ଼ି ଦେଖିବଇଁ, କୌଶଳେ ଦେବ ତା ଫିଟାଇ
ଶୁଣିଲାକ୍ଷଣି ଶିଙ୍ଘାସ୍ୱର, ପଳାଇ ପ୍ରାଣ ରକ୍ଷାକର ।

ରବିନ୍ ଏପରିଭାବରେ ଏହି ପ୍ରାର୍ଥନା ବୋଲୁଥାଏ ଯେ କେବଳ ଆସାମୀ ତିନିଜଣ ତାହା ଶୁଣିପାରିବେ । ଶେରଫ ଓ ଅନ୍ୟମାନେ ବୁଝିଲେ ଯେ ପ୍ରାର୍ଥନା ବୋଲାହେଉଛି ।

ପ୍ରାର୍ଥନା ସାରି ପାମର କହିଲେ, "ଏବେ ଏମାନଙ୍କୁ ଫାଶୀ ଦେବାର କଥା । ଫାଶୀଖମ୍ବ ଓ ଦଉଡ଼ି ତ ଠିକ୍ ଅଛି । ଆସାମୀ-ମାନଙ୍କର ହାତ ଠିକ୍ ବନ୍ଧା ହୋଇଛି କି ନା ଦେଖେଁ ।"

ହାତର ବନ୍ଧନ ପରୀକ୍ଷା କରିବା ବାହାନାରେ ରବିନ୍ ଦଉଡ଼ିର ଗଣ୍ଠିଗୁଡ଼ିକ ଫିଟାଇ ଦେଲା । ମାତ୍ର ସେମାନେ ଆଗରୁ ରବିନ୍‌ର ପରିଚୟ ପାଇ ସାରିଥାନ୍ତି । ତେଣୁ ସେମାନେ ଦଉଡ଼ି ଫିଟିଯାଇଥିଲେ ସୁଦ୍ଧା ବନ୍ଧା ହେଲା ପରି ଛିଡ଼ା ହୋଇ ରହିଥାନ୍ତି ।

ହଠାତ୍ ରବିନ୍ ତା ଦେହର ଉପର ପୋଷାକ ଫିଙ୍ଗିଦେଲା । ଭିତରେ ପିନ୍ଧିଥିବା ସବୁଜ ପୋଷାକ ଦେଖାଗଲା । ସେ ତା ଭିତରୁ ଶିଙ୍ଘାଟି କାଢ଼ି ତିନିଥର ଉଚ୍ଚ ସ୍ୱରରେ ବଜାଇଲା । ସଙ୍ଗେ ସଙ୍ଗେ

କେଉଁଆଡ଼ୁ ସେଠାକୁ ତାର ସାଥୀମାନେ ଧନୁଶର ଧରି ଧାଇଁ ଆସିଲେ ।

ରବନ୍ ଓ ଫାଶୀ ପାଇବାକୁ ଯାଉଥିବା ତିନିଭାଇ ଲୋକ-ଗହଳ ଭିତରେ ପଳାଇବାକୁ ଲାଗିଲେ । ଯେ ବାଧା ଦେବାକୁ ଗଲା, ସେ ଏମାନଙ୍କର ଆଘାତରେ ଭୂଇଁରେ ପଡ଼ିଲା । ଏଣେ ଶେରିଫଙ୍କ ସୈନ୍ୟମାନେ ଏକତ୍ର ହୋଇଗଲେ । କିନ୍ତୁ ସେମାନଙ୍କ ପାଖରେ କିଛି ଅସ୍ତ୍ରଶସ୍ତ୍ର ନ ଥିଲା । ସେମାନେ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲେ ଯେ ଏପରି ଗୋଟାଏ ଘଟଣା ଘଟିପାରେ । ତେଣୁ ସେମାନେ ଅସ୍ତ୍ରଶସ୍ତ୍ର ରଖିଦେଇ କେବଳ ଫାଶୀଦିଆ ଦେଖିବାକୁ ଆସିଥିଲେ ।

ଶେରିଫ୍ ବିରକ୍ତ ହୋଇ ଶୀଘ୍ର ଅସ୍ତ୍ରଶସ୍ତ୍ର ଆଣି ଆସିବାକୁ ସୈନ୍ୟମାନଙ୍କୁ ଆଦେଶ ଦେଲେ । ସେମାନେ ଯାଇ ଧନୁଶର, ବର୍ଚ୍ଛା ପ୍ରଭୃତି ଧରି ପୁଣି ପହଞ୍ଚିଲେ । କିନ୍ତୁ ସେତେବେଳକୁ ରବନ୍ ଓ ତାର ସାଥୀମାନେ ଏତେ ଦୂରକୁ ଚାଲି ଯାଇଥିଲେ ଯେ ସେମାନଙ୍କୁ ଧରିବାର ଲବମାତ୍ର ଆଶା ନ ଥିଲା । ଆହୁରି ମଧ୍ୟ,ଯଦି ସୈନ୍ୟମାନେ ସେମାନଙ୍କ ପାଖେ ପହଞ୍ଚନ୍ତି, ତେବେ ରବନ୍ ଓ ତାର ଦଳର ସଂଖ୍ୟା ସୈନ୍ୟମାନଙ୍କ ସଂଖ୍ୟାଠାରୁ ଏତେ ଅଧିକ ଯେ ସୈନ୍ୟମାନେ କେହି ପ୍ରାଣ ଘେନି ଫେରିବେ ନାହିଁ । ଅଗତ୍ୟା ଶେରିଫ୍ ଓ ତାଙ୍କ ସୈନ୍ୟମାନେ କେବଳ ଛିଡ଼ାହୋଇ ରବନ୍‌ପ୍ରଭୃତି ଶେର୍‌ଉଡ଼ ଆଡ଼କୁ ଯାଉଥିବା ବେଳେ ଚାହିଁ ରହିଲେ ।

କିଛିସମୟ ପରେ ରବନ୍ ଓ ତାର ସାଥୀମାନେ ଦୃଷ୍ଟିପଥରୁ ଅଦୃଶ୍ୟ ହୋଇଗଲେ ।

———

# ବିଧବା-ରବିନ୍

ଜଇଲ୍ ଓ ତାର ଦୁଇଭାଇ ମା'ଆ ପାଖରେ ପହଞ୍ଚିଲେ । ବୁଢ଼ୀ ପୁଅମାନଙ୍କୁ ଦେଖି ବିଶେଷ ଆନନ୍ଦିତ ହେଲା । ପୁଅମାନଙ୍କୁ ଫାଶୀଖୁଣ୍ଟରୁ ଆଣିଥିବାରୁ ବୁଢ଼ୀ ରବିନ୍‌କୁ ଖୁବ ଆଶୀର୍ବାଦ କଲା ।

ଗଭୀର ଜଙ୍ଗଲ ଭିତରେ ଦିନେ ରବିନ୍ ଏକୁଟିଆ ହରିଣ ଶିକାର କରୁଥିଲା । ହଠାତ୍ ହିଅରଫୋର୍ଡ଼ର ବିଶପ୍ କେଉଁଠାରୁ ଆସି ତାହା ଆଗରେ ଉପସ୍ଥିତ ହୋଇଗଲେ । ନିଜ ଘୋଡ଼ାରୁ ଓହ୍ଲାଇ ପଡ଼ି ସେ ଖୁବ୍ ଉଚ୍ଚସ୍ୱରରେ କହିଲେ, "ରବିନ୍ ହୁଡ୍ ! ଯେଉଁଠି ଅଛୁ, ସେହିଠାରେ ରହ । ତୋତେ ମୋର କିଛି ଋଣ ପରିଶୋଧ କରିବାକୁ ଅଛି ।"

ବିଶପ ନଟିଙ୍ଗହାମର ଶେରିଫଙ୍କଠାରୁ ଯେଉଁ ଋଣ ଆଣିଥିଲେ ତାକୁ କପରି ରବିନ୍ ଠକି ନେଇଥିଲା, ତାହା ସେ ଭୁଲି ପାରି ନ ଥିଲେ । ସେ ଭାବିଲେ ଯେ ଏହି ସୁଯୋଗରେ ସେ ରବିନ୍‌ଠାରୁ ଟଙ୍କାତକ ଆଦାୟ କରି ନେବେ । ତେଣୁ ସେ ଏପରି ଧମକ କରି କହିଲେ ।

ରବିନ୍ ଆଦୌ ଭୟ ପ୍ରକାଶ ନ କରି ହସି ହସି କହିଲା, "ବିଶପ୍ ମହାଶୟ, ନମସ୍କାର । ମୁଁ ଯେ କୌଣସି ସମୟରେ ମୋର ଋଣ ଫେରି ପାଇଲେ ବିଶେଷ ଆନନ୍ଦିତ ହେବାର କଥା । ପୁଣି

ଆପଣଙ୍କ ଋଣ ପରିଶୋଧରେ ଟିକିଏ ବିଶେଷତ୍ୱ ଅଛି । ଆପଣଙ୍କ ଟଙ୍କା ସଙ୍ଗେ ଆଶୀର୍ବାଦ ମଧ୍ୟ ମିଳିବ । ଏ ମୋର ଭାଗ୍ୟର କଥା ।"

ବିଶପ୍ ବିରକ୍ତ ହୋଇ କହିଲେ, "ଏଥିରେ ହସିବାର କିଛି କାରଣ ନାହିଁ । ତୋର ମନେଥିବ, ତୋର ଲୋକେ ଶେରିଫଙ୍କଠାରୁ ମୋର କରଜ ଆଣିଥିବା ଟଙ୍କା ଠକି ନେଇଥିଲେ । ମୋର ପ୍ରତିଜ୍ଞା ଦେଖିବୁ । ମୁଁ ନିଶ୍ଚୟ ତୋର ହସ ଛଡ଼େଇ ଦେବି ।"

ରବିନ୍ ଧୀର ସ୍ୱରରେ କହିଲା, "ତା'ହାହେଲେ, ଆସିବା ହୁଅନ୍ତୁ । ମୁଁ ଅନେକବେଳୁ ଶିକାରକୁ ଆସିଛି । ରାଜାଙ୍କ ଜଙ୍ଗଲରେ ଗୋଟିଏ ବଡ଼ ସୁନ୍ଦର ହରିଣ ଦେଖିଛି । ସତ କହୁଛି, ଏତେ ବଡ଼ ହରିଣ ମୁଁ ଆଗରୁ କେବେ ଦେଖି ନାହିଁ । ମୋତେ ଟିକିଏ ସାହାଯ୍ୟ କରନ୍ତୁ । ତାହାହେଲେ ହରିଣଟା ପଳେଇ ପାରିବ ନାହିଁ ।"

ବିଶପ୍‌ଙ୍କର କ୍ରୋଧ ଦୁଇଗୁଣ ହୋଇଗଲା । ସେ କହିଲେ, "ତୋତେ ବେଶ୍ ଜଣାଅଛି, ବିନା ରାଜାଙ୍କର ହରିଣ ମାରିବା ଏକ ଗୁରୁତର ଅପରାଧ । ତୁ ହରିଣ ମାରିବାକୁ ଚେଷ୍ଟା କରୁଥିଲୁ । ମୁଁ ନିଜ ଆଖିରେ ଦେଖିଛି । ଏଥିପାଇଁ ତୋତେ ପୁଣି ଡେର ପସ୍ତେଇବାକୁ ହେବ ।"

ରବିନ୍ ଥଣ୍ଡା କଣ୍ଠରେ ଉତ୍ତର କଲା, "ଆପଣ ଯଦି ଏପରି ବିଚାରିଥାନ୍ତି, ତେବେ କ୍ଷମାଦେବେ । ମୋସଙ୍ଗେ ଆପଣଙ୍କ ମତ ମିଳିବ ନାହିଁ । ମୁଁ ମୋ ବାଟରେ ଯାଏଁ, ଆପଣ ଆପଣଙ୍କ ବାଟରେ ଯାଆନ୍ତୁ ।"

ଏତିକି କହି ରବିନ୍ ଗୁଳାପିବାକୁ ବସିଲା । ଅଳ୍ପ କେତେ ପାହୁଣ୍ଡ ଯାଇ ଦେଖିଲା ଯେ ବିଶପ୍ ପୁଣି ଘୋଡ଼ାରେ ବସି ତା ପଛରେ ଧାଇଁଛନ୍ତି । ବିଶପ୍‌ଙ୍କର କିଛି କ୍ଷତିକରିବା ରବିନ୍‌ର

ଉଦ୍ଦେଶ୍ୟ ନ ଥିଲା । କେବଳ ମଜାଦେଖିବା ତା'ର ମତଲବ ଥିଲା । ତେଣୁ ସେ ବୁଦା ଜଙ୍ଗଲ ଭିତରେ ଦଉଡ଼ିଲା । ବଣପ୍ ମଧ୍ୟ ଘୋଡ଼ାରେ ବସି ତା ପଛେ ପଛେ ଗଲେ । ଘୋଡ଼ା ସାଥିରେ ରବିନ୍ କପରି ଦୌଡ଼ ପାରିବ ? ତେଣୁ ସେ ଗୋଟାଏ କୌଶଳ କଲା । ସେ ଗଛ ଗହଳ ଭିତରେ ଏଣେ ତେଣେ ଦୌଡ଼ିଲା । ଘୋଡ଼ା ଗଛ ସନ୍ଧିଭିତରେ ସହଜେ ଯାଇ ପାରିଲାନାହିଁ । ପୁଣି କିଛିଦୂର ବୁଦାଭିତରେ ଯାଇ ସେ ଗୋଟିଏ କୁଡ଼ିଆ ପାଖରେ ପହଞ୍ଚିଲା । ଏହି କୁଡ଼ିଆଟି ଜଣେ ବିଧବାର । ତାର ନାମ ହାର୍ଡିଲକ୍ । ରବିନ୍ ଜାଣେ ଯେ ବିଧବାଟି ତା ପାଇଁ ସବୁ କରିପାରିବ ।

ସେ ବିଧବାକୁ କହିଲା, "ମାଉସୀ, ମୋ ପଛରେ ହିଅରଫୋର୍ଡର ବଣପ୍ ଗୋଡ଼ାଉଛନ୍ତି । ମୁଁ ଏହିଠାରେ ଲୁଚି ରହିବି ।"

ଅଳ୍ପ ସମୟ ପରେ ବଣପ୍ ମଧ୍ୟ କୁଡ଼ିଆ ପାଖେ ପହଞ୍ଚି-ଗଲେ ।

ବୁଢ଼ୀ ଦୁଆର ପାଖରେ ବସି ସୂତା କାଟୁଥିଲା । ବଣପ୍ ପଚାରିଲେ, "ବୁଢ଼ୀ, ଏଆଡ଼େ ଜଣେ ଲୋକ ଆସିବାର ଦେଖିଛ କି ? ତା'ର ଦେହରେ ସାଗୁଆ ରଙ୍ଗର ପୋଷାକ ।"

ବୁଢ଼ୀ ଉତ୍ତରକଲା, "କାଇଁ, ମୁଁ ତ କାହାକୁ ଦେଖିନାହିଁ । ମୁଁ ତ ବୁଢ଼ୀ ଲୋକ । ଭଲକରି ଦେଖି ପାରୁନାହିଁ । କେଜାଣି କିଏ କେତେବେଳେ ଆସି ମୋ ଘରେ ଲୁଚିଯାଇଥିବ । ତୁମେ ନିଜେ ଯାଇ ଦେଖ ।"

ବଣପ୍ ଘର ଭିତରେ ପଶି ଖୋଜିଲେ । ଏତିକିବେଳେ ଘର କଣରେ କଅଣ ଖସ୍ ଖସ୍ ହେଲା । ବଣପ୍ କଣକୁ ଯାଇ ଗୋଟାଏ

ଲୋକକୁ ମାଡ଼ବସି କହିଲେ, "କରେ ରବିନ୍ । ତୁ ତ ବେଶ୍ ସ୍ୱାଙ୍ଗ କରିଥିଲୁ ।"

ଲୋକଟା ଆଉ ବାଧା ନ ଦେଇ ଚୁପ୍ କରି ଘଣ୍ଟୁ ବାହାରି ପଡ଼ିଲା । ବଣପ୍ ତାକୁ ଧରି ଗଲେ । ବୁଢ଼ୀ ଦୁଆରମୂହଁରେ ବସି ଆଗପରି ସୂତା କାଟୁଥାଏ ।

ଏହି ସମୟରେ ଲିଟିଲ୍ ଜନ୍ ଓ ଉଇଲ୍ ସ୍କାର୍ଲେଟ ବଣଭିତରେ ବୁଲୁଥିଲେ । ପଛଆଡ଼ୁ କେହି ଆସୁଥିବାର ଶବ୍ଦ ଶୁଣିପାରି ସେମାନେ ଚାହିଁଲେ । ଲିଟିଲ୍ ଜନ୍ କହିଲା, "ଉଇଲ୍, ବିଧବା ହାର୍ଡ଼ଲକ୍ ଏତେବେଳେ ଆମ ଆଡ଼କୁ ଆସୁଛି କାହିଁକି ?" ଲିଟିଲ୍ ଜନ୍ ନରେଖି ନରେଖି କହିଲା, "ନା ନା, ସେ ହାର୍ଡ଼ଲକ୍ ନୁହେଁ । ତୁ ତ ଆମ ସର୍ଦ୍ଦାରଙ୍କୁ ଚିହ୍ନି ପାରୁନାହୁଁ । ବଡ଼ ଆଶ୍ଚର୍ଯ୍ୟର କଥା ।"

ରବିନ୍‌ହୁଡ଼୍‌କୁ ବିଧବାବେଶରେ ଦେଖି ଦୁହେଁଯାକ ହସି ଉଠିଲେ । ବାସ୍ତବରେ ହସିବାର କଥା । କି ବିଚିତ୍ର ବେଶ ।

ରବିନ୍ ସଂକ୍ଷେପରେ ସେ ଦୁହିଁଙ୍କୁ ବୁଝାଇ ଦେଲା ଯେ ବଣପ୍ ତା ପଛରେ ଗୋଡ଼ାଉଥିବାରୁ ସେ ଦଉଡ଼ିଯାଇ ହାର୍ଡ଼ଲକ ଘରେ ପହଞ୍ଚିଗଲା ଓ ତାର ପୋଷାକ ପିନ୍ଧି ଦୁଆର ମୁହଁରେ ସୂତା କାଟିବାକୁ ଲଗିଲା । ବିଧବା ହାର୍ଡ଼ଲକ୍ ଘରକଣରେ ଲୁଚିଥିଲା । ବଣପ୍ ତାକୁ ରବିନ୍ ମନେକରି ନେଇଯାଉଛି ।

ରବିନ୍ ନିଜ ଶିଙ୍ଗା ଧରି ତିନିଥର ବଜେଇଲା । ସଙ୍ଗେ ସଙ୍ଗେ ତା ଦଳର ଲୋକ ସେଠାରେ ପହଞ୍ଚିଗଲେ । ସେ ଜଣକଠାରୁ ସବୁଜ ରଙ୍ଗର ପୋଷାକ ଆଣି ପୁଣି ପିନ୍ଧିଲା ଓ ଲୋକଙ୍କୁ ଘେନି ନଟିଙ୍ଗ୍‌ହାମ ରାସ୍ତା ଆଡ଼କୁ ଗଲା । କିଛିଦୂର ଯିବାପରେ ସେମାନେ ଦେଖି-ପାରିଲେ ଯେ ବଣପ୍ ଓ ତାଙ୍କ ବନ୍ଦୀ ଗଲେଛନ୍ତି ।

ସେମାନେ ଯାଇ ବଣପଙ୍କ ରାସ୍ତାରେ ଛକି ରହିଲେ । ବଣପ୍ ଦେଖିଲେ ଯେ ରବିନ୍ ସ୍ୱଶରୀରରେ ତାଙ୍କ ଆଗରେ ଛିଡ଼ାହୋଇଛି ।

ତାର ଦେହରେ ସେହି ଶାଗୁଆ ପୋଷାକ । ସେ ଯାହାକୁ ରବନ୍-ହୁଡ୍ ବୋଲି ଧରି ନେଇଥିଲେ ସେ ପ୍ରକୃତରେ ହେଉଛି, ଶାଗୁଆ ପୋଷାକ ପିନ୍ଧିଥିବା ବିଧବା ହାର୍ଡ଼ିଲକ୍ । ତାଙ୍କ ପାଟିରୁ କିଛି କଥା ବାହାରିଲା ନାହିଁ ।

ରବନ୍ ବିଶପ୍‌ଙ୍କର ଏ ଅବସ୍ଥା ଦେଖି ହସି ଉଠିଲା । ତା'ପରେ କହିଲା, "ବିଶପ୍ ମହାଶୟ ! ଆପଣଙ୍କର ଏ କି ଭଦ୍ରତା କହନ୍ତୁ ? ଜଣେ ବିଧବା ବୁଢ଼ୀକୁ ଆପଣ ଜବରଦସ୍ତି ଧରି କୁଆଡ଼େ ନେଉଛନ୍ତି' ଏପରି କରିବା କଅଣ ଉଚିତ ?"

ବିଶପ ଖନେଇ ଖନେଇ କହିଲେ, "ଏଁ ତୁ, ତୁ, ପରି..."

ବିଶପ୍‌ଙ୍କ କଥା ନ ସରୁଣୁ ରବନ୍ କହିଲା, "ହାର୍ଡ଼ିଲକ୍, ତୁମ ପରି ବିଧବା ବୁଢ଼ୀ ପ୍ରତି ଏପରି ଅନ୍ୟାୟ ବ୍ୟବହାର କରିଥିବାରୁ ଏ ବିଶପଙ୍କ ଗାଲରେ ଖୁନ୍ଦାଏ ଦେଲେ କିଛି କ୍ଷତି ନାହିଁ ।"

ବିଧବା ସଙ୍ଗେ ସଙ୍ଗେ ବିଶପ୍‌ଙ୍କ ଗାଲରେ ଗୋଟିଏ ଖୁନ୍ଦା ମାରିଲା ।

ରବନ୍ ବିଶପ୍‌ଙ୍କୁ କହିଲା, "ତୁମେ ଏ ଗରିବ ବିଧବାର ଏତେ ସମୟ ବୃଥା ନଷ୍ଟ କରିଛ । ସେ ଏତକ ସମୟ ସୂତା କାଟିଥିଲେ ଯାହା ଆୟ କରିଥାନ୍ତା, ସେତେକ ତୁମକୁ ଦେବାକୁ ପଡ଼ିବ ।"

ବିଶପ୍ ବାଧ୍ୟ ହୋଇ ପଇସା ଗଣିଦେଲେ । ତାପରେ ରବନ୍ ବିଶପ୍‌ଙ୍କୁ ଛାଡ଼ିଦେଲା । ବିଶପ୍ ଏତିକରେ ମୁକ୍ତି ପାଇଥିବାରୁ ନିଜ ଭାଗ୍ୟକୁ ପ୍ରଶଂସା କଲେ ।

ରବନ୍ ବିଧବା ହାର୍ଡ଼ିଲକକୁ ସାଥିରେ ନେଇ ଭଲରେ ଖାଇବା ପିଇବାକୁ ଦେଇ ଖୁବ ସମ୍ବର୍ଦ୍ଧନା କଲା ।

— — —

## ୨୭

# ବିଶପ ମଜା ପାଇଲେ

ସେଦିନ ଘରେ ପହଞ୍ଚିଲାବେଳକୁ ବିଶପଙ୍କ ମନ ପୋଡ଼ି ଯାଉଥାଏ । ଏଥର ମଧ୍ୟ ରବିନ୍ ତାଙ୍କୁ ଜିତିଗଲା । ଦେଶରେ କଅଣ ଆଇନ ନାହିଁ ? ଶେରିଫ୍ ଏପରି ଗୋଟାଏ ଦୁଷ୍ଟ ଲୋକକୁ ଧରି ପାରିଲେ ନାହିଁ । ବିଶପ୍ ସ୍ଥିରକଲେ ଯେ ସେ ଅନେକ ଗୁଡ଼ିଏ ଲୋକ ନେଇ ରବିନ୍‌କୁ ଧରିବାର ଚେଷ୍ଟା କରିବେ । ଶେରିଫଙ୍କ ଉପରେ ଆସ୍ଥା ରଖି କିଛି ଲାଭନାହିଁ ।

ଏହିପରି ବିଚାର କରି ସେ ପଚାଶ ଜଣ ଲୋକ ଯୋଗାଡ଼ କଲେ । ସେମାନେ ଅସ୍ତ୍ରଶସ୍ତ୍ର ଧରି ବାହାରିଲେ । ବିଶପ୍ ନିଜେ ସେମାନଙ୍କ ସଙ୍ଗେ ବାହାରିଲେ । ତାଙ୍କର ଏଥର ପ୍ରତିଜ୍ଞା—ରବିନ୍‌କୁ ନ ଧରି ଛାଡ଼ିବେ ନାହିଁ । ତାଙ୍କର କିନ୍ତୁ ଗୋଟାଏ ବଡ଼ ଅସୁବିଧା ଥିଲା । ସେ ଜାଣିଥିଲେ ଯେ ରବିନ୍ ତାର ଦଳ ସହିତ ଶେରଉଡ଼ ଜଙ୍ଗଲ ଭିତରେ ରହୁଛି । ମାତ୍ର ଶେରଉଡ଼ କିଛି ଛୋଟ ଜଙ୍ଗଲ ନୁହେଁ । ଏଡ଼େ ପ୍ରକାଣ୍ଡ ଜଙ୍ଗଲର କେଉଁଠାରେ ସେ ରହୁଛି ନ ଜାଣିଲେ ତାକୁ ଧରିବେ କିପରି ?

ଯାହା ହେଉ ଗତଥର ଜଙ୍ଗଲର ଯେଉଁ ଦିଗରୁ ରବିନ୍‌ର ଲୋକେ ଆସିବାର ସେ ଦେଖିଥିଲେ ସେହି ଆଡ଼କୁ ବିଶପ୍ ଚାଲିଲେ । କିଛି ଦୂର ଗଲାପରେ ସେ ଦୁଇଜଣ ବାର ବୁଲା ଭିକାରୀଙ୍କୁ ଦେଖିଲେ । ବିଶପ୍ ନିଜର ଲୋକଙ୍କୁ ପଛରେ ରଖି ସେ ଦୁହିଁଙ୍କ ପାଖରେ ପହଞ୍ଚି କହିଲେ, "ଆରେ, ତମର କଅଣ କିଛି ଖାଇବା ଦରକାର ?"

ପ୍ରକୃତ ପକ୍ଷରେ ଏ ଦୁଇଜଣ ହେଉଛନ୍ତି; ଲିଟିଲ୍ ଜନ୍ ଓ ଉଇଲ୍ ସ୍କାର୍ଲେଟ୍ । ସେଦିନ ସେମାନେ ଭିକାରି ବେଶରେ ବାହାରି ପଡ଼ିଥିଲେ । ସେମାନେ ଗୋଟାଏ କିଛି ସାହସିକ କାମ କରିବାକୁ ଇଚ୍ଛା କରିଥିଲେ । ଏବେ ସୁଯୋଗ ମିଳିଗଲା । ଦୁହେଁଯାକ ଠିକଏ ଠିଆଠିଆ ହେଲେ । ତା'ପରେ ଲିଟିଲ ଜନ୍ କହିଲା,' ବିଶପ୍ ମହାଶୟ, ସେ କଥା ପଚାରୁଛନ୍ତି କଅଣ ? ଦୁଇଦିନ ହେଲା ଆମ ପେଟରେ କିଛି ପଡ଼ି ନାହିଁ ।"

ବିଶପ୍ କହିଲେ, "ଭଲ କଥା । ତୁମକୁ ଖାଇବାପାଇଁ ମୁଁ ଯଥେଷ୍ଟ ଦେବି । ଖାଲି ମୋତେ ଗୋଟିଏ କଥା କହିଦିଅ । ରବିନ୍ ହୁଡ୍ ଏ ଜଙ୍ଗଲରେ କେଉଁଠି ରହେ ?"

ବିଶପ୍ ଜାଣିଥିଲେ ଯେ ଏହି ଶ୍ରେଣୀର ଭିକାରୀମାନେ ରବିନ୍ ସହିତ ବନ୍ଧୁତା ରଖିଥାନ୍ତି, ବେଳେବେଳେ ରବିନ୍ ସେମାନଙ୍କୁ ସାହାଯ୍ୟ କରେ । ତେଣୁ ସେମାନେ ରବିନ ହୁଡ୍‌ର ସବୁ ହାଲ ଜାଣିଥିବେ ।

ଭିକାରି ଦୁହେଁ ବିଶପ୍‌ଙ୍କ ଉଦ୍ଦେଶ୍ୟ ବୁଝିପାରି କହିଲେ, "ହଁ, ଆମେ ରବିନ୍ ଯେଉଁଠାରେ ରହେ ଜାଣୁ ।"

ଏହାପରେ କିନ୍ତୁ ରବିନ୍ ଯେଉଁଠାରେ ରହେ, ସେଆଡ଼େ ନ ଦେଖାଇ ଅନ୍ୟ ଏକ ବାଟକୁ ଦେଖାଇ ଦେଲେ । ବିଶପ୍ ଲୋକ-ମାନଙ୍କ ସହିତ ସେହି ଆଡ଼କୁ ଗଲେ ।

ଏଣେ ଭିକାରୀ ବେଶଧାରୀ ଲିଟିଲ୍ ଜନ୍ ଓ ଉଇଲ୍ ସ୍କାର୍ଲେଟ୍ ବଣବାଟେ ଯାଇ ରବିନ୍‌କୁ ସବୁକଥା ଜଣାଇ ଦେଲେ । ରବିନ୍ କହିଲା, "ତୁମେ ଠିକ୍ କରିଛ । ବିଶପ୍‌କୁ ଏପରି ଶିକ୍ଷା ଦେବା, ଯେପରି କି ସେ ତା ଜୀବନରେ ଭୁଲିବ ନାହିଁ ।"

ରବନ୍ ନିଜର କେତେଜଣ ଲୋକଙ୍କୁ ସଙ୍ଗରେ ନେଇ ବଣପ ଯେଉଁ ଆଡ଼କୁ ଯାଇଥିଲେ, ସେହିଆଡ଼କୁ ଗଲା। କିଛିଦୂର ଗଲାପରେ ସେମାନେ ବଣପଙ୍କ ଲୋକଙ୍କ ପଛରେ ପହଞ୍ଚିଗଲେ। ରବନ୍ ଦେଖିଲା ଯେ ବଣପ୍ ସମସ୍ତଙ୍କ ଆଗରେ। ତାଙ୍କ ପଛରେ ପଚିଶ ଜଣ ଲୋକ। ସମସ୍ତେ ହାତ ହତିଆର ଧରି ଘୋଡ଼ାରେ ବସି ଗଲାଛନ୍ତି।

ରବନ୍ ଦେଖିଲା ଯେ ସେମାନେ ଯେଉଁ ବାଟରେ ଯାଉଛନ୍ତି ତାର ଟିକିଏ ବାଁପାଖକୁ ଗଲେ ଗୋଟାଏ ଭଲ ମଜା ହେବ। ସେଠାରେ ଗୋଟାଏ ବଡ଼ ଜଳାଭୂମି ଅଛି। ସେଥିରେ ପଡ଼ିଲେ ବାହାରିବା ସହଜ ନୁହେଁ। ଯେତିକି ବାହାରିବାର ଚେଷ୍ଟା କରିବ ସେତିକି କାଦୁଅରେ ତଳକୁ ତଳକୁ ଯିବ। କିପରି ବଣପଙ୍କୁ ସେଥିରେ ପକାଇବାକୁ ହେବ ?

ରବନ୍ ତାହାର ଲୋକମାନଙ୍କୁ ନେଇ ଟିକିଏ ଆଗେଇ ଆସିଲା। ବଣପ୍ ସେମାନଙ୍କୁ ଦେଖି ପାରିଲେ। ହଠାତ୍ ରବନ୍ ତାର ଲୋକଙ୍କୁ ନେଇ ବଣକୁ ପଳାଇବାର ଛଳନା କଲା। ବଣପ୍ ଭାବିଲେ ଯେ ତାଙ୍କ ଲୋକଙ୍କୁ ଦେଖି ସେ ଭୟରେ ପଳାଇ ଯାଉଛି। ବଣପ୍ ନିଜ ଲୋକଙ୍କୁ ଡାକଦେଲେ, "ଏମାନଙ୍କ ପଛେ ଗୋଡ଼ାଅ। ଦେଖ, ଯେପରି କେହି ଖସି ପଳାଇ ନ ଯାଆନ୍ତି।"

ରବନ୍ ତାର ଲୋକମାନଙ୍କୁ ନେଇ ସେହି ଜଳାଭୂମିର ଗୋଟିଏ ଧାରରେ ବୃତ୍ତାକାରରେ ଠିଆ କରାଇ ଦେଲା। ବଣପ୍ ଭାବିଲେ ଯେ ତାଙ୍କର ଲୋକେ ସିଧାଭାବରେ ଯାଇ ଆକ୍ରମଣ କଲେ ଖୁବ୍ ସୁବିଧା ହେବ; ରବନ୍‌ର ଲୋକେ ପଳାଇବାକୁ ସୁବିଧା ପାଇବେ ନାହିଁ।

ଏହାପରେ ବସନ୍ତ ସେ ନିଜ ଲୋକଙ୍କୁ ତାଙ୍କ ପଛେ ପଛେ ଆସିବାକୁ କହିଲେ । ତାଙ୍କ ଘୋଡ଼ା ତରଣ ସ୍ଥଳେ ଗଳି ଯିବା ପରେ କାଦୁଅରେ ପଶିଗଲା । ସେ କାଦୁଅରେ ଗଳି ପଡ଼ିବାରୁ ବଶପ୍ ତା ପିଠିରୁ ଖସି ପଡ଼ିଲେ । ସେ କାଦୁଅ ପାରହୋଇ ଯିବାକୁ ଯେତିକି ଚେଷ୍ଟା କଲେ ସେତିକି କାଦୁଅରେ ଲଟପଟ୍ ହୋଇଗଲେ । କାଦୁଅ ପଙ୍କରେ ସେ ଅଣ୍ଟାଯାଏ ବୁଡ଼ିଗଲେ ।

ତାଙ୍କ ପଛେ ପଛେ ଯେଉଁଲୋକ ଯାଉଥିଲେ ସେମାନେ ବଶପଙ୍କ ଅବସ୍ଥା ଦେଖି ସାବଧାନ ହୋଇ ଦୂରରେ ରହିଗଲେ । ଆଉ ଆଗକୁ ଗଲେ ସେମାନଙ୍କୁ ମଧ୍ୟ ବଶପଙ୍କ ଅବସ୍ଥା ଭୋଗ କରିବାକୁ ହେବ ବୋଲି ସେମାନେ ଜାଣି ପାରିଲେ । ଏତିକିବେଳକୁ ରବନ୍‌ର ଲୋକେ ସେମାନଙ୍କ ଆଡ଼କୁ ଶର ମାରିବାରେ ଲାଗିଲେ । ସେମାନେ ନିଜ ନିଜ ଜୀବନ ରକ୍ଷା କରିବାପାଇଁ ଘୋଡ଼ାମାନଙ୍କ ମୁହଁ ବୁଲେଇ ଦେଇ ପଳାଇବାକୁ ବସିଲେ ।

ଏଣେ ବଶପ୍ କାଦୁଅ ପଙ୍କଭିତରେ ଛଟପଟ ହେଉଥାନ୍ତି । ସେତେବେଳକୁ ସେ ଗଳାଯାଏ ପଙ୍କରେ ବୁଡ଼ି ଗଲେଣି । ଆଉ କିଛି ସମୟ ପରେ ହୁଏତ ସେ ପଙ୍କତଳେ ପୋତିହୋଇ ମରିବେ । ସେ ନିତାନ୍ତ କାତର ହୋଇ ରବନକୁ ଡାକି କହିଲେ, "ହେ ରବନ, ମୋତେ ରକ୍ଷା କର । ତୁ ମୋତେ ନ ରଖିଲେ ଆଜି ମୋ ଜୀବନ ଯିବ । ଶପଥ କରୁଛି, ଆଉ କେବେ ହେଲେ ମୁଁ ତୋର କିଛି ଅନିଷ୍ଟ କରିବ ନାହିଁ । ମୋତେ ଦୟାକର ।"

ରବନ୍ ଦେଖିଲା ଯେ ବଶପଙ୍କର ଯଥେଷ୍ଟ ଶିକ୍ଷା ହୋଇଗଲାଣି । ତାର ଆଦେଶରେ ଲୋକେ ଦୁଇଟା ପ୍ରକାଣ୍ଡ କାଠଗଡ଼ ଆଣି ଜଳାର ଗୋଟିଏ ପାଖରୁ ଭିତରକୁ ପକାଇ ଦେଲେ । ସେହି କାଠଗଡ଼ ଉପରେ ଦୁଇଜଣ ଯାଇ ବଶପଙ୍କୁ ପଙ୍କରୁ ଟେକି ଆଣିଲେ । ସେତେ-

ବେଳକୁ ତାଙ୍କ ଅବସ୍ଥା କହିଲେ ନ ସରେ । କାନ୍ଧଠାରୁ ପାଦଯାଏ ସେ ପଙ୍କରେ ଲଟପଟ ହୋଇଯାଇଥାନ୍ତି । ତାଙ୍କ ପୋଷାକ ଉପରେ ପଙ୍କ ଏପରି ଜମି ଯାଇଥାଏ ଯେ ସେ ଗୋଟିଏ ମାଟିର ପିତୁଳା ପରି ଦିଶୁଥାନ୍ତି । ତାଙ୍କ ମନରେ ଦୁଃଖ ଯେତିକ ରବିନ୍‌ର ଲୋକମାନଙ୍କ ମୁହଁରେ ସେତିକ ହସ ।

ଏହିପରି ଅବସ୍ଥାରେ ବିଶପଙ୍କୁ ସେମାନେ ନିଜ ଆଡ୍‌ଡାକୁ ଘେନି ଗଲେ । ସେଠାରେ ତାଙ୍କୁ ଧୋଇ ହେବା ପାଇଁ ପାଣି ଦିଆଗଲା । ତାଙ୍କ ପୋଷାକ ଗୁଡ଼ିକ ପଙ୍କରେ ଏକବାରେ ନଷ୍ଟ ହୋଇଯାଇ-ଥିଲା । ତେଣୁ ତାଙ୍କୁ ସାରେ ସବୁଜ ରଙ୍ଗର ପୋଷାକ ପିନ୍ଧିବାକୁ ଦିଆଗଲା । ବିଶପଙ୍କର ଉପାୟ ନ ଥିଲା । ତାକୁ ପିନ୍ଧି ସେ ରବିନ୍‌ର ଦଳର ଜଣେ ଲୋକ ପରି ଦେଖାଗଲେ ।

ରବିନ୍ କିଛି ମାତ୍ର ରାଗ ବା କ୍ରୋଧ ପ୍ରକାଶ ନ କରି ଧୀର ଭାବରେ କହିଲା, "ବିଶପ୍ ମହାଶୟ, ଆପଣଙ୍କୁ ନିଶ୍ଚୟ । କ୍ଷୁଧା ହେବଣି । ଆସନ୍ତୁ, ଆମମାନଙ୍କ ସଙ୍ଗେ ଭୋଜନରେ ଯୋଗ ଦିଅନ୍ତୁ ।"

ରବିନ୍‌କୁ ଉତ୍ତ୍ୟକ୍ତ କରିବାକୁ ବିଶପଙ୍କର ଆଉ ସାହସ ନ ଥିଲା । ସେ ଯେ ତାଙ୍କ ଜୀବନ ରକ୍ଷା କରିଛି, ସେଥିପାଇଁ ବିଶପ୍ ମନେ ମନେ କୃତଜ୍ଞତା ପ୍ରକାଶ କଲେ ଓ ରବିନ୍‌ର କଥା ଶୁଣି କହିଲେ, "ବାସ୍ତବରେ ମୋର କ୍ଷୁଧା ହେଉଅଛି ।"

ରବିନ୍ ହସି ହସି କହିଲା, "ତେବେ ଶୀଘ୍ର ଆସନ୍ତୁ । ଆଉ ବିଳମ୍ବ କାହିଁକି ? ଆଜ ଆମ୍ଭେମାନେ କେତୋଟି ହରିଣ ମାରି ରାନ୍ଧିଛୁ । ଆପଣ ଦେଖିବେ ରାଜାଙ୍କ ହରିଣ ଗୁଡ଼ିକର ମାଂସ ଖାଇବାକୁ କେଡ଼େ ସ୍ୱାଦୁ ।"

ସେଦିନ ମେରିଆନ୍ ଭଲରୂପେ ଖାଇବାର ବନ୍ଦୋବସ୍ତ କରିଥିଲା । ଖାଇବା ଜିନିଷସବୁ ଦେଖି ବିଶପଙ୍କ ପାଟିରୁ ଲାଳ ବୋହି

ଆସିଲା । କିନ୍ତୁ ସେ ଯେ ରାଜାଙ୍କ ହରିଣର ମାଂସ ଖାଇବେ ଏହା କେବଳ କ୍ଷଣି ଲୋକ କୁଆଡ଼େ ଉଡ଼ିଗଲା । ରାଜାଙ୍କ ହରିଣ ମାରିବା ଏକ ଭୀଷଣ ଅପରାଧ । ସେ ହରିଣର ମାଂସ ଖାଇଲେ ସେ ନିଶ୍ଚୟ ଅପରାଧରେ ଭାଗୀ ହେବେ । ସେ ଏହିପରି ଚିନ୍ତା କରିବାକୁ ଲାଗିଲେ ।

କିନ୍ତୁ ଯେତେବେଳେ ତରକାରିର ବାସନା ଚହଟିଗଲା,ବିଶପ୍ ରବିନ୍‌ର ଦଳର ଲୋକଙ୍କ ସଙ୍ଗେ ଖାଇ ବସିଲେ, ସେତେବେଳକୁ ତାଙ୍କର ମନର ଭାବ ବଦଳିଗଲା । ସେ ଅନ୍ୟମାନଙ୍କ ସହ ବେଶ ତୃପ୍ତିରେ ମାଂସ ତରକାରିର ସଦ୍‌ବ୍ୟବହାର କରିବାକୁ ଲାଗିଲେ ।

ଭୋଜି ସବୁ ସରୁ ସରୁ ରାତି ଅଧିକରୁ ଗଡ଼ିଗଲା । ବିଶପ୍‌ଙ୍କୁ ତାଙ୍କ ଘୋଡ଼ାରେ ବସାଇ ରବିନ୍‌ର କେତେଜଣ ଲୋକ ବଣ ବାହାରେ ଛାଡ଼ି ଦେଇଗଲେ ।

୨୭

# ଆଲାନ୍‌ର ବିବାହ

ଖରାଦିନର ସନ୍ଧ୍ୟାସମୟ । ବନମଧ୍ୟରେ ଗ୍ରୀଷ୍ମର ପ୍ରକୋପ ସେତେ ବେଶୀ ନ ଥାଏ । ରବିନ୍ ତାର ସ୍ତ୍ରୀକୁ କହିଲା, "ମେରିଆନ୍, ଆଜ ଏ ସନ୍ଧ୍ୟା ସମୟଟି କେଡ଼େ ଭଲ ଲାଗୁଛି । ଚାରିଆଡ଼ ବେଶ ନୀରବ । ଚାଲ ଟିକଏ ବୁଲିଯିବା ।"

ମେରିଆନ୍ ସେତେବେଳକୁ ଗୋଟିଏ ନୂଆ ପୋଷାକ ସିଲେଇ କରୁଥିଲା । ସେ କହିଲା, "ମୁଁ ଦେଖୁଛି, ତୁମ ଦେହରେ ପାଞ୍ଚଜଣଙ୍କର ବଳ । ଦିନଯାକ ବୁଲିବୁଲି ତୁମେ କ୍ଲାନ୍ତ ହେଉନାହଁ । ଆଚ୍ଛା,ମୋର ସିଲେଇ ସରିଗଲଣି । ଚାଲ, ବୁଲି ଆସିବା ।"

ଦୁହେଁଯାକ ବଣ ଭିତରେ ବୁଲିବାକୁ ଲାଗିଲେ । କେଉଁଠାରେ ପକ୍ଷୀର ମଧୁର ସ୍ୱର ଶୁଣାଯାଉଥାଏ; କେଉଁଠାରେ ଅବା ଫୁଲର ମଧୁର ସୁଗନ୍ଧ ଭାସି ଆସୁଥାଏ । ସୂର୍ଯ୍ୟଙ୍କର ସନ୍ଧ୍ୟାକାଳୀନ କିରଣ ପଡ଼ୁଥିବାରୁ ଗଛର ପତ୍ରସବୁ ଚକ୍‌ଚକ୍ କରୁଥାଏ ।

ମେରିଆନ୍ କହିଲା, "ବନରାଜ୍ୟ କେଡ଼େ ସୁନ୍ଦର । ଏଥିରେ ବୁଲିଲେ ମନୁଷ୍ୟ ସବୁ ଦୁଃଖ କଷ୍ଟ ପାଶୋରି ଦେବ ।"

ଏହିପରି ଦୁହେଁଯାକ କିଛି ସମୟ ବୁଲିବା ପରେ ରବିନ୍ ହଠାତ୍ ରହିଯାଇ କହିଲା, "ରହ । ଏଇ ଶୁଣ । କିଏ ଜଣେ ଗୀତ ଗାଉଛି । ଆହା, ଗୀତଟି କେଡ଼େ ମଧୁର !"

ଦୂରରୁ କାହାର ଗୀତ ଶୁଣା ଯାଉଥିଲା । ଗାୟକ ଜଣକ ସେ ସୁନ୍ଦର ଗାଇପାରେ ତାହା ଜଣା ପଡ଼ୁଥିଲା । ଅନ୍ୟ କୌଣସି

ଶବ୍ଦ ଶୁଣାଯାଉ ନ ଥିଲା । ସତେ ଯେପରି ବନର ପଶୁପକ୍ଷୀମାନେ ମଧ୍ୟ ସ୍ତବ୍ଧଭାବରେ ସେହି ଗୀତ ଶୁଣୁଥିଲେ ।

ରବନ୍ ଓ ମେରିଆନ୍ ଯେଉଁଆଡ଼ୁ ଗୀତର ସ୍ୱର ଆସୁଥିଲା, ସେହି ଆଡ଼କୁ ଚାଲିଲେ । କେତେକ ଗଛ ପାର ହୋଇ ସେମାନେ ଗୋଟିଏ ଖୋଲାସ୍ଥାନରେ ପହଞ୍ଚି ଦେଖିଲେ ଯେ କିଛି ଦୂରରେ ଜଣେ ଯୁବକ ହାତରେ ଖଣ୍ଡିଏ ଶ୍ରେଷ୍ଠ ବାଡ଼ି ଧରି ଗୀତ ଗାଉଅଛି । ପଦେ ଗୀତ ବୋଲି ସାରି ସେ ବାଡ଼ିଟି ହଲେଇ ତାଳ ଦେଉଛି । ରବନ୍ ଓ ମେରିଆନ୍ ଗୋଟିଏ ଗଛର ଉଢ଼ାଳରେ ରହି ଯୁବକର ଗୀତ ଶୁଣୁଥିଲେ; କିନ୍ତୁ ଯୁବକ ସେମାନଙ୍କୁ ଦେଖି ପାରୁନଥାଏ । କିଛି ସମୟ ପରେ ଯୁବକଟି ଧୀରେ ଧୀରେ ଚାଲିଗଲା । ରବନ୍ ଓ ମେରିଆନ୍ ଆଉ ତାକୁ ଦେଖି ପାରିଲେ ନାହିଁ । ରବନ୍ କହିଲା, "ମେରିଆନ୍, ଦେଖିଲ, ଲୋକଟି କେଡ଼େ ସୁଖୀ । ସଂସାରର କୌଣସି ଚିନ୍ତା ତାକୁ ସ୍ପର୍ଶ କରିଥିଲା ପରି ମନେ ହେଉନାହିଁ ।"

ଏହିପରି କଥାବାର୍ତ୍ତା ହେଉ ହେଉ ଦୁହେଁ ଯାକ ଅନେକ ଆଡ଼େ ବଣରେ ବୁଲି ବୁଲି ନିଜ ଆଡ୍ଡାକୁ ଫେରି ଆସିଲେ ।

ସପ୍ତାହକ ପରେ ଆଉ ଥରେ ରବନ୍ ଓ ମେରିଆନ୍ ଠିକ ସେହିଆଡ଼େ ବୁଲୁ ବୁଲୁ ସେହି ଯୁବକକୁ ଦେଖିଲେ । ସେ ଘାସ ଉପରେ ଲମ୍ବ ହୋଇ ଚୁପ୍ କରି ପଡ଼ିଥିଲା । କେବଳ ଯୁବକର ନାରଙ୍ଗୀରଙ୍ଗର ମୋଜା ଥିବାରୁ ସେଥିପ୍ରତି ସହଜେ ଦୃଷ୍ଟି ଆକୃଷ୍ଟ ହେଉଥିଲା । ଦୁହେଁଯାକ ଯୁବକର ନିକଟବର୍ତ୍ତୀ ହୋଇ ଦେଖିଲେ ଯେ ଯୁବକଟିର ମୁଖରେ ଆଦୌ ସରସତା ନାହିଁ ।

ରବନ୍ ଯୁବକଟିକୁ ଦେଖି ମେରିଆନ୍‌କୁ ଧୀର ସ୍ୱରରେ କହିଲା, "ବୋଧହୁଏ; ଏ ଲୋକଟିକୁ ସେହି ଗୋଟିକ ଗୀତ ଜଣା ଅଛି । କାହିଁ, ଆଜ ତ ଗୀତ ଗାଉନାହିଁ ?"

ମେରିଆନ୍ କହିଲା, "ତା ନୁହେଁ । ଦେଖ, ତାର ମୁହଁ ଉପରେ ଶୁଖି ଯାଇଛି । ହୁଏତ ଯୁବକର କୌଣସି ବିପଦ ଘଟିଅଛି । ମନ ଭଲ ନଥିଲେ ଗୀତ କାହୁଁ ବାହାରିବ ?"

ଦୁହେଁ ଯାଇ ଯୁବକର ଖୁବ ନିକଟକୁ ଗଲେ । ପାଦ ଶବ୍ଦ ଶୁଣି ସେ ଉଠିପଡ଼ି ଏ ଦୁହିଙ୍କ ଆଡ଼କୁ ସନ୍ଦେହ ଦୃଷ୍ଟିରେ ଅନାଇଲା; ତା ପରେ ପଚାରିଲା, "ତୁମେ କଅଣ ଚାହଁ ?" ଉଇନ୍ ଉତ୍ତର କଲା, "ଆମେ କିଛି ଚାହୁଁ ନାହିଁ । ମାତ୍ର ତୁମେ ଏପରି ଦୁଃଖରେ ଏଠାରେ ଚାଲି ପଡ଼ିଥିବାର ଦେଖି ଆମେ ଆସିଛୁ । ତୁମ ଦୁଃଖର କାରଣ ଜାଣି ପାରିଲେ ତାହା ଦୂର କରିବାକୁ ଚେଷ୍ଟା କରିବୁ । କେତେ ଦିନ ତଳେ ଆମେ ତୁମକୁ ଏହିଠାରେ ଦେଖିଥିଲୁ । ସେତେବେଳେ ତୁମେ ମନ ଖୁସିରେ ଗୀତ ଗାଉଥିଲ । କୌଣସି କଥାକୁ ତୁମର ଚିନ୍ତା ନ ଥିଲା । ଆଜ ସତେ ଯେପରି ପୃଥିବୀର ଦୁଃଖ ତୁମଠାରେ ଠୁଳ ହୋଇଛି । ଏଥିର କାରଣ କଅଣ, ଆମେ ବୁଝି ପାରୁ ନାହୁଁ ।"

ଯୁବକ ଉଦାସୀନ ଭାବରେ ଉତ୍ତର କଲା, "ଯଦି ତୁମେ ଜାଣିବାକୁ ଚାହଁ, ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ ମୋର ଦୁଃଖର ସୀମା ନାହିଁ ।"

ଉଇନ୍ ପଚାରିଲା, "ଆମେ କିଛି ସାହାଯ୍ୟ କରି ପାରିବୁ ନାହିଁ ?"

ଯୁବକ ଟିକିଏ ଚିନ୍ତା କଲା ପରି ରହି କହିଲା, "ନା, ଦୁନିଆରେ ମୋତେ ସାହାଯ୍ୟ କରି ପାରିବା ଭଳି ଲୋକ କେହି ନାହିଁ । ସପ୍ତାହକ ତଳେ ମୋର ଏ ଅଞ୍ଚଳର ସବୁଠାରୁ ସୁନ୍ଦରୀ ଜଣେ ଯୁବତୀ ସଙ୍ଗେ ବିବାହ ହେବାର ସ୍ଥିର ହୋଇଥିଲା । ତାର

ନାମ ଏଲେନ୍ । ଅଳ୍ପ ଦିନ ମଧ୍ୟରେ ଆମର ବିବାହ ହୋଇଥାନ୍ତା । ସଂସାରଟା ସେଥିପାଇଁ ମୋତେ ସୁଖମୟ ବୋଧ ହେଉଥିଲା । କିନ୍ତୁ ଆଜି ସକାଳେ ସମ୍ବାଦ ପାଇଲି ଯେ ଜଣେ ଜମିଦାର ସହିତ ଏଲେନ୍‌ର ବିବାହ ସ୍ଥିର ହୋଇଛି । ଭାରି ବିଭ୍ରାଟ । ଏ ଖବର ପାଇଲା କ୍ଷଣି ମୋ ମୁଣ୍ଡରେ ବଜ୍ର ପଡ଼ିଲା । ମୋର ଦୁଃଖ କଥା ଆଉ କହିବି କଅଣ ?"

ମେରିଆନ୍ ଧୀର ସ୍ୱରରେ ପଚାରିଲା, "ଏଲେନ୍ କଅଣ ସେହି ଜମିଦାରକୁ ଭଲ ପାଏ ?"

ଯୁବକ ଉତ୍ତର କଲା, "ନା, ନା, ଆଦୌ ଭଲ ପାଏ ନାହିଁ । ସେ ମଧ୍ୟ ମୋରି ପରି ଦୁଃଖ ଭୋଗୁଛି ।"

ରବିନ୍ ପଚାରିଲା, "ବନ୍ଧୁ, ମୁଁ କିଛି ବୁଝି ପାରୁନାହିଁ । ଆମକୁ ସବୁ କଥା ଖୋଲି କରି କୁହ । ଆଚ୍ଛା, ତୁମର ନାମ କଅଣ ?"

ଯୁବକ—ମୋର ନାମ ହେଉଛି ଆଲ୍ଲନ-ଏ-ଡେଲ୍ । ଲୋକେ ମୋତେ ଆଲ୍ଲନ୍ ବୋଲି ଡାକନ୍ତି ।

ରବିନ୍—ତାହା ହେଲେ ଏଲେନ ତୁମକୁ ବିଭା ନ ହୋଇ ସେ ଜମିଦାରକୁ କାହିଁକି ବିଭା ହେବାକୁ ବସିଛି ?

ଆଲନ୍—ପ୍ରକୃତ କଥା ହେଉଛି, ଏଲେନର ବାପା ବର୍ତ୍ତମାନ ଭୟଙ୍କର ଅର୍ଥାଭାବରେ ପଡ଼ିଛନ୍ତି । ଜମିଦାରଟି ହେଉଛି ଘୋର ଧନୀ । ଏଲେନକୁ ତା ସାଥିରେ ବିଭା ଦେଲେ ସେ ତାର ବାପାକୁ ବହୁତ ଟଙ୍କା ଦେବ ବୋଲି କହିଛି ।

ମେରିଆନ—ତେବେ ଏଲେନର ବାପାଙ୍କର ଟଙ୍କା ଦରକାର ବୋଲି ଏଲେନ୍‌କୁ ସେ ଜମିଦାର ସାଥିରେ ବିଭାହେବାକୁ ପଡ଼ୁଛି । ଏହାଠାରୁ ବଳି ଲଜ୍ଜାର କଥା କଅଣ ଅଛି ?

ରବନ୍—ଆଚ୍ଛା, କେଉଁଠାରେ ବାହାଘର ହେବ ? ·
ଯୁବକ—ନଟିଙ୍ଗହାମର ଗୋଟାଏ ଗିର୍ଜାରେ ।

ମେଚଆନ୍ ରବନ୍‌କୁ ଲକ୍ଷ୍ୟକରି କହିଲା, "ଆମେ ନିଶ୍ଚୟ ଏହି ଯୁବକକୁ ସାହାଯ୍ୟ କରିବା । ଯେଉଁ ଦୁଇଜଣ ପରସ୍ପରକୁ ଭଲ ପାଉଛନ୍ତି ସେମାନେ ବିବାହବନ୍ଧନରେ ଚିରଦିନ ରହିବା ଉଚିତ । ଖାଲି ଜଣେ ଧନୀ ଜମିଦାରକୁ ସନ୍ତୁଷ୍ଟ କରିବାପାଇଁ ଦୁଇଜଣ ପ୍ରେମିକ ପ୍ରେମିକାଙ୍କ ଜୀବନ ବଳି ଦିଆ ଯାଇ ନ ପାରେ । ଆମେ ନିଶ୍ଚୟ ଏହାର ପ୍ରତିକାର କରିବା ।"

ରବନ୍ ଦୃଢ଼ ସ୍ୱରରେ ଉତ୍ତର ଦେଲା, "ନିଶ୍ଚୟ, ଏହାର ପ୍ରତିକାର ଆମକୁ କରିବାକୁ ହେବ ।" ତା ପରେ ଯୁବକକୁ ଲକ୍ଷ୍ୟକରି କହିଲା, "ତୁମେ ଚିନ୍ତା କରନାହିଁ । କାଲି ଯେଉଁ ବିବାହ ହେବାର କଥା ହୋଇଛି, ତାହା ବନ୍ଦ ହେବ । ମାତ୍ର ତୁମକୁ ଗୋଟିଏ କଥା କରିବାକୁ ହେବ । ଯଦି ଏଲେନ ରାଜିହୁଏ, ତେବେ ତୁମେ ଆସି ଆମ ଦଳରେ ଯୋଗଦେବ । ତୁମେ ଓ ଏଲେନ୍ ଆମ ସଙ୍ଗରେ ସୁଖରେ ରହିବ । ମେଚଆନ୍ ଏଲେନକୁ ସଖୀରୂପେ ପାଇ ସୁଖୀ ହେବ ।"

ଯୁବକ ଏହାଶୁଣି କହିଲା, "ମୁଁ ଅନୁମାନ କରିଥିଲି ଯେ ତୁମେ ହେଉଛ ସେହି ବିଖ୍ୟାତ ରବନହୁଡ଼ । ବିବାହ ବିଷୟରେ ହତାଶ ହୋଇ ମୁଁ ତୁମ ଦଳରେ ଯୋଗ ଦେବି ବୋଲି ଆଗରୁ ସ୍ଥିର କରିଥିଲି ।"

ରବନ୍—ତାହା ହେଲେ ଆସ, ଆମ ସାଥିରେ ଆମ ଆଡ୍ଡାକୁ ଯିବ । ମୁଁ ସେଠାରେ ତୁମକୁ ମୋ ଦଳର ଲୋକଙ୍କ ସଙ୍ଗେ ପରିଚୟ କରାଇ ଦେବି ।

ଦିବନ୍ ଓ ମେରିଆନଙ୍କ ସହିତ ଯୁବକଟି ଶେରଉଡ଼ ଜଙ୍ଗଲରେ ଥିବା ଆଡ୍‌ଡ଼ାରେ ପହଞ୍ଚିଲା । ରବିନ୍ ତାର ସାଥିମାନଙ୍କୁ ଡାକି ସେମାନଙ୍କ ସଙ୍ଗେ ଆଲନର ପରିଚୟ କରାଇଦେଲା ଏବଂ ତାର ବିବାହ ଯେପରି ଏଲେନ ସହିତ ହେବ ସେ ବିଷୟ ପ୍ରକାଶ କଲା । ପ୍ରଥମତଃ ଏଲେନର ଯେଉଁ ଜମିଦାର ସହିତ ବିବାହ ତା ପରଦିନ ହେବାର କଥା, ତାହା ବନ୍ଦ କରିବାକୁ ପଡ଼ିବ । ରବିନ ସେତେବେଳ ପର୍ଯ୍ୟନ୍ତ କୌଣସି ନିର୍ଦ୍ଦିଷ୍ଟ ଉପାୟ ସ୍ଥିର କରିନଥିଲା । ତେଣୁ ସେ ତାର ସାଥୀମାନଙ୍କୁ କୌଣସି ପରାମର୍ଶ ଦେଇ ପାରିଲା ନାହିଁ ।

ପରେ ରବିନ୍ ଏକାକୀ କିଛି ସମୟ ବସି ଚିନ୍ତାକରି ନିଜର ଉପାୟ ସ୍ଥିର କଲା ଓ ସାଥୀମାନଙ୍କୁ କଅଣ କରିବାକୁ ହେବ ସେ ବିଷୟରେ ପରାମର୍ଶ ଦେଲା ।

ପରଦିନ ପ୍ରାତଃକାଳରେ ନଟିଙ୍ଗହାମର ଗୋଟିଏ ଗୀର୍ଜାରେ ଘଣ୍ଟି ବାଜି ଉଠିଲା । ସହରର ଲୋକେ ଏଥିରୁ ବୁଝିଲେ ଯେ ଗୀର୍ଜାରେ ବିବାହ ଉତ୍ସବ ହେବ । ଅଳ୍ପ ସମୟ ଭିତରେ ଗୀର୍ଜାରେ ଲୋକେ ପୂରିଗଲେ । ସେମାନେ ଗୀର୍ଜାର ଆସନ ସବୁ ଅଧିକାର କରି ବସିଗଲେ । ସେହି ପୁରୁଣା ଗୀର୍ଜାରେ କେବେହେଲେ ପୂର୍ବରୁ ଏପରି ଲୋକଗହଳି ହୋଇ ନ ଥିଲା । ମାତ୍ର ସେତେବେଳେ କେହି ଏହି ଲୋକଗହଳିର ପ୍ରକୃତ କାରଣ ଜାଣିପାରି ନଥିଲେ । ଅନେକେ ମନେ କରିଥିଲେ ଯେ ବିବାହ ଉତ୍ସବ ଦେଖିବା ପାଇଁ ସହରର ଲୋକେ ଆସିଛନ୍ତି । କିନ୍ତୁ ପ୍ରକୃତରେ ଏହି ଦର୍ଶକମାନଙ୍କ ମଧ୍ୟରେ ସହରର ଲୋକ କେହି ନଥିଲେ କହିଲେ ଚଳେ । ସେମାନେ ହେଉଛନ୍ତି—ଛଦ୍ମବେଶଧାରୀ ରବିନର ଦଳର ଲୋକେ ।

ଯଥା ସମୟରେ ବଧୂବେଶରେ ଏଲେନ୍ ଗୀର୍ଜା ମଧ୍ୟରେ ପ୍ରବେଶ କଲା । ବିବାହ ପୋଷାକରେ ତାର ସୌନ୍ଦର୍ଯ୍ୟ ଫୁଟି ଉଠୁଥାଏ, କିନ୍ତୁ

ତାର ମୁହଁରେ ବିଷାଦ କାଳିମା ବୋଲି ହୋଇଯାଇଥାଏ, ଓଠରେ ଟିକିଏ ସୁଦ୍ଧା ହସ ନଥାଏ । ସେ ଜାଣିଥିଲା ଯେ ଜଣେ ଜମିଦାରର ଧନ ଆଗରେ ତାର ଜୀବନକୁ ବଳି ଦିଆଯିବାର ଆୟୋଜନ ହୋଇଛି । ଏଥିରେ ତା ମୁହଁରେ ସରସତା ଆସିବ କାହୁଁ ?

ଏଲେନ୍ ଓ ତାର ପିତା ବିବାହ ବେଦୀ ଆଡ଼କୁ ଅଗ୍ରସର ହେଉଥିବା ବେଳେ ଜଣେ କୁତ୍ସିତ, ଛିନ୍ନବସ୍ତ୍ର ପରିବ୍ରତ ବ୍ୟକ୍ତି ତାଙ୍କ ପାଖକୁ ଦୌଡ଼ିଯାଇ କହିଲା, "ମୋର ଏଠାରେ ଉପସ୍ଥିତ ହେଲୁ କନ୍ୟାର ମଙ୍ଗଳ ହେବ । ମୁଁ ତାଙ୍କର ଶୁଭକାମନା କରୁଛି ।"

ସେ କାଳରେ ଲୋକଙ୍କର ବିଶ୍ୱାସ ଥିଲା ଯେ ବ୍ରହ୍ମଯୋଗୀ, ବିବାହବେଦୀ ପାଖରେ ଉପସ୍ଥିତ ଥିଲେ ବରକନ୍ୟା ସୁଖରେ ଜୀବନ କଟାନ୍ତି । ତେଣୁ ଏହି ଲୋକଟିକୁ ଏପରି ସମୟରେ ଦେଖି କେହି ବିସ୍ମିତ ହେଲେ ନାହିଁ ।

ଜମିଦାର ବିବାହ ପୋଷାକ ପିନ୍ଧି ବରବେଶରେ ବେଦୀରେ ବସିଥିଲେ । ଏହି କୁତ୍ସିତ ଲୋକଟି କନ୍ୟା ଓ କନ୍ୟାପିତା ସହିତ ବେଦୀ ଉପରକୁ ଗଲା । ତାହାକୁ ଦେଖି ବର ମନେ ମନେ ବିରକ୍ତ ହୋଇ ଭାବିଲେ, "ଲୋକଟା କି କୁତ୍ସିତ ! ତାର ପୁଣି ଏଡ଼େ ସାହସ ! ମୋର ଭାବୀପତ୍ନୀ ସାଥିରେ କଥାବାର୍ତ୍ତା କରିବାକୁ ଉଦ୍ୟତ । ଏପରି ଗୋଟାଏ ଶଇତାନ କାହୁଁ ଆସିଲା ?" କ୍ରୋଧରେ ତାଙ୍କ ମୁହଁ ଲାଲ ପଡ଼ିଗଲା; ହାତ ମୁଠାମୁଠା ହୋଇଗଲା । ମାତ୍ର ସେ ନିଜକୁ ସମ୍ଭାଳି ନେଲେ । ବିବାହ ବେଦୀରେ ବରବେଶରେ ବସି ଗୋଟାଏ ବାହାର ଲୋକ ସାଥିରେ କଳି କରନ୍ତେ ବା କିପରି ? ସେ ଚୁପ୍ କରି ରହିଲେ ଓ କନ୍ୟାଆଡ଼କୁ ଚାହିଁ ଟିକିଏ ଆନନ୍ଦିତ ହୋଇ ଉଠିଲେ ।

ସେହି କୁତ୍ସିତ ଲୋକଟା ଜମିଦାରଙ୍କ ବେକରେ ହାତ ପକାଇ ଦୃଢ଼ ଭାବରେ ଧରିବାକୁ ବସିଲା । ଜମିଦାର ଏ ଅତ୍ୟାଚାର ସହି ନ ପାରି କହିଲେ, "ମୋ ଦେହରୁ ହାତ କାଢ଼ି ନେ ।"

ଲୋକଟା ହଠାତ୍ ତା ପୋଷାକ କାଢ଼ି ଫିଙ୍ଗିଦେଲା । ତା ତଳୁ ଦେଖାଗଲା ସବୁଜ ରଙ୍ଗର ପୋଷାକ । ଏ କୁତ୍ସିତ ଲୋକଟି ଯେ ରବିନ୍ ହୁଡ୍, ଏଥିରେ କିଛି ସନ୍ଦେହ ରହିଲା ନାହିଁ ।

ରବିନ୍‌ଠାରୁ ସଙ୍କେତ ପାଇ ତା ଦଳର ଲୋକେ ପାଖକୁ ଚାଲି ଆସିଲେ । ଯେଉଁ ବିଶପ ବିବାହ ମନ୍ତ୍ର ପାଠ କରିବାକୁ ଆସିଥିଲେ ସେ ଏ ଘଟଣା ଦେଖି ସ୍ତମ୍ଭିତ ହୋଇଗଲେ । ରବିନ୍ ତାର ଶିଙ୍ଗା ଫୁଙ୍କିଲା । ତତ୍‌କ୍ଷଣାତ୍ ତାର ଛଅଜଣ ସାଥୀ ଧନୁଶର ଧରି ଗୀର୍ଜାର ଦ୍ୱାରରେ ଛିଡ଼ା ହୋଇଗଲେ । ଏହି ସମୟରେ ଜଣେ ଯୁବକ ଦ୍ୱାର ଦେଶରେ ଉପସ୍ଥିତ ହେଲା । ଧନୁର୍ଦ୍ଧରମାନେ ତାକୁ ଭିତରକୁ ଛାଡି ଦେଲେ । ସେ ଧୀର ଭାବରେ ବେଦୀ ଉପରକୁ ଚାଲିଆସିଲା । ଏହି ଯୁବକ ଆଲନ୍ ଛଡ଼ା ଆଉ କେହି ନୁହେଁ । ଏଲେନ୍ ନିଜର ପ୍ରେମିକକୁ ଦେଖି ଆନନ୍ଦରେ ଚିତ୍କାର କରି ଉଠିଲା ।

ରବିନ୍ କହିଲା, "ବିଶପ ମହାଶୟ, ଆପଣ ଏଠାରେ ମନ୍ତ୍ରପାଠ କରି ଦୁଇଜଣଙ୍କର ବିବାହ ସମ୍ପାଦନ କରିବାକୁ ଆସିଥିଲେ । କିନ୍ତୁ ସେ ବିବାହରେ କେହି ସୁଖୀ ହୋଇ ପାରି ନଥାନ୍ତେ । କନ୍ୟା ଯାହାକୁ ହୃଦୟ ଦେଇ ଭଲପାଏ, ତାକୁ ନିଶ୍ଚୟ ବିବାହ କରିବ । ସେ କାହାକୁ ବିବାହ କରିବାକୁ ଇଚ୍ଛା କରେ, ତାକୁ ଆପଣ ପଚାରନ୍ତୁ ।"

ବିଶପ୍ କ୍ରୁଦ୍ଧ ହୋଇ କହିଲେ, "ଏପରି ପଚାରିବା ବିଧି ନୁହେଁ ।

ରବିନ୍ କହିଲା, "ଆପଣ ଆଗେ ପଚାରନ୍ତୁ ।"

ବିଶପ୍ ଟିକିଏ ଇତସ୍ତତଃ ହୋଇ ଏଲେନ୍ ଆଡ଼କୁ ଚାହିଁ ପଚାରିଲେ, "ତୁମେ କାହାକୁ ଭଲପାଅ ?"

ଏଲେନ୍ ତତ୍‌କ୍ଷଣାତ୍ ଉତ୍ତର କଲା, "ଏହି ଯୁବକ ଆଲାନକୁ ମୁଁ ବିବାହ କରିବାକୁ ଇଚ୍ଛା କରେ ।"

ବିଶପ୍‌ଙ୍କ ବୁଦ୍ଧି ହଜିଗଲା । ସେ କଅଣ କରିବେ ସ୍ଥିର କରି ନପାରି କହିଲେ, "ତେବେ ମୁଁ ଏ ବିବାହରେ ପୌରୋହିତ୍ୟ କରି ପାରିବି ନାହିଁ । ମୁଁ କେବେ ଏପରି·········" ।

ବିଶପ୍‌ଙ୍କୁ ଆଉ କିଛି କହିବାକୁ ନ ଦେଇ ରବିନ୍ କହିଲା, "ବେଶ୍ ଭଲକଥା । ସାଥୀମାନେ ଆଗେଇ ଆସ ।"

ସଙ୍ଗେ ସଙ୍ଗେ ରବିନ୍‌ର ସାଥୀମାନେ ଆଗକୁ ଆସି ବିଶପ୍‌ଙ୍କୁ ଗୋଟାଏ ଆଡ଼କୁ ଠେଲି ଦେଲେ । ସେ ଅବସ୍ଥା ବୁଝିପାରି ପଳାଇ-ବାକୁ ବସିବାରୁ ଦୁଇଜଣ ତାଙ୍କ ଉପରେ ବସିଗଲେ । ତାଙ୍କର ଆଉ ହଲଚଲ ହେବାର କିଛି ଶକ୍ତି ରହିଲା ନାହିଁ ।

ରବିନ୍ ଟକ୍‌କୁ ଡାକି କହିଲା, "ତୁମେ ଆମ ଦଳର ପୁରୋହିତ ଆସ, ମନ୍ତ୍ର ପାଠ କରି ଏଲେନ ଓ ଆଲାନଙ୍କର ବିବାହ ବାନ୍ଧି ବଢ଼ାଅ ।"

ଟକ୍ ପୁରୋହିତ ଆସନରେ ବସି ମନ୍ତ୍ରପାଠ କଲା । ବିଶପ୍ ଲଜ୍ଜ ଓ ଅପମାନରେ ସଢ଼ିଗଲେ । ସେ ବରକନ୍ୟାଙ୍କୁ କେବଳ ଚାହିଁ ରହିଲେ ।

ବିବାହ ଶେଷ ହେଲା । ବରକନ୍ୟାଙ୍କର ଆନନ୍ଦ କହିଲେ ନ ସରେ । ଏଲେନର ମନରେ ଯେଉଁ ଘୋର ଆଶଙ୍କା ଥିଲା, ସେ କୁଆଡ଼େ ଉଭେଇଗଲା । ବିବାହ ଶେଷ ହେବା ପରେ ରବିନ ଜମିଦାରଙ୍କୁ ମୁକ୍ତ କରି ଦେଲା । ସେ ଶିଶୁପାଳ ହୋଇ ପଳାଇଗଲେ । ତାଙ୍କର ଏତିକି ଆଶ୍ୱାସନା ଯେ ଏଲେନକୁ ହରାଇବା ସଙ୍ଗେ ସେ ନିଜ ଜୀବନକୁ ହରାଇ ନାହାନ୍ତି ।

———

# କେଉଟ ରବିନ୍

ରବିନ୍ ଓ ମେରିଆନ୍ ଶେରଉଡ୍ ଜଙ୍ଗଲରେ ରହି କଠୋର ପରିଶ୍ରମ କରୁଥିବାରୁ ସେମାନଙ୍କୁ କି ଖରା କି ଶୀତ କିଛି ବାଧେ ନାହିଁ । ମାତ୍ର ବର୍ଷେ ଏପରି ଶୀତ ଆରମ୍ଭ ହେଲା ଯେ ବଣରେ ଦିନ କଟାଇବା ସେମାନଙ୍କ ପକ୍ଷରେ କଷ୍ଟକର ହେଲା । ଆରମ୍ଭରୁ ଶୀତ ଏଡ଼େ ପ୍ରବଳ ହେବାରୁ ରବିନ୍ ଓ ତାର ସାଥୀମାନେ ଭାବିଲେ ଯେ ଶେର୍‌ଉଡ୍‌ରେ ଶୀତ ଦିନଯାକ କଟାଇବା ଅସମ୍ଭବ ହେବ । ତେଣୁ ସେମାନେ କେତେକ ମାସ ପାଇଁ ଅନ୍ୟ କୁଆଡ଼େ ଯିବାକୁ ସ୍ଥିର କଲେ ।

କ୍ରମେ ଜଙ୍ଗଲର ଗଛମାନଙ୍କରୁ ପତ୍ରସବୁ ଝଡ଼ି ପଡ଼ିଲା । ରାତି କଥା ଥାଉ, ଦିନରେ ମଧ୍ୟ ଶୀତରେ ଦେହ ଥରି ଉଠିଲା । ବାହାରେ ଗଛମୂଳେ କିପରି ସେମାନେ ରହିପାରିବେ ? ତେଣୁ ରବିନ୍‌ର ଅନେକ ସଙ୍ଗୀ ଗୋପନରେ ନିଜ ନିଜ ଘରକୁ ଚାଲିଗଲେ । କିଏ ବା ନିଜର ବନ୍ଧୁବାନ୍ଧବ ଘରକୁ ଗଲେ । ରବିନ୍ ଓ ମେରିଆନ୍ କୌଣସି ଗୋଟାଏ ଖୁବ୍ ଦୂରସ୍ଥାନକୁ ଚାଲି ଯିବାକୁ ସ୍ଥିର କଲେ । ଆଖ ପାଖରେ ରବିନ୍‌କୁ ଅନେକେ ଚିହ୍ନି ପାରିବାର ଭୟ ଥିଲା । କିନ୍ତୁ ଦୂର ସ୍ଥାନରେ କିଏ କାହାକୁ ଜାଣେ ?

ରବିନ୍ ଓ ମେରିଆନ୍‌ଙ୍କ ମଧ୍ୟରେ ବିଚାର ପଡ଼ିଲା ।

ରବିନ୍—ମୁଁ ଭାବୁଛି, ଥରେ ସମୁଦ୍ରରେ ବୁଲିଆସିବି ।

ମେରିଆନ୍—ତୁମେ ଯେ ଜାହାଜ ଚଳାଇ ସମୁଦ୍ରରେ ବୁଲି ପାରିବ, ଏକଥା ମୁଁ କଳ୍ପନା ସୁଦ୍ଧା କରି ପାରୁନାହିଁ ।

ରବନ୍—ଏକଥା ସତ ଯେ ମୁଁ କେବେ ଜାହାଜ ଚଳାଇ ନାହିଁ ତେବେ ଯାହା କରିନାହିଁ ତା କରିବାରେ କିଛି ଦୋଷ ଅଛି କି ? ଥରେ ଜାହାଜ ଚଳାଇବାର ଚେଷ୍ଟା କରି ଦେଖେଁ ।

ଏହିପରି ବିଚାର କରି ରବନ୍ ମେରିଆନ୍ ସଙ୍ଗେ ଯାଇ ପୂର୍ବ ଉପକୂଳର ଗୋଟିଏ ଅତି ଶ୍ରେଷ୍ଠ କେନ୍ଦ୍ର ଗାଁରେ ପହଞ୍ଚିଲା । ସେଠାରେ ଦୁହେଁ ରହିବାପାଇଁ ବସାଘର ଖୋଜି ଖୋଜି ଶେଷରେ ଜଣେ ବିଧବା ଘରେ ଉପସ୍ଥିତ ହେଲେ । ରବନ୍ ବିଧବା ବୁଢ଼ୀକୁ କହିଲା, "ଆମଘର ଏଠାରୁ ଦକ୍ଷିଣରେ ଅନେକ ଦୂରରେ । ମୋର ନାଆଁ ହେଉଛି ସାଇମନ୍ । ଆଉ ଏ ମୋର ସ୍ତ୍ରୀ । ଆମର ବ୍ୟବସାୟ ହେଉଛି ମାଛ ଧରି ବିକିବା । ଆମକୁ ଏଠାରେ ରହିବାକୁ ଜାଗା ଦେଇ ପାରିବ ?"

ବିଧବା ଅର୍ଥାଭାବରେ ପଡ଼ିଥାଏ । ସେ ଦେଖିଲା ଯେ ଦୁହିଁଙ୍କୁ ଘରେ ରଖିଲେ କିଛି ଟଙ୍କା ମିଳିଯିବ । ତେଣୁ ସେ ଆନନ୍ଦରେ ସାଇମନ ଓ ତାର ସ୍ତ୍ରୀକୁ ଘରେ ସ୍ଥାନ ଦେଲା ।

ରବନ୍ ଓ ମେରିଆନ୍ କଠିନ ପରିଶ୍ରମ କରିବାରେ ଅଭ୍ୟସ୍ତ । ତେଣୁ ସାଇମନର ସ୍ତ୍ରୀ ଘରକାମରେ ବିଧବାକୁ ସାହାଯ୍ୟ କରୁଥାଏ ଓ ସାଇମନ ତା ପାଇଁ ଯେ କୌଣସି ବାହାର କାମ କରିଦିଏ । ବୁଢ଼ୀ ଦେଖିଲା ଯେ ଏପରି ଦୁଇଜଣଙ୍କୁ ଘରେ ରଖିବା ଦ୍ୱାରା ତାର ବହୁତ ଲାଭ । ଏକେ ତ ଟଙ୍କା ମିଳୁଛି, ତା ଛଡ଼ା ତା କାମରେ ମଧ୍ୟ ସାହାଯ୍ୟ ମିଳୁଛି । ସେ ଅନେକ ଘଟଣାରୁ ବୁଝି ପାରିଲା ଯେ ସାଇମନ ବଡ଼ ସଚ୍ଚା ଲୋକ । କାହାରିଠାରୁ ପଇସାଟାଏ ମଧ୍ୟ ଠକିନେବା ତାର ସ୍ୱଭାବ ନୁହେ ।

ଦିନେ ସନ୍ଧ୍ୟାବେଳେ ବିଧବା ସାଇମନକୁ କହିଲା, "ସାଇମନ, ମୋର ତମକୁ ଗୋଟିଏ କଥା କହିବାକୁ ଅଛି । ମୋର ଗୋଟିଏ

ମାଛଧରା ନୌକା ଅଛି । ସେଥିରେ ବସି ମୋର ସ୍ୱାମୀ ସମୁଦ୍ରକୁ ଯାଇ ମାଛ ମାରୁଥିଲେ । ତାଙ୍କର କାଳ ହେବା ପରେ ମୁଁ ନୌକାଟିକୁ ଏଠାର କେଉଟମାନଙ୍କୁ ଦେଉଛି । ସେମାନେ ଏଥିରେ ଯାଇ ଯେଉଁ ମାଛ ମାରିବେ, ସେଥିରୁ ଗୋଟିଏ ଭାଗ ମୋତେ ଦେବାର କଥା । କିନ୍ତୁ ଲୋକ ଗୁଡ଼ାକ ବଡ଼ ଅବିଶ୍ୱାସୀ । ମାଛ ପଡ଼ିଲେ ନାହିଁ, କିମ୍ବା ଖୁବ୍ କମ ମାଛ ପଡ଼ିଲେ ବୋଲି କହି ମୋ ଭାଗ ଠକି ଖାଉଛନ୍ତି । ହେଲେ ମୁଁ କଅଣ ବା କରି ପାରିବ ? ଏକେ ବୁଢ଼ୀ ସ୍ତ୍ରୀଲୋକ, ପୁଣି ବିଧବା । ମୋର ନିଜର କିଏ ଅଛି ଯେ ଏମାନଙ୍କଠାରୁ ମୋ ଭାଗ ଆଦାୟ କରି ଆଣିବ ? ଏ ଲୋକଙ୍କୁ ମୁଁ ପାରୁନାହିଁ ।"

ରବିନ୍ ମନରେ ବିଧବା ପ୍ରତି ସହାନୁଭୂତି ଆସିଲା । ସେ ବୁଝିପାରିଲା ଯେ ବୁଢ଼ୀକୁ ଅସହାୟ ଦେଖି ଲୋକେ ଠକୁଛନ୍ତି । ବିଧବାକୁ ସାହାଯ୍ୟ କରିବା ତାର ଇଚ୍ଛା, କିନ୍ତୁ କିପରି କରି ପାରିବ ସେ ଭାବି ପାରିଲା ନାହିଁ ।

ବିଧବା ରବିନ୍ ଆଡ଼କୁ କଛି ସମୟ ଚାହିଁ କହିଲା, "ସାଇମନ୍, ତୁମେ ତ କେଉଟଘର ପୁଅ, ମାଛ ମାରି ପାରିବ । ତୁମେ ଯେବେ ଏ ନୌକା ନେଇ ମାଛ ମାରିବ ତେବେ ଭଲ ହୁଅନ୍ତା । ମୋ ଭାଗ ମୁଁ ପାଆନ୍ତି । ମୁଁ ଏତେଦିନ ହେଲା ତୁମକୁ ଦେଖିଲଣି । ତୁମଭଳି ସଚ୍ଚା ଲୋକ ମିଳିବ ନାହିଁ । କଅଣ କହୁଛ ?"

ରବିନ୍ ମେରିଆନ୍ ଆଡ଼କୁ ଚାହିଁଲା । ରବିନ୍‌ର ମନର କଥା ତାକୁ ଅଛପା ରହିଲା ନାହିଁ । କେଉଟ ଗାଁରେ ନିଜକୁ କେଉଟ ବୋଲି ପରିଚୟ ଦେଲେ ସହଜେ ଘର ଜାଗା ମିଳିବ ବୋଲି ସିନା ରବିନ୍ ମାଛ ଧରିଲି ବୋଲି କହି ଦେଇଥିଲା । ଏବେ କିପରି କହିବ ଯେ ସେ ମାଛଧରାର ନାମଗନ୍ଧ ଜାଣେ ନାହିଁ ?

ରବିନ୍ ସେଦିନ କିଛି ଉତ୍ତର ଦେଲା ନାହିଁ ।

ସତରେ ସ୍ୱାମି ସ୍ତ୍ରୀ ଦୁହିଁଙ୍କ ଭିତରେ ବିଗ୍ରହ ପଡ଼ିଲା । ରବିନ୍ କହିଲା, "ଦେଖ, ମୁଁ ମାଛ ଧରି ଚଳେଁ ବୋଲି କହୁଛୁ । ବର୍ତ୍ତମାନ ମାଛ ଧରି ଜାଣେ ନାହିଁ ବୋଲି କହିଲେ ଚଳିବ ନାହିଁ । ବୃତ୍ତି କଥାରେ ମୋତେ ରାଜି ହେବାକୁହିଁ ପଡ଼ିବ । ଆଉ ଗୋଟିଏ କଥା— ମୁଁ କେବେ ନୌକା ବାହି ନାହିଁ କି ମାଛ ଧରିନାହିଁ । ତା ବୋଲି କଅଣ ପାରିବି ନାହିଁ ? ଚେଷ୍ଟାକଲେ ମନୁଷ୍ୟ କେଉଁ କାମ କରି ପାରିବ ନାହିଁ !"

ମେରିଆନ୍ କହିଲା, "ମୁଁ ସେ କଥା ଜାଣେ । ଚେଷ୍ଟାକରି ମନୁଷ୍ୟ ସବୁ କରି ପାରେ । ମାତ୍ର ମୁଁ ଜାଣେ ଯେ ତୁମେ କେବେ ହେଲେ ସମୁଦ୍ରରେ ନୌକା ବୁହାଇ ନାହଁ । ହଠାତ୍ ନୌକାଟାଏ ନେଇ ସମୁଦ୍ରକୁ ଯିବ କିପରି ?"

ରବିନ —"ମୁଁ ତ ଏକୁଟିଆ ଯିବିନାହିଁ । ଏଠାର କେଉଟ-ମାନେ ନୌକା ନେଇ ଯିବେ । ମୁଁ ସେମାନଙ୍କ ସାଥିରେ ଯିବି । ସେମାନଙ୍କୁ ଦେଖି ସେମାନେ ଯେପରି କରିବେ ସେହିପରି କରିବି । ଏହିପରି କାମଟା ଶିଖିଯିବି ।"

ତା ପରଦିନ ରବିନ୍ ନୌକାରେ ବସି ଅନ୍ୟାନ୍ୟ କେଉଟ-ମାନଙ୍କ ସଙ୍ଗେ ସମୁଦ୍ରକୁ ଗଲା । କୂଳରୁ କିଛିଦୂର ଯିବା ପରେ ସେମାନେ ନିଜ ନିଜ ବନ୍ଶୀକଣ୍ଟାରେ ଆହାର ଗୁନ୍ଥି ସମୁଦ୍ର ଭିତରେ ବନ୍ଶୀ ପକାଇଲେ । ରବିନ୍ ତାର ବନ୍ଶୀରେ ଆହାର ନ ଗୁନ୍ଥି ଖାଲି କଣ୍ଟାଟା ପକାଇଲା । ସମସ୍ତଙ୍କ ପରି ସମୁଦ୍ର ଉପରକୁ ଚାହିଁ ରହିଲା ।

ଜଣେ କେଉଟ ରବିନ୍‌ର ଏହି ଅଦ୍ଭୁତ ମାଛଧରା ଦେଖି ସେମାନଙ୍କର କପ୍ତାନ୍‌କୁ ଡାକିଲା । କପ୍ତାନ ପାଖକୁ ଆସିବାରୁ ସେ ରବିନ୍ ଆଡ଼କୁ ଦେଖାଇ କହିଲା, "ଏଇ ନୂଆ ଲୋକଟି ଆଜି ଆମ

ସାଥିରେ ଆସିଛୁ । ସେ କେଉଁଠି ଜଣେ କେଉଟ । ତାକୁ ପଚାରିଲ ଦେଖି—ଜଙ୍ଗଲରେ ଆହାର ନପୁଛି ସେ କେତେଟା ମାଛ ଧରିବ ?”

ଏହା ଶୁଣି ନୌକାଗୁଡ଼ିକର କେଉଟମାନେ ହସି ଉଠିଲେ । ସେମାନେ ଭାବିଲେ ଯେ ଲୋକଟା ନିହାତି ବୋକା । କପ୍ତାନ୍ କିନ୍ତୁ ହସିଲେ ନାହିଁ । ସେ ଭାବିଲେ ଯେ ଲୋକଟା ନିଜ ସମୟ ତ ବୃଥା ନଷ୍ଟ କରୁଛି; ପୁଣି ତା ଯୋଗେ ଅନ୍ୟମାନଙ୍କର ସମୟ ମଧ୍ୟ ନଷ୍ଟ ହେଉଛି । ସେ ରବିନ୍ ପାଖକୁ ଯାଇ କହିଲେ, “ହେ ସାଇମନ, ଏ ନୌକାରେ ଲୋକଙ୍କୁ କଠିନ ପରିଶ୍ରମ କରିବାକୁ ହେବ । ସମସ୍ତେ ସମାନ ଭାବରେ ଦାୟିତ୍ୱ ନ ତୁଲାଇଲେ ଚଳିବ କିପରି ?”

ରବିନ୍ କହିଲ, “ଦାୟିତ୍ୱ ! ମୁଁ କଅଣ ଦାୟିତ୍ୱ ବୁଝୁନାହିଁ ? ସମସ୍ତେ ମାଛ ଧରିବାକୁ ଯେପରି ବ୍ୟାକୁଳ, ମୁଁ ମଧ୍ୟ ସେହିପରି ବ୍ୟାକୁଳ ।”

କପ୍ତାନ କହିଲେ, “ତାହାହେଲେ ତୁମ ବନଶି କଣ୍ଟାରେ ଆହାର ଗୁନ୍ଥୁନାହଁ କାହିଁକି ? ମୁଁ ଦେଖୁଛି, ମାଛ ମାରି ଶିଖିବାକୁ ତୁମକୁ ଅନେକ ଦିନ ଲାଗିବ । ଯାହାହେଉ, ମୁଁ ଆଗରୁ କହିଦେଉଛି, ଆମେ ଆଜି ଯାହା ଧରିବୁ, ସେଥିରେ ତୁମର ଭାଗ ନାହିଁ ।”

ରବିନ୍ ବନଶିଟି ଟେକି ଆଣି କପ୍ତାନଙ୍କୁ ଚାହିଁ କହିଲ, “ମୁଁ ଏ ଅଞ୍ଚଳକୁ ଆସି ଭୁଲ କରିଛି । ମୋର ଉଚିତ ଥିଲ, ଶେରଉଡ଼ ଜଙ୍ଗଲକୁ ଯାଇ ହରିଣଙ୍କ ପଛରେ ଗୋଡ଼ାଉଥାନ୍ତି ।”

କପ୍ତାନ ବ୍ୟଙ୍ଗ କରି କହିଲେ, “ଗାହଜୁର, କ୍ଷମାକରିବେ । ଦୁଃଖର କଥା, ଆମ ଏଠାରେ ମାଛଧରା ନୌକା ଛଡ଼ା ଆଉ କିଛି ନାହିଁ । ଆପଣଙ୍କ ପକ୍ଷରେ ଶେରଉଡ଼ ଜଙ୍ଗଲକୁ ଯାଇ ରବିନ୍‌ହୁଡ଼ ସଙ୍ଗରେ ଯୋଗ ଦେବା ଉଚିତ ।”

ରବିନ୍ ଏହା ଶୁଣି ଟିକିଏ ହସିଲା, କିନ୍ତୁ କିଛି କହିଲା ନାହିଁ ।

କପ୍ତାନ୍ କହିଲେ, "ଗୋଟାଏ ଝଡ଼ ହେବାର ସମ୍ଭବ । ଆପଣ ଶୀଘ୍ର କୂଳକୁ ଯାଇ ଭୂଇଁରେ ପାଦ ପକାଇବାକୁ ଚାହିଁବେ । କିନ୍ତୁ ଆମେ ବର୍ତ୍ତମାନ କୂଳକୁ ଯିବା ଅସମ୍ଭବ ।"

ଏହା ଶୁଣି ରବିନର ଛାତି ଥରି ଉଠିଲା । ସେ ଆକାଶକୁ ଚାହିଁ ଦେଖିଲା ଯେ ମେଘ ଢାଙ୍କି ରହିଛି । ସୁଲୁସୁଲିଆ ପବନ ବହିବାକୁ ଆରମ୍ଭ କଲାଣି । ସମୁଦ୍ରରେ ଝଡ଼ ହୁଏ ବୋଲି ସେ ଶୁଣିଥିଲା । ଝଡ଼ ହେଲେ ନୌଯାତ୍ରୀମାନେ ଘୋର କଷ୍ଟ ପାଆନ୍ତି । କିନ୍ତୁ ରବିନ୍ କେବେହେଲେ ଝଡ଼ କଅଣ ନିଜେ ଅନୁଭବ କରି ନଥିଲା । ସେ କଅଣ କରିବ ଭାବି ପାରିଲା ନାହିଁ ।

ସନ୍ଧ୍ୟା ପୂର୍ବରୁ ଝଡ଼ ଆସିଗଲା । ନୌକାଟି ପବନଯୋଗେ ଲହରୀ ଉପରେ ଉଠୁଥାଏ, ପଡ଼ୁଥାଏ । ନୌକାର କେତେକ ଅଂଶ ଭାଙ୍ଗି ସମୁଦ୍ରରେ ପଡ଼ିଗଲା । ରବିନ୍ ଏହି ପ୍ରଳୟ କାଣ୍ଡ ଦେଖି ମନେ ମନେ ଭାବିଲା—ହାୟ, ମୁଁ କାହିଁକି ସମୁଦ୍ରକୁ ଆସି ଏ ବିପତ୍ତିରେ ପଡ଼ିଲି ? ଏହିପରି ତିନି ଦିନ ପର୍ଯ୍ୟନ୍ତ ଝଡ଼ ଲାଗିରହିଲା । ନୌକାର ଲୋକେ ଜୀବନର ଆଶା ଛାଡ଼ି ଦେଲେ ।

ଚତୁର୍ଥ ଦିନ ହଠାତ୍ ପବନର ବେଗ କମିଗଲା । ସମୁଦ୍ର ଶାନ୍ତ ପଡ଼ିଗଲା । ଏବେ ନାବିକମାନେ ଝଡ଼ରୁ ରକ୍ଷା ପାଇଲେହେଁ ଅନ୍ୟ ଏକ ବିପଦର ସମ୍ମୁଖୀନ ହେଲେ । ସେମାନେ କୂଳଠାରୁ ଏତେ ଦୂରକୁ ଆସି ଯାଇଥିଲେ ଯେ ସେଠାରୁ କୂଳ ଦେଖାଯାଉ ନ ଥିଲା । ଯେଉଁ ଆଡ଼କୁ ଅନାଇଲେ କେବଳ ନୀଳ ସମୁଦ୍ର ହିଁ ଦେଖାଯାଉଥିଲା । ସେମାନେ ସମୁଦ୍ରର କେଉଁଠାରେ ଅଛନ୍ତି ସ୍ଥିର କରି ପାରିଲେ ନାହିଁ । ସେମାନେ ନକ୍ସା ଦେଖି କୁଆଡ଼କୁ ନୌକା ଚଳାଇବେ ବୋଲି ବିଚାରୁଛନ୍ତି, ଏହି ସମୟରେ ଗୋଟିଏ ଫରାସୀ ଦସ୍ୟୁଜାହାଜ ସେମାନଙ୍କୁ ଆକ୍ରମଣ କରିବାକୁ ଉଦ୍ୟତ ହେଲା ।

ନୌକାର କପ୍ତାନ ଭୟରେ ଚିତ୍କାର କରି ଉଠିଲେ । ସେ ନାବିକମାନଙ୍କୁ କହିଲେ, "ଦେଖ, ଏ ଫରାସୀ ଜାହାଜରେ ଜଳ-ଦସ୍ୟୁମାନେ ଅଛନ୍ତି । ଅନ୍ୟ ଜାହାଜ ଲୁଟି କରିନେବା ଏମାନଙ୍କର ବ୍ୟବସାୟ । ଆମ ନୌକାରେ ଯେଉଁ ମାଛ ଅଛି, ସେ ତ ଯିବ । ମାତ୍ର ଏମାନେ ଆମ୍ଭମାନଙ୍କୁ ପ୍ରାଣରେ ମାରିଦେବେ; ଯେଉଁମାନଙ୍କ ଜୀବନ ରହିଯିବ, ସେମାନେ ଫରାସୀମାନଙ୍କର କ୍ରୀତଦାସ ହେବେ ।"

ଏହା ଶୁଣି ରବିନ୍ କହିଲା, "ନା, ସେକଥା କେବେହେଁ ହେବ ନାହିଁ । ମୋତେ ମୋର ଧନୁ ଓ ଶର ଦିଅ । ଦେଖିବ, ମୁଁ ଜଣେ ସୁଦ୍ଧା ଫରାସୀକୁ ପ୍ରାଣ ଘେନି ଫେରିବାକୁ ଦେବି ନାହିଁ ।"

କପ୍ତାନ୍ କହିଲେ, "ଚୁପ୍ କର । ତୋର ବାହାଦୁରି ଦେଖାଇ କହିବାରେ କିଛି ଲାଭ ନାହିଁ । ମୋର ମନ ହେଉଛି, ତୋତେ ନୌକାରୁ ପାଣିକୁ ଫିଙ୍ଗିଦେଲେ ଆମ ନୌକାର କିଛି ବୋଝ କମି-ଯାନ୍ତା । ଆମେ କେବେହେଲେ ଏପରି ଦୁର୍ଦ୍ଦଶା ଭୋଗିନଥିଲୁ । ତୁ ଆସିଲୁ ବୋଲି ଏ ସବୁ ହେଉଛି । ତୁ ଅମଙ୍ଗଳର ଚିହ୍ନ ।"

ରବିନ୍ ହସି ଉଠିଲା । ସେ ନିଜର ଧନୁ ଧରି ଦସ୍ୟୁ ଜାହାଜ ଆଡ଼କୁ ଗୋଟିଏ ଶର ମାରିଲା । ତତ୍କ୍ଷଣାତ୍ ଜାହାଜ ଉପରୁ ଜଣେ ଲୋକ ତଳେ ପଡ଼ିଲା । ରବିନ୍ ଆଉ ଏକ ଶର ମାରିଲା; ପୁଣି ଜଣେ ଲୋକ ଓଲଟି ପଡ଼ିଲା । ପ୍ରତି ଶରରେ ଜାହାଜର ଜଣେ ଜଣେ ମରୁଥିବାର ଦେଖି କେତେଜଣ ପାଣିଭିତରକୁ ଡେଇଁ ପଡ଼ିଲେ ।

ରବିନ୍ କପ୍ତାନଙ୍କୁ କହିଲା, "ଆମ ନୌକାକୁ ଜାହାଜଠାରୁ ଦୂରକୁ ନିଅ ନାହିଁ । ଜାହାଜର ଅନେକ ଲୋକ ମଲେଣି । ଆଉ ଅଳ୍ପ ଲୋକ ଥିବେ । ସେମାନେ ମଧ୍ୟ ବୁଦ୍ଧିମାନ୍ ବା କୌଶଳୀ ନୁହନ୍ତି । ଜାହାଜ ପାଖକୁ ଚାଲ ଯିବା ।"

କପ୍ତାନଙ୍କ ତୁଣ୍ଡରୁ କଥା ବାହାରିଲା ନାହିଁ । ଯେଉଁ ସାଇମନ୍‌କୁ ସେ ମୂର୍ଖ ବୋକା ଅପଦାର୍ଥ ବୋଲି ଭାବଥିଲେ ସେ ପୁଣି ଶର ମାରିବାରେ କେଡ଼େ ନିପୁଣ ! ତାର ଯୋଗେ ନିଜର ଓ ନୌକାର କେଉଟମାନଙ୍କର ପ୍ରାଣ ରକ୍ଷାହେଲା । ଏପରି ଲକ୍ଷ୍ୟ ସ୍ଥିର ରଖି ଶର ମାରିବା ସେ ଏଥିପୂର୍ବରୁ କୌଣସିଠାରେ ଦେଖି ନ ଥିଲେ । କିନ୍ତୁ ଦସ୍ୟୁଜାହାଜରେ ଯେତେ ଲୋକ ଥିବେ ସମସ୍ତଙ୍କୁ ଯେ ଜଣେ ଲୋକ ମାରି ପାରିବ, ଏହା ଅସମ୍ଭବ କଥା । ଏକଥା କିଏ କାହିଁ ଶୁଣିଛି ? କପ୍ତାନ ରବିନ୍ ଆଡ଼କୁ ଚାହିଁ କହିଲେ, "ସାଇମନ୍, ତୁମକୁ ଅପମାନ ଦେଇ ମୁଁ ଅନେକ କଥା କହିଛି । ମୋତେ କ୍ଷମା ଦିଅ । ତୁମକୁ ମାଛଧରା ଆସେ ନାହିଁ ସତ୍ୟ, କିନ୍ତୁ ତୁମ ଭଳି ସାହସୀ ଓ ବୁଦ୍ଧିମାନ ଲୋକ ମୁଁ ଦେଖିନାହିଁ ।"

ରବିନ୍ କହିଲା, "ବର୍ତ୍ତମାନ କ୍ଷମା ମାଗିବାର ବେଳ ନୁହେଁ; କାମର ବେଳ । ମୋ କଥାମାନ ମୋତେ ନୌକାର ମାସ୍ତୁଲରେ ବାନ୍ଧି ଦିଅ । ତାହା ହେଲେ ମୋର ଗୋଡ଼ ଖସିବାର ବା ଟଳମଳ ହେବାର ଭୟ ରହିବ ନାହିଁ । ମୋ ହାତକୁ ଧନୁଶର ବଢ଼ାଇ ଦିଅ । ତେଣିକି ଯାହା କରିବାର କଥା ମୁଁ କରିବ ।"

କପ୍ତାନଙ୍କ ଆଦେଶରେ ଦୁଇଜଣ ଲୋକ ରବିନ୍‌କୁ ଟେକି ମାସ୍ତୁଲ ଦେହରେ ବାନ୍ଧି ଦେଲେ । ସେଠାରୁ ସେ ଦସ୍ୟୁଜାହାଜରେ ଲୋକଙ୍କୁ ଭଲରୂପେ ଲକ୍ଷ୍ୟ କରି ଶର ମାରିଲା । ଜଣକ ପରେ ଜଣେ ଫରାସୀ ଦସ୍ୟୁ ତା ଶରରେ ମରି ପଡ଼ିଲେ ।

କପ୍ତାନ୍ ଆନନ୍ଦରେ ସାଇମନର ପ୍ରଶଂସା କରିବାକୁ ଲାଗିଲେ ।

ଶେଷରେ ରବିନ୍ ଦସ୍ୟୁଜାହାଜର କପ୍ତାନଙ୍କୁ ଲକ୍ଷ୍ୟ କରି ଏକ ଶର ମାରିଲା । ଶରଟି ତାଙ୍କ ଛାତିରେ ବାଜିବାରୁ ସେ ଟଳି ପଡ଼ିଲେ । ଜାହାଜରେ ଆଉ ଯେଉଁ ଅଳ୍ପ କେତେ ଜଣ ଲୋକ

ଥିଲେ, ସେମାନେ କପ୍ତାନ ମରିଯିବାର ଦେଖି ନିଜ ପ୍ରାଣଯେନ ପଳାଇବାର ଚେଷ୍ଟାକଲେ । ଜାହାଜରେ ଗୋଟିଏ ଗ୍ଲୋଟ ନୌକା ଥିଲା । ସେମାନେ ସେଇଟିକୁ ସମୁଦ୍ରକୁ ପକାଇ ସେଥିରେ ସମସ୍ତେ ଯିବାକୁ ବସିଲେ ।"

ମାଛଧରା ନୌକାର କପ୍ତାନ କହିଲେ, "ଏ ଲୋକ ଗୁଡ଼ାକ କେବେ ହେଁ ଯାଇ ପାରିବେ ନାହିଁ । ଏତେ ଗୁଡ଼ାଏ ଲୋକ ଏତେ ଗ୍ଲୋଟ ନୌକାରେ ଯିବା ପାଇଁ ଠେଲାଠେଲି ହେଉଛନ୍ତି, ସମସ୍ତେ ବୁଡ଼ି ମରିବେ ।"

କପ୍ତାନଙ୍କ କଥା ସତ ହେଲା । ଯେଉଁ ଜଳଦସ୍ୟୁମାନେ ବଞ୍ଚିଥିଲେ ସେମାନେ ସମସ୍ତେ ପଳାଇବା ପାଇଁ ନୌକାରେ ଏକାବେଳକେ ବସିବାକୁ ଚେଷ୍ଟାକଲେ । ଆପଣା ଭିତରେ ଠେଲାଠେଲି ହେଉ ହେଉ ନୌକାରେ ପାଣି ପଶିଗଲା । ନୌକା ବୁଡ଼ିଗଲା । କେତେ ଲୋକ ସଙ୍ଗେ ସଙ୍ଗେ ବୁଡ଼ିମଲେ । ଆଉ କେତେ ଜଣ କୂଳ ଯାଏ ପହଁରି ଶେଷରେ ବୁଡ଼ିମଲେ । ଜାହାଜର ସମ୍ବାଦ ଦେବାକୁ ଗୁଡ଼ା ଜଣେ ରହିଲା ନାହିଁ ।

ରବିନ୍ ଦେହରୁ ଦଉଡ଼ି ଫିଟାଇ ନୌକା ଉପରକୁ ଓହ୍ଲାଇ ଆସିଲା । ସେ କପ୍ତାନଙ୍କୁ କହିଲା, "ଆଉ ଡରିବାର କିଛି କାରଣ ନାହିଁ । ଆମ ନୌକାକୁ ଜାହାଜ ପାଖକୁ ନିଅନ୍ତୁ । ଜାହାଜଟା ଏଣିକି ଆମର ।"

କପ୍ତାନ ନିଜ ନୌକାକୁ ସଙ୍ଗେ ସଙ୍ଗେ ନେଇ ଜାହାଜ ପାଖରେ ଲଗାଇଲେ । ପ୍ରଥମେ ରବିନ୍ ନୌକାରୁ ଜାହାଜକୁ ଡେଇଁ ଚଢ଼ିଲା । ତା ପଛେ ପଛେ ନୌକାର କେଉଟମାନେ ଜାହଜ ଉପରେ ଚଢ଼ିଗଲେ । ଜାହାଜରେ ଦସ୍ୟୁମାନଙ୍କ ମଧ୍ୟରୁ ଜଣେ ହେଲେ ନ ଥିଲେ । ସମସ୍ତଙ୍କର ମନ ଆନନ୍ଦରେ ପୂର୍ଣ୍ଣ ।

କପ୍ତାନ ଆନନ୍ଦରେ ଅଧୀର ହୋଇ କହିଲେ, "ଚାଲ, ଏ ଜାହାଜଟିକୁ ଷ୍ଟାରବଟର୍ ବନ୍ଦରଠାକୁ ନେଇଯିବା । ନୌକାଟାକୁ ଜାହାଜ ପଛରେ ବାନ୍ଧି ଦେବା ।"

ତାହାହିଁ କରାଗଲା । ନୌକାଟି ଜାହାଜ ପଛରେ ଦଉଡ଼ି ସାହାଯ୍ୟରେ ବାନ୍ଧି ଦିଆଗଲା । ଏତେବେଳକୁ କପ୍ତାନ ଜାହାଜର ଅବସ୍ଥିତି ଠିକ୍ କରିସାରିଥିଲେ । ତେଣୁ ଜାହାଜ କେଉଁ ଦିଗକୁ ଚଳାଇବାକୁ ହେବ ସେ ବିଷୟରେ ଆଉ ସନ୍ଦେହ ନ ଥିଲା । ଜାହାଜଟି ଷ୍ଟାରବର୍ଗ ବନ୍ଦରରେ ପଶିଲାକ୍ଷଣି ଦସ୍ୟୁଜାହାଜ ଧରା-ପଡ଼ିଥିବା ସମ୍ବାଦ ଚାରିଆଡ଼େ ବ୍ୟାପିଗଲା । ବନ୍ଦରର ଲୋକେ ଜମା ହୋଇ ପଡ଼ିଲେ । କେହି କେହି ଭାବିଲେ ଯେ ଶତ୍ରୁ, ଜାହାଜରେ ଆକ୍ରମଣ କରିବାକୁ ଆସୁଛି । ସେମାନେ ଶତ୍ରୁ ସଙ୍ଗେ ଲଢ଼ିବାକୁ ପ୍ରସ୍ତୁତ ହୋଇ ରହିଲେ ।

ବନ୍ଦରରେ ଜାହାଜ ଲଙ୍ଗର ପକାଇବା ମାତ୍ରେ କପ୍ତାନ ଓହ୍ଲାଇ ପଡ଼ି ସମସ୍ତଙ୍କୁ ସାଇମନ୍‌ର ବୀରତ୍ୱକଥା କହି କହିରେ ସେମାନେ ସେହି ଜାହାଜ ଅଧିକାର କଲେ ବୁଝାଇ ଦେଲେ । ସେ ହସି ହସି କହିଲେ, "ଆମର ଏ ସାଇମନକୁ ମାଛ ଧରି ଆସେ ନାହିଁ ସତ, କିନ୍ତୁ ତା ଭଳି ଶରମାରିବା ଲୋକ ମୁଁ କେବେ ଦେଖି ନାହିଁ । ଆହା, କି ସୁନ୍ଦର ଲକ୍ଷ !"

ବନ୍ଦରର କେଉଟମାନେ ଆନନ୍ଦରେ ଅଧୀର ହୋଇ ସେଦିନ ଗୋଟିଏ ବିରାଟ ଭୋଜର ଆୟୋଜନ କଲେ । ସେଥିରେ ସେମାନେ ସାଇମନ୍ ( ଛଦ୍ମବେଶୀ ରବିନ୍ )କୁ ବହୁତ ଆଦର ଅଭ୍ୟର୍ଥନା ଦେଖାଇଲେ ।

କପ୍ତାନ୍ ସାଇମନକୁ କହିଲେ, "ତୁମେ ହିଁ ଏ ଜାହାଜକୁ ଅଧିକାର କରିଛ । ଏଇଟି ତୁମର ।"

ନମ୍ରବେଶୀ ରବିନ୍ କହିଲ, "ଯଦି ଜାହାଜଟି ମୋର ହୁଏ, ତେବେ ମୋର ଜାହାଜ ଦରକାର ନାହିଁ । ମୁଁ ତାକୁ ବିକି ଦେବି ।"

କପ୍ତାନ୍ କହିଲେ, "ଜାହାଜଟି ଯେତେବେଳେ ତୁମର, ତୁମେ ଯାହାଇଚ୍ଛା ତାହା କରିପାର । ଇଚ୍ଛାକଲେ ବିକି କରିପାର ।"

ରବିନ୍ ଉତ୍ତର କଲ, "ହଁ, ମୁଁ ବିକିବାକୁ ସ୍ଥିର କରିଛି । ଯାହା ମୂଲ୍ୟ ହେବ, ସେଥିରୁ ଅଧେ ମୁଁ ନେବି । ବାକି ଅଧକ କପ୍ତାନ ଓ ନାବିକମାନେ ପାଇବେ ।"

ଜାହାଜ ବିକି ହେଲା । ରବିନ୍ ଅଧେ ଟଙ୍କା ନେଇ ବିଧବାର ଘରକୁ ଫେରି ଆସିଲା । ସେତେବେଳକୁ ସେହି ବିଧବା ଓ ମେରି-ଅନ୍ ସାଇମନ୍‌ର ଫେରିବା କଥା ଶୁଣିସାରି ତାର ଆସିବାକୁ ଗୁହିଁ ରହିଥିଲେ । ସେ ପହଞ୍ଚିବାମାତ୍ରେ ତାକୁ ଆଦର ସମ୍ଭାଷଣ କରି ଘରକୁ ନେଇଗଲେ ।

ମେରିଆନ୍ ହସିହସି କହିଲା, "ତୁମେ ସୁଆଡେ ଯିବ, କିଛିନା କିଛି ଗୋଟାଏ କାଣ୍ଡ କରି ବସିବ । ଯେତେ ଚେଷ୍ଟା କଲେ ବି ତୁମେ ଧୀରସ୍ଥିର ହୋଇ ରହିପାରିବ ନାହିଁ ।"

ରବିନ୍ ଯେଉଁ ଟଙ୍କା ଆଣିଥିଲ ସେଥିରୁ ଅଧେ ବିଧବାକୁ ଦେଲ । ବିଧବା ଏହା ପାଇ ଯେତିକ ଆନନ୍ଦିତ ହେଲା, ସାଇମନ୍ ପ୍ରତି ସେତିକ କୃତଜ୍ଞତା ପ୍ରକାଶ କଲ ।

ଶୀତ ଋତୁଯାକ ରବିନ୍ ଓ ମେରିଆନ ସେହି ବିଧବା ଘରେ କଟାଇଲେ । ଗ୍ରାମବାସୀ ମାନେ ଏ ଦୁହିଁଙ୍କୁ ଖୁବ୍ ଆଦର କଲେ । ଶୀତ କମି ଆସିଲା; ଗଛମାନଙ୍କରେ ପୁଣି କଅଁଳ ପତ୍ର ଓ ଫୁଲକଢ଼ ଦେଖାଗଲା । ରବିନ୍ ଓ ମେରିଆନ୍ ପୁଣି ନିଜର ପ୍ରିୟ ଶେରଉଡ଼ ଜଙ୍ଗଲକୁ ଫେରିଗଲେ ।



୨୯

# ସଚ୍ଚା ଜଗୁଆଳି

ଜଣେ ଜଗୁଆଳ କଆଁସ ପାଖରେ ଛିଡ଼ା ହୋଇଥିଲା । ତାର ଦୁଇଟି କାମ । ଗୋଟିଏ ହେଉଛି, କାହାର ଗୋରୁଗାଈ କ୍ଷେତରେ ପଶିଲେ ତାକୁ ଧରି ନେଇ କାଞ୍ଜିଆହାଉସରେ ପକାଇବା ଓ ଗୋରୁ-ଗାଈର ମାଲିକ ଜରିମାନା ଦେଲେ ତାକୁ ଖଲାସ କରିଦେବା । ଅନ୍ୟ କାମଟି ହେଉଛି, ବାଟୋଇ ଲୋକ ଯେପରି ରାସ୍ତା ଛାଡ଼ି ଫସଲ କ୍ଷେତ ବାଟେ ନ ଯିବେ, ସେକଥା ଦେଖିବା ।

ଗୋଟିଏ ଲମ୍ବ ଠେଙ୍ଗା ହାତରେ ଧରି ସେ କ୍ଷେତ ଜଗିଥାଏ । ସେ ତାର କାମରେ ଟିକଏ ହେଲେ ହେଳା କରେ ନାହିଁ । କାହାରି ଗୋରୁ କ୍ଷେତରେ ପଶିଲା ତ ସେ ନିଶ୍ଚୟ ତାକୁ ଧରି ନେଇ କାଞ୍ଜିଆହାଉସରେ ଦେବ । ପୂରା ଜରିମାନା ନ ଦେବା ଯାକେ କେବେହେଁ ଛାଡ଼ିବ ନାହିଁ । ତାର କାହାକୁ ଭୟ ନଥାଏ । ସମସ୍ତଙ୍କ ପ୍ରତି ସମାନ ବ୍ୟବହାର । ଧନୀ ହେଉ, ଗରିବ ହେଉ, ଜମିଦାର ହେଉ ବା ଭିକାରି ହେଉ, ସମସ୍ତଙ୍କ ପ୍ରତି ଏକା ନିୟମ । ପାତର ଅନ୍ତର କରିବା ତାର ସ୍ୱଭାବ ନୁହେଁ । କାହାକୁ ପଇସାଏ ସୁଦ୍ଧା ଛାଡ଼ିବ ନାହିଁ । ସେଥିପାଇଁ ଲୋକେ ତାକୁ କହନ୍ତି—ସଚ୍ଚା ଜଗୁଆଳ ।

ଥରେ ରବର୍ଟ ଲିଟିଲଜନ୍ ଓ ଉଇଲ୍ ଷ୍ଟାର୍ଲେଟଙ୍କ ସଙ୍ଗରେ ଆଉତାରୁ ବାହାରି ବୁଲି ଯାଉଥିଲା । ଯାଉଯାଉ ସେମାନେ ନଟିଙ୍ଗହାମ ସୀମା ପାର ହୋଇ ଉଏକ୍‌ଫିଲ୍‌ଡ଼ରେ ପଶିଲେ । ସୀମାରେ ଗୋଟିଏ ଡଆଁ ଫାଟକ ଥିଲା । ଏହାକୁ ଡେଇଁ ରବିନ

କ୍ଷେତ ଆଡ଼କୁ ପିବାକୁ ବସିଛି, ଏତିକବେଳେ ରୁକ୍ଷସ୍ୱରରେ ଶୁଣାଗଲା,
"ଆବେ, କୁଆଡ଼େ ଯାଉଛୁ ? କ୍ଷେତ କଏ, ରାସ୍ତା କଏ, କଅଣ
ତୋତେ ଜଣା ପଡୁନାହିଁ ।"

'ସଚା ଜଗୁଆଳ'ର କଥା କହିବା ଢଙ୍ଗ ଏହିପରି । ରବନ୍
ତା ଜୀବନରେ ଏପରି ଭାଷା କାହାରିଠାରୁ ଶୁଣିନଥିଲା । ସେ
ବସ୍ତୁତରେ ଛିଡ଼ା ହୋଇଗଲା । ଏଥିରେ ତାର ମନରେ କ୍ରୋଧ
ଆସିବାର କଥା । କିନ୍ତୁ ସେ ରାଗ କଲା ନାହିଁ ବରଂ ଏଭଳି କଥା
ଶୁଣିବାରୁ ତାକୁ କୌତୁକ ଲାଗିଲା । ସେ ଧୀର ଭାବରେ କହିଲା,
"ମୁଁ କଏ ଜାଣ ?"

ଜଗୁଆଳ କହିଲା, "ମୁଁ ଜାଣେ ନାହିଁ, କି ଜାଣିବାକୁ ଚାହେଁ
ନାହିଁ । କେହି ଯେପରି ରାସ୍ତା ଛାଡ଼ି କ୍ଷେତ ଭିତରକୁ ନ ଆସେ, ତା
ଦେଖିବା ମୋର କାମ । ଯଦି କଏ ଆସିଲା, ତାଠାରୁ ଜରିମାନା
ଆଦାୟ କରିବି ।"

ରବନ୍ ତାର ସାଥି ଦୁହିଁଙ୍କ ଆଡ଼କୁ ଅନାଇ ଟିକିଏ ହସି
ଦେଲା । ତାପରେ ଜଗୁଆଳକୁ କହିଲା, "ଜରିମାନା ଆଦାୟ
କରିବୁ ? କଥାଟା ସୁନ୍ଦର । କିନ୍ତୁ ଯେବେ କିଏ ନ ଦେଲା ତାଠାରୁ
କିପରି ଆଦାୟ କରିବୁ ?"

ଜଗୁଆଳ—ମୁଁ ଠିକ ଆଦାୟ କରିବି ।

ରବନ୍—ଯଦି ସେ ତିନିଜଣ ହୋଇଥାନ୍ତି ? ତୁ ତ ଜଣେ ।

ଜଗୁଆଳ—ମୁଁ ଜଣେ ସତ । ସେ ତିନି ଜଣ କଅଣ, ତିରିଶ
ଜଣ ହୋଇଥିଲେ ବି ଜରିମାନା ଆଦାୟ ନକରି ଛାଡ଼ିବି ନାହିଁ ।
ମୋ ହାତରେ ଏଇ ଠେଙ୍ଗାକୁ ଦେଖିଥା । ଯେ ନ ଦେବ ତା ମୁଣ୍ଡକୁ
ଏଥିରେ ଗୁଣ୍ଡ କରିଦେବି ।

ଜଗୁଆଳ ଠେଙ୍ଗାଟି ଧରି ଗୋଟିଏ ଗଛକୁ ଆଉଜି ଛିଡ଼ା
ହୋଇଥାଏ ।

ରବିନ୍ ନିଜ ଖଣ୍ଡାଟି ବାହାର କରି ତା ଆଡ଼କୁ ଚମକିଗଲା । ଯେ ଖଣ୍ଡାଟି ଧରି ଫାଟକ ଡେଇଁ ପଶିଗଲା ବେଳେ ଜଗୁଆଳି ଠିକ୍ ବେଳ ଉଣ୍ଡି ଠେଙ୍ଗାରେ ପାହାରେ ଦେଲା । ରବିନ୍ ହାତରୁ ଖଣ୍ଡାଟି ଖସି ପଡ଼ିଲା । ତା ପରେ ଉଇଲ୍ ସ୍କାର୍ଲେଟ ସେହିପରି ଫାଟକ ପାରି ହେବାକୁ ଚେଷ୍ଟା କଲା । ସେ ମଧ୍ୟ ଖଣ୍ଡା ଧରିଥିଲା । ମାତ୍ର ଜଗୁଆଳିର ପାହାରରେ ତା ଖଣ୍ଡାଟି ହାତରୁ ଖସି ପଡ଼ିଲା । ଦୁହିଁଙ୍କ ଭିତରୁ ଜଣେ ହେଲେ ଫାଟକ ଆର ପାଖକୁ ଯାଇ ପାରିଲେ ନାହିଁ ।

ରବିନ୍ ହାରିଗଲା ସତ । ସେ କିନ୍ତୁ ହସିହସି ଜନ୍‌କୁ କହିଲା, "ତୁ ଯଦି ହାରିଯାଉ, ତେବେ ଆମ କଥା ସରିଯିବ ।"

ଲିଟିଲ୍ ଜନ୍ ଖଣ୍ଡା ବାହାର କରି ଫାଟକ ପାରି ହେବାକୁ ଚେଷ୍ଟା କଲାବେଳକୁ ଜଗୁଆଳିର ପାହାର ତା ହାତରେ ପଡ଼ିଲା । ତାର ଖଣ୍ଡା ମଧ୍ୟ ହାତରୁ ଖସି ପଡ଼ିଲା ।

ରବିନ୍ କହିଲା, "ଅସଲ ଅସୁବିଧା ହେଉଛି ଯେ ଏ ଫାଟକରେ ଏକାବେଳକେ ଜଣକରୁ ବେଶି ଯାଇ ପାରିବେ ନାହିଁ । ତା ନ ହେଲେ ଆମେ ସେ ଜଗୁଆଳିକୁ ଏତେବେଳକୁ ଦେଖି ସାରନ୍ତେଣି ।"

ଜଗୁଆଳି ଫାଟକ ଆରପାଖେ ସେହିପରି ଠେଙ୍ଗା ଧରି ଛିଡ଼ା ହୋଇଥାଏ । ଏମାନେ ଯେତେ ଚେଷ୍ଟା କଲେ ମଧ୍ୟ ଫାଟକ ପାରି ହୋଇ ପାରିଲେ ନାହିଁ । ରବିନ୍ ଦେଖିଲା ଯେ ଲୋକଟା ବେଶ୍ ଚାଲାକ୍ । ଠିକ୍ ବେଳ ଦେଖି ପାହାର ବସାଉଛି । ରବିନ୍ ଲୋକଟା ଉପରେ ରାଗ ନକରି ଭାବିଲା—ପ୍ରକୃତରେ ଲୋକଟି ସଚ୍ଚା । ତା ବିରୁଦ୍ଧରେ ତିନି ଜଣ । ତଥାପି ସେ ଏକୁଟିଆ ତାର କର୍ତ୍ତବ୍ୟ କରୁଛି । ସେ ଜରିମାନା ନ ନେଇ ଛାଡୁନାହିଁ ।

ରବିନ୍‌ର ଉପଦେଶରେ ଫାଟକ ପାରି ହେବାର ଚେଷ୍ଟା ବନ୍ଦ କରାଗଲା । ସେ ଜଗୁଆଳିକୁ ପଚାରିଲା, "ଆମେ ରାସ୍ତା ଛାଡ଼

କ୍ଷେତରେ ପଶିବାକୁ ଯାଉଥିଲୁ । ଏଥିପାଇଁ କେତେ ଜରିମାନା ଦେବାକୁ ପଡ଼ିବ । ଆମେ ଜରିମାନା ଦେବାକୁ ପ୍ରସ୍ତୁତ ।"

ଜଗୁଆଳି ଯେତେ ଜରିମାନା କହିଲା, ରବିନ୍ ତାର ଦୁଇଗୁଣ ଦେଲା ।

ଜରିମାନା ଦେଇସାରି ରବିନ୍ କହିଲା, "ମୁଁ ହେଉଛି, ରବିନ୍ ହୁଡ୍ । ତୁ ଆସି ମୋ ଦଳରେ ରହିଲେ ଭଲ ହେବ । ଏପରି କ୍ଷେତ ଜଗି ଜରିମାନା ଆଦାୟ କରିବାଠାରୁ ମୋ ସାଥିରେ ଶେର୍‌ଉଡ଼ ବଣରେ ରହିବା କଅଣ ଭଲ ହେବ ନାହିଁ ?"

ଜଗୁଆଳି ମୁଣ୍ଡ ହଲାଇ ନିଜର ଅସମ୍ମତି ଜଣାଇଲା । ତା'ପରେ କହିଲା, "ଦେଖ, ବଣରେ ତମ ସାଥିରେ ରହିବାକୁ ମୋର ଘାରି ଇଚ୍ଛା । କିନ୍ତୁ ମୁଁ ସ୍ୱୀକାର କରୁଛି । ଆହୁରି ତିନି ମାସ ଯାଏଁ ମୋର କାମ କରିବାର କଥା । ସେ ତିନି ମାସ ଗଲେ ମୁଁ ଆନନ୍ଦରେ ତୁମ ଦଳରେ ମିଶିବି ।"

ରବିନ୍ ଆନନ୍ଦିତ ହୋଇ କହିଲା, "ଏଭଳି ଖରାପ ସ୍ୱାମୀକ ଘରେ ଆଉ ରହିବ କାହିଁକି ? ଆଜି ଛାଡ଼ି ଦେଇ ଚାଲିଆସ । ମୋ ସାଥିରେ ଯିବ ।"

ସଚ୍ଚା ଜଗୁଆଳି କହିଲା, 'ସେ କଥା ମୋ ଦେଇ ହେବ ନାହିଁ । ମୁଁ ଆହୁରି ତିନି ମାସ ଏ କାମରେ ରହିବି ବୋଲି ଜବାବ କରିଛି । ମୁଁ ନିଶ୍ଚୟ ସେଯାଏଁ ରହିବି । ମୋ କଥା ମୁଁ ଭାଙ୍ଗିପାରିବି ନାହିଁ । ତିନି ମାସ ଯାଉ । ତେଣିକି ମୁଁ ତୁମ ଦଳରେ ଯୋଗ ଦେବି । ଏକଥା ଧ୍ରୁବ, ମନେ ରଖିଥାଅ ।'

ରବିନ୍ ଓ ତାର ସାଥୀ ଦୁହେଁ ସେଦିନ ବିଦାୟ ହୋଇଗଲେ ।

ଜଗୁଆଳର କଥା ଯାହା, କାମରେ ତାହା । ଠିକ୍ ତିନ ମାସ ପୂର୍ବରୁ ସେ ଯାଇ ଶେରଉଡ଼ରେ ଉପସ୍ଥିତ । ରବିନ ଓ ତାର ଲୋକେ ତାକୁ ଆଦରରେ ଦଳରେ ରଖିଲେ । ତା ଭଳି ସଚ୍ଚାଲୋକ ଖୁବ୍ କମ ଥିବେ । ଅନ୍ୟାୟ କଥା ତା'ଠାରୁ ଶୁଣାଯିବ ନାହିଁ, କି ଅନ୍ୟାୟ କାମରେ ସେ ହାତ ଦେବ ନାହିଁ । ସେଥିପାଇଁ ଦଳର ଲୋକେ ତାକୁ ଯେପରି ଆଦର କରୁଥିଲେ, ସେହିପରି ଖାତିର ମଧ୍ୟ କରୁଥିଲେ ।

କୌଣସି କାର୍ଯ୍ୟ କରିବା ପୂର୍ବରୁ ରବିନ୍ 'ଜଗୁଆଳ'ର ପରାମର୍ଶ ମାଗୁଥିଲା । କୌଣସି ପ୍ରସ୍ତାବ ଅନ୍ୟାୟ ବିଚାରିଲେ, ସେ ସଫା ସେ କଥା କହି ଦେଉଥିଲା ଏବଂ ସେପରି କାମରେ ମୋଟେ ପଶୁନଥିଲା । ସେ ସବୁଦିନେ ସଚ୍ଚୋଟ ରହିଥାଏ । କେବେହେଲେ ଅନ୍ୟାୟ ବାଟରେ ପାଦ ପକାଉ ନଥିଲା ।

ଗ୍ଠ

# ବଣ ଭୋଜି

ନଟିଙ୍ଗହାମର ଶେରିଫ ସବୁବେଳେ କପରି ରବିନ୍‌କୁ ଧରିବେ, ସେହି ଚେଷ୍ଟାରେ ଥାଆନ୍ତି । ରବିନ୍ ତାଙ୍କୁ ବାରମ୍ବାର ହଇରାଣ କରିଛି, ଠକି ପଳାଇଛି । ସେ ଯେବେ ତାକୁ ଜବଦ ନ କରିବେ ଅନ୍ୟ ଲୋକେ ତାଙ୍କୁ ମାନିବେ କାହିଁକି ? ପୁଣି ତାଙ୍କର ସରକାରୀ କାମ ଅଛି । ସେ କାମ ବୁଲେଇବାକୁ ପଡ଼ିବ । ରବିନ୍ ପଛରେ ଲାଗିବାରୁ ତାଙ୍କର ଏତେ ସମୟ ବୃଥା ନଷ୍ଟ ହେଲା ଯେ ତାଙ୍କର ବହୁତ ସରକାରୀ କାମ ବାକି ପଡ଼ିଗଲା । ସରକାରୀ କାମ ଏତେ ବାକିଥିବାର ଜଣାପଡ଼ିଲେ ରଜା ତାଙ୍କୁ ଶେରିଫ ପଦରୁ ବାହାର କରିଦେଇ ପାରନ୍ତି । ଏହିକଥା ବିଚାର କରି ସେ ଦିନେ ନିଜର ବାକି କାମ ଛିଣ୍ଡାଇବାକୁ ସ୍ଥିର କଲେ ।

ଅନ୍ୟ କାମ ଭିତରେ ପ୍ରଜାଙ୍କଠାରୁ ଖଜଣା ଆଦାୟ କରିବା ତାଙ୍କର ଗୋଟିଏ ପ୍ରଧାନ କାର୍ଯ୍ୟ । ନଟିଙ୍ଗହାମଠାରୁ ଦୂର ଅଞ୍ଚଳର କେତେକ ପ୍ରଜାଙ୍କଠାରେ ବହୁତ ଖଜଣା ବାକି ପଡ଼ିଥାଏ । ଏଥିକ-ବେଳକୁ ନଟିଙ୍ଗହାମର ଜଣେ ଆବଟ୍ ତାଙ୍କୁ ସାହାଯ୍ୟ କରିବାକୁ ବାହାରିଲେ । ସେ ସଙ୍ଗରେ ତାଙ୍କର ଜଣେ ପ୍ରାୟୋରଙ୍କୁ (୧୪) ନେଇ ସେହି ଅଞ୍ଚଳରେ ପହଞ୍ଚିଲେ । କେତେ ଦିନ ପରିଶ୍ରମ କରି ପ୍ରଜା-ମାନଙ୍କଠାରୁ ସବୁ ଖଜଣା ଆଦାୟ କଲେ । ଆବଟ୍ ଟଙ୍କାତକ

---

(୧୪) ପ୍ରାୟୋର—ମଠ ବା ଆଶ୍ରମର ଅଧ୍ୟକ୍ଷ ।

ଏକାଠି କରି ପ୍ରାସ୍ପାରଙ୍କୁ ଦେଇ କହିଲେ, "ମୋର ସମସ୍ତ ନାହିଁ। ଅସୁଲ କାମ ସରିଗଲା। ଏଣିକି ଖାଲି ଟଙ୍କାତକ ଶେରିଫଙ୍କ ପାଖେ ପହଞ୍ଚାଇ ଦେଲେ ହେଲା। ତୁମେ ଟଙ୍କା ନେଇ ନଟିଙ୍ଗହାମ ଯାଅ। ଶେରିଫଙ୍କୁ କହିବ ଯେ ମୋର ଅନ୍ୟ ଜରୁରି କାମ ଥିବାରୁ ଯାଇ ନ ପାରି ତୁମ ହାତରେ ଟଙ୍କା ପଠାଇଦେଲି।"

ପ୍ରାସ୍ପାରଙ୍କ ମନରେ ଟିକିଏ ଗର୍ବ ଆସିଲା। ସେହିଭଳି ବିଶ୍ୱାସୀ ଲୋକ ବୋଲି ସିନା ଆବଟ୍ ତାଙ୍କ ହାତରେ ଏତେ ଟଙ୍କା ଦେଲେ। ସେ ଟଙ୍କା ଥଳି ଦୁଇଟିକୁ ଜିନ୍‌ର ଦୁଇପାଖରେ ଝୁଲାଇ ଦେଇ ଘୋଡ଼ା ଉପରେ ବସି ଚାଲିଲେ। ତାଙ୍କ ମନରେ ବେଶ୍ ଫୁର୍ତ୍ତି ଥାଏ।

କିଛି ଦୂର ଯିବା ପରେ ସେ ଚାରିଜଣ ଲୋକ ଦେଖିଲେ। ସେମାନଙ୍କ ଦେହରୁ ଅଧେ ବେଣା ଭିତରେ ଲୁଚି ଯାଇଥାଏ। ଲୋକଗୁଡ଼ାକ ବୁଲି କେଳାପରି ଦିଶୁଥାନ୍ତି। ପ୍ରାସ୍ପାର ଭାବିଲେ, "ଏଇମାନଙ୍କୁ ବାଟଘାଟ କଥା ପଚାରି ବୁଝିବା।" ସେ ସେମାନଙ୍କୁ ଡାକି କହିଲେ, "କିରେ, ତୁମେମାନେ ସେଠି କଅଣ କରୁଛ ?"

ଲୋକମାନେ ବୁଲିପଡ଼ି ପ୍ରାସ୍ପାରଙ୍କ ଆଡ଼କୁ ଚାହିଁଲେ। ଯଦି କେହି ସେମାନଙ୍କୁ ଆଗରୁ ଜାଣିଥାନ୍ତା, ତେବେ ଚିହ୍ନି ପାରିଥାନ୍ତା ଯେ ଏ ଚାରିଜଣ ହେଉଛନ୍ତି ରବିନ ହୁଡ୍, ଲିଟିଲ୍ ଜନ, ଉଇଲ ସ୍କାର୍ଲେଟ ଓ ମଚ୍।

ପ୍ରାସ୍ପାର ଆଉ ଟିକିଏ ପାଖକୁ ଆସି ଦେଖିଲେ ଯେ ଗୋଟାଏ ମଲା ହରିଣ ସେଠାରେ ପଡ଼ିଛି। ତା ଦେହରୁ ତାଜା ରକ୍ତ ବାହାରୁଛି। ଏ କେଳାଗୁଡ଼ାକ ଯେ ତାକୁ ମାରିଛନ୍ତି ସେଥିରେ ସନ୍ଦେହ ନାହିଁ। ରଜାଙ୍କ ହରିଣ ମାରିବା ସହଜ କଥା ନୁହେଁ। ଏ ବିଷୟ ଭଲରୂପେ ବୁଝିବା ଦରକାର।

ଏହାପରେ ହଠାତ୍ ପ୍ରାଣ୍ଟାର ପଚାରିଲେ, "ହେଣ୍ଟା ଭିତରେ ସେଇଟା କଅଣ ପଡ଼ିଛି ?" ରବିନ୍ ଶୁଣି ନ ପାରିଲା ପରି ଛଳନା କରି କହିଲା, "ଏଁ, କଅଣ କହିଲ ?"

ପ୍ରାଣ୍ଟାର ମଲା ହରିଣ ଆଡ଼କୁ ହାତ ଦେଖାଇ ବଡ଼ପାଟିରେ କହିଲେ, "ଏଇଟା କଣ ?"

ରବିନ୍ କାଲିଙ୍କ ଭଳି ଗୋଟାଏ କାନ ଉପରେ ହାତ ରଖି କହିଲା, "କଅଣ କହୁଛ, 'ବଣ' ? ହଁ, ଏଇ ପାଖରେ ବଣ ।"

ପ୍ରାଣ୍ଟାର ବିରକ୍ତହୋଇ କହିଲେ, "ନାଇଁ, ମୁଁ ବଣ କଥା କହୁନ । ମୁଁ ପଚାରୁଛି, ଏ ହରିଣ କିଏ ମାରିଲା ? ବଣ ହରିଣର ମାଲିକ ହେଉଛନ୍ତି, 'ରଜା' ।

ରବିନ୍ କହିଲା, "ହଁ, 'ଭଜା' କହୁଛ ନା ? ଏ ହରିଣ ମାଂସ 'ଭଜା' ହେବ ।"

ପ୍ରାଣ୍ଟାର କାଲଟାର ଏପରି କଥାରେ ରାଗିଯାଇ ତା କାନ ପାଖକୁ ମୁହଁ ବୁଲାଇ କହିଲେ, "ଜରେ, ଶୁଣିପାରୁନାହୁଁ । 'ଭଜା' ନୁହେଁ ; ରଜା, ରଜା । ରଜାଙ୍କ ହରିଣ ମାରିଲା କିଏ ?"

ରବିନ୍ ଶୁଣି ପାରୁ ନ ଥିବାର ଛଳନା କରି କହିଲା, "ହଁ, ହଁ, ହରିଣମାଂସ ଭଜା ଖାଇବାକୁ ବଡ଼ 'ମଜା' !"

ପ୍ରାଣ୍ଟାର ଆଉ ସମ୍ଭାଳି ନ ପାରି ଗର୍ଜି ଉଠିଲେ, "ଓଃ, ଲୋକଟା କେଡ଼େ ବୋକା । ଏହାକୁ ବୁଝାଇବ କିଏ ?"

ରବିନ୍‌ଠାରୁ ଇଶାରା ପାଇ ତାର ସାଥୀମାନେ ମଲା ହରିଣକୁ ଟେକି ନେବାକୁ ବାହାରିଲେ । ପ୍ରାଣ୍ଟାର ଘୋଡ଼ାରୁ ଓହ୍ଲାଇ ପଡ଼ିଲେ । ତାଙ୍କ ଆଗରେ ଗୁଡ଼ାଏ ଲୋକ ରଜାଙ୍କ ହରିଣ ମାରି ନେଇଯିବେ । ସେ ଏହା ଦେଖି ଚୁପ୍‌ହୋଇ ରହିବେ କିପରି ? ଲୋକଗୁଡ଼ାଙ୍କୁ ଜବଦ କରିବା ଦରକାର ।

କିନ୍ତୁ ସେ ଯାହା ଭାବଥିଲେ କାର୍ଯ୍ୟରେ ତାର ବିପରୀତ ହୋଇଗଲା । ହଠାତ୍ ସେମାନଙ୍କ ଭିତରୁ ଦୁଇଜଣ ଆସି ପ୍ରାସ୍ପାରଙ୍କ ଦୁଇହାତ ଧରି ଟେକିନେଲେ । ଲୋକ ଦୁଇଟାଙ୍କ ହାତ ତାଙ୍କୁ ଲୁହା ସଣ୍ଢ଼ାସି ପରି ଲାଗିଲା । ପ୍ରାସ୍ପାରଙ୍କୁ ସେ ଦୁହେଁ ଏହିପରି ଟେକି ରବିନ୍ ପାଖକୁ ନେଇଗଲେ ।

ରବିନ୍ ପୋଷାକ ଉପରେ ଯେଉଁ ଛଦ୍ମବେଶ ପିନ୍ଧିଥିଲା ତାକୁ ଫିଙ୍ଗିଦେଇ ହସି ହସି କହିଲା, "ପ୍ରାସ୍ପାର ମହାଶୟ, ଆପଣଙ୍କୁ ଟିକିଏ କଷ୍ଟ ଦେଇଥିବାରୁ ମୁଁ ଦୁଃଖିତ । ପ୍ରକୃତ କଥା ହେଉଛି, ପୁରୁଣା ପୋଷାକ ପିନ୍ଧିଥିବା ବେଳେ ମୋତେ ଟିକିଏ ଭଲ ଶୁଣାଯାଏ ନାହିଁ ।"

ପ୍ରାସ୍ପାର ଭୟରେ ଥରି ଥରି କହି ଉଠିଲେ, "ଏଁ, ଏଁ, ରବିନ୍ ହୁଡ୍ ।"

ରବିନ୍ ଟିକିଏ ହସି କହିଲା, "ଆଃ, ଆପଣଙ୍କର ଭୟର କିଛି କାରଣ ନାହିଁ । ଦେଖିବେ, ଆମେ ଯେତେ ଖରାପ ବୋଲି ଆପଣ ଶୁଣିଛନ୍ତି, ପ୍ରକୃତରେ ଆମେ ସେତେ ଖରାପ ନୋହୁଁ । ଆସନ୍ତୁ, ଆମ୍ଭମାନଙ୍କ ସଙ୍ଗରେ ଆଜ ଭୋଜନ କରିବେ । ଚାଲନ୍ତୁ, ଲିଟିଲ୍ ଜନ୍ ଓ ଉଇଲ୍ ସ୍କାର୍ଲେଟ ଆପଣଙ୍କୁ ଦୁଇପାଖେ ଧରି ନେଇଯିବେ । ଆପଣ ଆଉ ବାଟ ଭୁଲିବାର ଭୟ ରହିବ ନାହିଁ ।"

ପ୍ରାସ୍ପାର ଦେଖିଲେ ଯେ ଏଠାରେ ନାହିଁ କରିବାର ଉପାୟ ନାହିଁ । ମଚ୍ ଓ ରବିନ୍ ଆଗେ ଆଗେ ଚାଲିଲେ । ଜନ୍ ଓ ଉଇଲ ପ୍ରାସ୍ପାରଙ୍କୁ ମଝିରେ ଧରି ପଛରେ ଚାଲିଲେ । ବେଳେ ବେଳେ ସେ ଦୁହିଁଙ୍କ ସାଥିରେ ପ୍ରାସ୍ପାର ଚାଲି ପାରୁ ନ ଥାନ୍ତି । ସେତେବେଳେ ତାଙ୍କ ପାଦ ଦୁଇଟା ଆଉ ଭୂମିରେ ଲାଗୁ ନଥାଏ । ଏହିପରି ସମସ୍ତେ ଆଡ୍ଡାରେ ପହଞ୍ଚିଲେ ।

ସେତେବେଳକୁ ରବନ୍‌ର ସାଥୀମାନେ ଭୋଜ ପାଇଁ ରନ୍ଧା-ବଡ଼ାରେ ଲାଗିଥାନ୍ତି । ମଲା ହରିଣଟାକୁ ନେଇ ଆସିବା ପାଇଁ ରବନ୍ ଦୁଇଜଣ ସାଥୀଙ୍କୁ ପଠାଇ ଦେଲା ।

ରନ୍ଧାବଢ଼ା ସରିଗଲା । ସମସ୍ତେ ଏକାଠି ବସି ଭୋଜ ଖାଇଲେ । କେବଳ ପ୍ରାୟୁରଙ୍କ ମନରେ ସୁଖ ନ ଥାଏ । ଅବଶ୍ୟ ହରିଣ ମାଂସ ତରକାରିଟା ଖୁବ୍ ସ୍ୱାଦ ହୋଇଥିଲା ଓ ସେ ତୃପ୍ତିରେ ଖାଉଥିଲେ । କିନ୍ତୁ ରବନର ସାଥୀମାନଙ୍କର ତାଙ୍କରି ଖାଇବା ଆଡ଼କୁ ଦୃଷ୍ଟି ଥାଏ । ସେଇଟା ତାଙ୍କୁ ବଡ଼ ଖରାପ ଲାଗୁଥାଏ । ସେ ମନେ ମନେ ଭାବୁଥାନ୍ତି, "ବଡ଼ ଭୁଲ କଲି । କାହିଁକି ଖଜଣାଟଙ୍କା ଶେରିଫଙ୍କ ପାଖକୁ ନେଇ ଯିବାକୁ ବାହାରିଲି ? ଏ ଦାୟିତ୍ୱ ନେଇ ବଡ଼ ଭୁଲ କରିଛି । ଘୋଡ଼ାର ଜିନରେ ଟଙ୍କାଗୁଡ଼ାକ ବନ୍ଧା ହୋଇଛି । କଅଣ ହେଲା, କିଏ ଜାଣେ ?"

ଏହାପରେ ବଡ଼ୁର ପ୍ରାୟୁର କୌଣସି ମତେ ଖାଇଲେ । ଖାଇ ସାରିଲା କ୍ଷଣି ସେ ଉଠିପଡ଼ି କହିଲେ, "ଆପଣମାନେ ବେଶ୍ ଭଲ ଖାଇବାକୁ ଦେଲେ । ସେଥିପାଇଁ ଧନ୍ୟବାଦ । ମୁଁ ଏବେ ଯାଏଁ ।"

ରବନ୍ ଉତ୍ତର କଲା, "ନିଶ୍ଚୟ, ନିଶ୍ଚୟ । ଆପଣ ତ ସବୁବେଳେ କାର୍ଯ୍ୟବ୍ୟସ୍ତ । ବେଶୀ ସମୟ ରହି ପାରିବେ କାହୁଁ ?"

ପ୍ରାୟୁର—"ଆପଣଙ୍କର ଖୁବ୍ ଦୟା । ମୁଁ ଜାଣେ ପରା···; ମୁଁ ତ କାଲି ଆବଟ୍‌ଙ୍କୁ କହୁଥିଲି ଯେ······"

ରବନ୍ ବାଧା ଦେଇ କହିଲା—"ମୋତେ କ୍ଷମା କରିବେ । ଆପଣ ଶୀଘ୍ର ଯିବାକୁ ବ୍ୟସ୍ତ । ତେବେ ଆପଣଙ୍କ ଖାଦ୍ୟର ମୂଲ୍ୟଟା ଶୀଘ୍ର ଦେଇ ପକାନ୍ତୁ । ମୁଁ ମଧ୍ୟ ଆପଣଙ୍କ ସଙ୍ଗରେ ଦୁଇ ଜଣ ଲୋକ ଦେବି । ସେମାନେ ଆପଣଙ୍କୁ ବଣ ଭିତରେ ସିଧା ବାଟରେ ନେଇ ଯିବେ । ଆପଣ ଅତି ଚଞ୍ଚଳ ମଠରେ ପହଞ୍ଚି ପାରିବେ ।"

ଏହା ଶୁଣିଲା କ୍ଷଣି ପ୍ରାସ୍ପାରଙ୍କର ମୁହଁ କଳା ପଡ଼ିଗଲା । ସେ ଏବେ ରବିନର ଅସଲ ଉଦ୍ଦେଶ୍ୟ ଜାଣି ପାରିଲେ । ତାଙ୍କର ଉପ୍ସ ହେଲା ସେ ମୂଲ୍ୟଟା ସାମାନ୍ୟ ହେବ ନାହିଁ । ତଥାପି ସେ ସାହସ ସଞ୍ଚୟ କରି କହିଲେ, "ମୋଠାରେ ମାତ୍ର ତିନି ଶିଲିଙ୍ଗ ଅଛି । ମୋର ବିଶ୍ୱାସ, ଆପଣମାନେ ମୋଠାରୁ ସେତକ ଛଡ଼ାଇ ନେବେ ନାହିଁ । ଆଉ ଗୋଟିଏ କଥା ବିଚାର କରନ୍ତୁ । ମୁଁ ଖାଇବାକୁ ମାଗି ନଥିଲି । ଆପଣମାନେ ଖାଇବାକୁ ଡାକିବାରୁ ଯିବା ମୁଁ ଖାଇଛି ।"

ଅବଶ୍ୟ ପ୍ରାସ୍ପାର ଯେଉଁ ଯୁକ୍ତି ଦେଖାଇଲେ ତାହା ମନ୍ଦ ନୁହେଁ; କିନ୍ତୁ ରବିନ୍ ଏପ୍ରକାର ଯୁକ୍ତି ଶୁଣିବାର ପାତ୍ର ନୁହେଁ । ସେ ପଚାରିଲା, "ଘୋଡ଼ାର ଜିନରେ ଯେଉଁ ଟଙ୍କା ଥଳି ଅଛି, ସେ କଅଣ ?"

ପ୍ରାସ୍ପାର –"ଓଃ, ସେ ଟଙ୍କା କଥା କହୁଛ ! ସେ ଟଙ୍କା ତ ମୋର ନୁହେଁ । ସେ ହେଉଛି ଖଜଣା ଟଙ୍କା, ଶେରିଫଙ୍କର । ମୁଁ ତ ତାକୁ ଛୁଇଁ ପାରିବି ନାହିଁ ।"

ରବିନ୍ –"ଆପଣଙ୍କ କଥାରେ ମୋର ପୂର୍ଣ୍ଣ ବିଶ୍ୱାସ । ଆପଣଙ୍କ ଠାରେ ମାତ୍ର ତିନି ଶିଲିଙ୍ଗ ଅଛି । ଆମେ କଅଣ ଏଡ଼େ ଅମନୁଷ୍ୟ ଯେ ଆପଣଙ୍କଠାରୁ ଖାଦ୍ୟର ମୂଲ୍ୟ ଗ୍ରହିବୁ । ଆପଣ ନିଜ ଖାଇବା ପାଇଁ ପଇସାଏ ସୁଦ୍ଧା ଦେବା ଦରକାର ନାହିଁ ।"

ପ୍ରାସ୍ପାର ମନେ ମନେ ଆନନ୍ଦିତ ହୋଇ କହିଲେ, "ବତ୍ସ ରବିନ ତୁମର ସୁବିଚାର ପାଇଁ ଧନ୍ୟବାଦ ।"

ସେ ଭାବିଲେ ଯେ, ଗୋଟାଏ ବଡ଼ ବିପଦରୁ ରକ୍ଷା ପାଇଗଲେ । କିନ୍ତୁ ତାଙ୍କର ଆନନ୍ଦ ବେଶିବେଳ ଯାଏ ରହିଲା ନାହିଁ । ରବିନ୍ କହିଲା, "ଆପଣ ତ କିଛି ଦେବେ ନାହିଁ, ଏକଥା ନିଶ୍ଚିତ । କିନ୍ତୁ ଶେରିଫଙ୍କଠାରୁ ଆମର ପ୍ରାପ୍ୟଟା ଆମେ ଆଦାୟକରି ନେବୁ ।" ତାପରେ ନିଜ ଲୋକଙ୍କୁ ଆଦେଶ ଦେଲା, "ଯାଅ, ଟଙ୍କା ଥଳି ଯାକ

ଘୋଡ଼ା ଉପରୁ ନେଇ ଆସ । ଶେରିଫଙ୍କଠାରୁ ପ୍ରାୟ୍ୱାରଙ୍କର ଭୋଜନର ଉପଯୁକ୍ତ ମୂଲ୍ୟ ଆଦାୟ କରାଯିବ ।"

ପ୍ରାୟ୍ୱାର କିଛି କହିବାକୁ ସାହସ କରି ପାରିଲେ ନାହିଁ । କେତେଜଣ ଲୋକ ଯାଇ ଘୋଡ଼ାର ଜିନରୁ ଟଙ୍କାଥଳି ଦୁଇଟି ଘେନି ଆସିଲେ । ରବିନ୍ କହିଲା, "ଏଥିରୁ ଶହେ ପାଉଣ୍ଡ ଗଣି ଆମ ଥଳିରେ ରଖ । ବାକି ଯାହା ରହିବ ତାକୁ ବାନ୍ଧି ପୁଣି ଘୋଡ଼ା ଜିନ୍ ଉପରେ ରଖିଦିଅ ।"

ପ୍ରାୟ୍ୱାରଙ୍କ ଆଗରେ ଲୋକେ ଶହେ ପାଉଣ୍ଡ ଗଣି ନେଲେ । ଅବଶିଷ୍ଟ ଟଙ୍କା ପୁଣି ଥଳିରେ ବାନ୍ଧି ଥଳି ଦୁଇଟିକୁ ଜିନ୍ ଉପରେ ରଖିଦେଲେ ।

ରବିନ୍ ନିଜେ ପ୍ରାୟ୍ୱାରଙ୍କୁ ଘୋଡ଼ା ପାଖକୁ ନେଇ ନେଇ କହିଲା, "ପ୍ରାୟ୍ୱାର ମହାଶୟ, ଆପଣ ଚାଲି ଯାଉଥିବାରୁ ଆମ୍ଭେମାନେ ବିଶେଷ ଦୁଃଖିତ ।" ସେ ଘୋଡ଼ାଉପରେ ବସି ମନ ଦୁଃଖରେ ଯିବାକୁ ବାହାରିଲେ । ରବିନ୍ ପଛଆଡ଼ୁ ଡାକି କହିଲା, "ହଁ, ଗୋଟାଏ କଥା ଶୁଣିଯାନ୍ତୁ । ଶେରିଫଙ୍କୁ କହିଦେବେ ଯେ ରବିନ୍-ହୁଡ଼ ପ୍ରଜାମାନଙ୍କର ଖଜଣାରୁ ଶହେ ପାଉଣ୍ଡ ଜମାଇ ଦେଇଛି ।"

ପ୍ରାୟ୍ୱାର ବିକଳ ହୋଇ କହିଲେ, "ମୁଁ କି ତା କହିପାରେଁ ? ଏହା କହିଲେ ଶେରିଫ ମୋତେ ରଖିବେ ନାହିଁ ।"

ରବିନ୍ ହସି ହସି କହିଲା, "ତେବେ ଆପଣଙ୍କ ଆବଟଙ୍କୁ କହିଦେବେ ଯେ, ସେ ଶହେ ପାଉଣ୍ଡ ପୂରଣ କରି ଦେବେ ।"

—୦—

୩୧

# ରବିନ୍‌ହୁଡ୍ ଓ ରାଜା

ଇଂଲଣ୍ଡର ରାଜା ରବିନ୍ ହୁଡ୍ ଓ ତାର ଦଳର ଲୋକଙ୍କର କାର୍ଯ୍ୟକଳାପ ବିଷୟରେ ସବୁ ଶୁଣି ପାରିଥିଲେ । ସେ ବୁଝିପାରି-ଥିଲେ ଯେ ରବିନ ଜଣେ ଖୁବ୍ ସାହସୀ ଯୋଦ୍ଧା ଓ ଧନୁର୍ବିଦ୍ୟାରେ ପାରଦର୍ଶୀ ।

ଗ୍ରୀଷ୍ମଋତୁର ଦିନେ ପ୍ରଭାତରେ ରାଜା ନଟିଙ୍ଗହାମରେ ଉପସ୍ଥିତ । ଶେରିଫ ଆସି ରାଜାଙ୍କୁ ଯଥାବିଧି ସମ୍ମାନ ଦେଖାଇଲେ । ରାଜା ପଚାରିଲେ, "ମୁଁ ସହରସାରା ବିଜ୍ଞାପନ ଦେଖିଲି ଯେ ରବିନ୍‌ହୁଡ଼କୁ ଧରି ଆଣିବା ଲୋକକୁ ପ୍ରଚୁର ପୁରସ୍କାର ଦିଆଯିବ । ଏପରି ବିଜ୍ଞା-ପନର କାରଣ କଅଣ ?"

ଶେରିଫ୍ ବିମର୍ଷ ଭାବରେ କହିଲେ, "ମହାରାଜ, ଅନେକ ଦିନ ହେଲା ରବିନ୍‌ହୁଡ ମୋର ଆଦେଶ ଅମାନ୍ୟ କରି ଲୁଚିଛି । କିନ୍ତୁ ଆପଣଙ୍କର ସେଥିପାଇଁ ଚିନ୍ତାର କାରଣ ନାହିଁ । ମୁଁ ନିଶ୍ଚୟ ତାକୁ ଧରାଇ ଆଣି ଉପଯୁକ୍ତ ଦଣ୍ଡ ଦେବି ।"

ରାଜା କହିଲେ, "ମୁଁ ଯେତେ ଦୂର ଜାଣେ, ସେ ଜଣେ ବୀର ଯୋଦ୍ଧା, ସାହସୀ ମଧ୍ୟ । ଏପରି ଲୋକର ହୃଦୟ ନିଶ୍ଚୟ କୋମଳ ହୋଇଥିବ । ମୁଁ ଶୁଣିଛି ଯେ ସେ ଦରିଦ୍ରମାନଙ୍କୁ ଯଥେଷ୍ଟ ସାହାଯ୍ୟ କରେ ।"

ଶେରିଫ କହିଲେ, "ମହାରାଜ, ଗରିବ ଲୋକଙ୍କୁ ସେ ଦାନ କରୁଥିବା କଥା ସତ୍ୟ; କିନ୍ତୁ ସେ ସେହି ଧନକୁ ଧନୀ ଲୋକଙ୍କଠାରୁ ଚୋରି ବା ଡକାଏତି କରି ନେଇଥାଏ ।"

ରାଣୀ ଏହା ଶୁଣି ଟିକିଏ ହସିଲେ ମାତ୍ର । ଏହି ସମୟରେ ରାଜାଙ୍କ ଭୋଜନ ପାଇଁ ଶେରିଫଙ୍କ ସ୍ତ୍ରୀ କିଛି ଖାଦ୍ୟ ଆଣି ଟେବୁଲ ଉପରେ ସଜାଡ଼ି ଦେଲେ । ବାସନ ଗୁଡ଼ିକ ଅତି ସାଧାରଣ । ସେଗୁଡ଼ିକ ଦେଖିଲା କ୍ଷଣି ରାଜା ଜାଣି ପାରିଲେ ଯେ ଶେରିଫଙ୍କ ରୁପାବାସନ-ଯାକ କେଉଁଦିନ ରବିନ୍ ହାତରେ ପଡ଼ିଛି । ହୁଏତ ରବିନ୍ ସେହି ବାସନ ମୂଲ୍ୟରେ କେଉଁ ଗରିବ ଲୋକକୁ ସାହାଯ୍ୟ କରୁଛି ।" ରାଜା କହିଲେ, "ମୋର ଇଚ୍ଛା, ମୁଁ ନିଜେ ଯାଇ ରବିନ୍ ହୁଡ଼କୁ ଦେଖିବି । ତାହେଲେ ସେ କି ପ୍ରକାରର ଲୋକ ଜାଣି ପାରିବି ।"

ନଟିଙ୍ଗହାମ୍ ଓ ଆଖପାଖ ଅଞ୍ଚଳରେ ପ୍ରଚାର ହୋଇଗଲା ଯେ ସ୍ୱୟଂ ରାଜା ଶେରଉଡ୍ ଜଙ୍ଗଲକୁ ଯାଇ ରବିନ୍‌ହୁଡ଼ ସାଥିରେ ଦେଖା କରିବେ । ତାଙ୍କ ସାଥିରେ ଶହେ ଜଣ ମାତ୍ର ଅନୁଚର ଯିବେ ।

ଯେଉଁ ଦିନ ରାଜା ଶେରଉଡ଼ ଜଙ୍ଗଲକୁ ଯିବାର କଥା, ତା ପୂର୍ବ ଦିନ ରାଜା ଶେରିଫଙ୍କ ସହିତ ଖାଇ ବସିଥାନ୍ତି, ଏହି ସମୟରେ ଜଣେ ଲୋକ ଖଣ୍ଡିଏ ଚିଠି ଆଣି ରାଜାଙ୍କୁ ଦେଲା । ରାଜା ଚିଠିଟି ପଢ଼ିଲେ । ଏଥିରେ ରବିନ୍ ହୁଡ଼ ରାଜାଙ୍କୁ ଯଥାବିଧି ସମ୍ମାନ ପ୍ରକାଶ କରି ଲେଖିଥିଲା —

"ମହାରାଜ, ଆପଣ ଯଦି ଶହେ ଜଣ ଅନୁଚର ନେଇ ଆସନ୍ତି, ତେବେ କଦାପି ମୋତେ ଦେଖିବାକୁ ପାଇବେ ନାହିଁ । କିନ୍ତୁ ଯେବେ ଆପଣ ଏକାକୀ ଆସନ୍ତି, ତେବେ ମୁଁ ମୋର ସମ୍ବର୍ଦ୍ଧନା ଜଣାଇ ସ୍ୱାଗତ କରିବାକୁ ଯଥାଶକ୍ତି ଚେଷ୍ଟା କରିବି ।"

ରାଜା ଚିଠିଟି ପଢ଼ି କାହାକୁ କିଛି ନ କହି ପକେଟରେ ରଖିଲେ । ତା ଆର ଦିନ ସକାଳୁ ସେ ଅନୁଚରମାନଙ୍କୁ ଜଣାଇ ଦେଲେ ଯେ ତାଙ୍କ ସହିତ କେହି ଯିବା ଆବଶ୍ୟକ ନାହିଁ । ରାଜା ଜଣେ ମନ୍ତ୍ରୀର ବେଶ ଧରି ଏକାକୀ ଶେରଉଡ ଜଙ୍ଗଲ ଅଭିମୁଖରେ ବାହାରିଲେ ।

ଜଙ୍ଗଲରେ କିଛି ଦୂର ଯିବା ପରେ ରାଜା ଦେଖିଲେ ଯେ ଜଣେ ଫର୍ଦ୍ଦକାପ୍ଡ଼ ଲୋକ ଗୋଟାଏ ଛୁରୀଧରି ମଲା ହରିଣଟାଏ ଉପରେ ନଇଁପଡ଼ି କଅଣ କରୁଛି । ରାଜା ଡାକିଲେ, "ସେଠି କିଏ ?"

ଲୋକଟି ବୁଲି ପଡ଼ିବା ମାତ୍ରେ ରାଜା ପଚାରିଲେ, "କଅଣ, ରଜାଙ୍କ ହରିଣରୁ ଗୋଟିଏ କାଟୁଛ, ନା କଅଣ ?"

ଏହି ଫର୍ଦ୍ଦକାପ୍ଡ଼ ଲୋକଟି ହେଉଛି ଲିଟିଲ୍ ଜନ୍ । ସେ କହିଲା, "ରଜାଙ୍କର ହେଲା ତ କ୍ଷତି କଅଣ ?"

ରାଜା କହିଲେ, "ନା, ସେଥିରେ କିଛି ଯାଏ ଆସେନା ।"

ଲିଟିଲ ଜନ ଦେଖିଲା ଯେ ଲୋକଟି ଜଣେ ମଙ୍କ୍ । ସେ ତାଠାରୁ ଅଳ୍ପ ଦୂରରେ ତଳେ ବସିଥିଲେ ।

ଲିଟିଲ ଜନ୍ କହିଲା, "ତୁମେ ଜଣେ ମଙ୍କ୍, ଆମ ସରଦାର ତୁମକୁ ଦେଖିଲେ ଖୁସି ହେବେ ।"

ଛଦ୍ମବେଶୀ ରାଜା ଲିଟିଲ୍ ଜନ୍ ସଙ୍ଗରେ ବଣଭିତରେ ଯାଇ ଆଡ୍ଡାରେ ପହଞ୍ଚିଲେ । ରବିନ୍ ଆଗେଇ ଆସି ମଙ୍କଙ୍କୁ ଯଥାବିଧି ସ୍ୱାଗତ ସମ୍ଭାଷଣ ଜଣାଇଲା । ତାପରେ ସେ କହିଲା, "ଆମର ସୌଭାଗ୍ୟ ଯେ ଆପଣ ଏଠାରେ ପାଦ ଦେଇଛନ୍ତି । ଆଜ ଆମର ଧନୁଶରରେ ଲକ୍ଷ୍ୟଭେଦ କରିବା ଅଭ୍ୟାସ ଚାଲିବ । ତଥାପି ଅନ୍ୟ କାମ ଯେ ନ କରିବୁ, ତା ନୁହେଁ ।"

ଛଦ୍ମବେଶୀ ରାଜା କହିଲେ, "ମୁଁ ମଧ୍ୟ ଟିକିଏ ସେ ବିଦ୍ୟା ହାସଲ କରିଛି । ଆପଣମାନଙ୍କ ସଙ୍ଗେ ଯୋଗ ଦେବାରେ କିଛି ଆପତ୍ତି ଅଛି କି ?"

ରବିନ୍ ହସି ହସି କହିଲା, "କିଛି ଆପତ୍ତି ନାହିଁ । ବରଂ ସେଥିରେ ଆମର ଆନନ୍ଦ ।" ରବିନ୍ ଭାବିଲା, "ଏ ଗୋଟାଏ ଅପୂର୍ବ କଥା । ଧର୍ମକର୍ମ ଦାୟୀର ଜଣେ ମଙ୍କ୍ । ସେ ପୁଣି ଧନୁରେ ଶର ମାରି ଲକ୍ଷ୍ୟ ଭେଦିବାକୁ ଚେଷ୍ଟା କରୁଛି ।"

ଜଣେ ଲୋକ ଲକ୍ଷ୍ୟ ଭେଦ କରିବାକୁ ଧନୁରେ ଗୁଣ ଚଢ଼ାଉଥିଲା । ତାକୁ ଦେଖାଇ ଛଦ୍ମବେଶୀ ରାଜା କହିଲେ, "ମୁଁ ଦେଖୁଛି ଯେ ତୁମ ଭିତରେ ଜଣେ କୁଳୀନ ନାଇଟ ମଧ୍ୟ ଅଛନ୍ତି ।

ରବିନ୍ ଉତ୍ତର କଲା, "ସେ ଜଣେ ନାଇଟ୍ ଏକଥା ସତ । ମାତ୍ର ସେ ଆମ ଦଳର କେହି ନୁହନ୍ତି । ସେ ହେଉଛନ୍ତି ଲି ଜମିଦାରିର ନାଇଟ୍ ସାର୍ ରିଚାର୍ଡ଼ । ଆଜ ଏଠାକୁ ଆସିବା ପାଇଁ ମୁଁ ତାଙ୍କ ପାଖକୁ ଖବର ପଠାଇଥିଲି ବୋଲି ସେ ଆସିଛନ୍ତି । ପ୍ରକୃତ କଥା ହେଉଛି, ମୁଁ ଇଂଲଣ୍ଡର ମହାରାଜାଙ୍କୁ ଅପେକ୍ଷା କରି ରହିଛି । ସେ ଆଜ ଏଠାକୁ ଆସିବାର କଥା । ସାର୍ ରିଚାର୍ଡ଼ ହେଉଛନ୍ତି ରାଜାଙ୍କର ଏକାନ୍ତ ଅନୁଗତ । ତେଣୁ ତାଙ୍କୁ ଡକାଇ ଆଣିଛି ।"

ମଙ୍କ୍ କହିଲେ, "ତେବେ ତୁମେ ହିଁ ହେଉଛ ରବିନ୍ ହୁଡ୍ । ମୁଁ ମଧ୍ୟ ଶୁଣିଛି ଯେ ରାଜା ତୁମ ପାଖକୁ ଆସିବେ ବୋଲି ସ୍ଥିର କରିଛନ୍ତି ।"

ରବିନ୍ ଗୋଟିଏ ଧନୁ ଓ କେତେକ ଶର ଆଣି ଛଦ୍ମବେଶୀ ରାଜାଙ୍କ ହାତରେ ଦେଲା । ଅନ୍ୟମାନଙ୍କ ପରି ସେ ମଧ୍ୟ ଲକ୍ଷ୍ୟଭେଦ କରିବାକୁ ଚେଷ୍ଟା କଲେ । ରବିନ୍ ଦେଖିଲା ଯେ ମଙ୍କ୍ ଜଣକ ଲକ୍ଷ୍ୟଭେଦ କରିବାରେ ଖୁବ ପାରଦର୍ଶୀ ।

ରବିନ୍ ପ୍ରସ୍ତାବ କଲା, "ଏଥର ଗୋଟାଏ କଥା କରାଯାଉ । ସମସ୍ତେ ଗୋଟିଏ ଧାଡ଼ିରେ ଛିଡ଼ା ହୋଇ ଜଣକ ପରେ ଜଣେ ଲକ୍ଷ୍ୟ ଭେଦ କରିବାକୁ ଚେଷ୍ଟା କରିବା । ଯିଏ ଲାଖକୁ ଠିକ୍ ଭେଦି ପାରିବ ନାହିଁ ତାକୁ ତା ପାଖଲୋକ ବିଧାଏ ମାରିବ ।"

ଏହିପରି ଚାଲିଲା । ଧାଡ଼ି ଭିତରେ ରବିନ୍ ଏହି ମଙ୍କ୍ଙ୍କ ପାଖରେ ଥିଲା । ମଙ୍କ୍ ଏପରି ଶର ମାରିଲେ ଯେ ତାଙ୍କ ଶରଟି ଲକ୍ଷ୍ୟର ଠିକ୍ ମଧ୍ୟ ସ୍ଥଳରେ ବାଜିଲା । ରବିନ୍‌ର ଶରଟି ଲକ୍ଷ୍ୟଠାରୁ

ଟିକଏ ଦୂରରେ ବାଜିଲା । ମର୍କ୍ ରବର୍ଟ୍‌ଙ୍କୁ ଖୁବ୍ ଜୋରରେ ଗୋଟିଏ ବିଧା ମାରିଲେ ।

ଲକ୍ଷ୍ୟଭେଦ ଶେଷ ହେଲା । ରବର୍ଟ୍ ମର୍କ୍‌ଙ୍କଠାରୁ ବିଧାଖାଇ ରାଗିବା ପରିବର୍ତ୍ତେ ପ୍ରଶଂସା କରି କହିଲା, "ଯାହା ହେଉ, ତୁମର ବାହୁରେ ବେଶ ଜୋର ଅଛି । ତୁମର ଏ ଉପର ପୋଷାକଟା କାଢ଼ିଦିଅ ନା ଆମେ ଟିକଏ ତୁମ ଦେହକୁ ଭଲକରି ଦେଖିବୁ ।"

ମର୍କ୍ ଟିକଏ କୁଣ୍ଠା ପ୍ରକାଶ କରିବାରୁ ରବର୍ଟ୍ କହିଲା, "କାଢ଼ିଦିଅ ।"

ତଥାପି ମର୍କ୍ ପୋଷାକ ନ କାଢ଼ିବାରୁ ରବର୍ଟ୍ ଖୁବ୍ ରାଗିଗଲା । ତାର କଥାକୁ କେହି ଅମାନ୍ୟ କଲେ ସେ ସହିବାର ଲୋକ ନୁହେଁ । ଏପରି ଅପମାନ, ପୁଣି ନିଜ ଲୋକଙ୍କ ଆଗରେ ସେ ସହନ୍ତା କିପରି ? ସେ ସଙ୍ଗେ ସଙ୍ଗେ ମର୍କ୍‌ଙ୍କୁ ଦୁଇହାତରେ ଏପରି ମୁଥ ମାରିଲା ଯେ ସେ ତଳେ ପଡ଼ିଗଲେ । ମାତ୍ର ମର୍କ୍ ଏଥିରେ ଦବି ଯିବାର ଲୋକ ନୁହନ୍ତି । ସେ ସଙ୍ଗେ ସଙ୍ଗେ ଉଠି ରବର୍ଟ୍ ଉପରେ ଏପରି ବିଧାବୃଷ୍ଟି କଲେ ଯେ ରବର୍ଟ୍ ତଳେ ପଡ଼ିଗଲା ।

ରବର୍ଟ୍ ତଳେ ପଡ଼ି ରହି କହିଲା, "ଆଜ ମୋର ଭାରି ଆନନ୍ଦ ଯେ ମୋ ମନଲାଖି ଜଣେ ଲୋକ ପାଇଲି । ତୁମେ ମୋ ଦଳରେ ଯୋଗ ଦେଲେ ମୁଁ ଖୁବ ସୁଖୀ ହେବି ।"

ସାର୍ ରିଚ୍ଚାର୍ଡ଼ ଦଉଡ଼ି ଆସି ରବର୍ଟ୍‌ଙ୍କୁ ଧରି ଠିଆ କରି ଦେଲେ । ତା ପରେ ମର୍କ୍‌ଙ୍କ ଆଡ଼କୁ କିଛି ସମୟ ଗୁହିଁଲେ । ଏହି ସମୟରେ ଏକ ଅଦ୍ଭୁତ ଘଟଣା ଘଟିଲା । ହଠାତ୍ ସାର୍ ରିଚ୍ଚାର୍ଡ଼୍ ମର୍କ୍‌ଙ୍କ ଆଗରେ ଜାନୁପାତ କରି ସମ୍ମାନ ଦେଖାଇ କହିଲେ, "ମହାରାଜ ।"

ଏହା ଶୁଣିଲା ମାତ୍ରେ ରବର୍ଟ୍ ବୁଝି ପାରିଲା ଯେ ମର୍କ୍ ଜଣକ ହେଉଛନ୍ତି, ଇଂଲଣ୍ଡର ଛଦ୍ମବେଶଧାରୀ ମହାରାଜା । ସେ ମଧ୍ୟ ହଠାତ୍

ଜାନୁପାତ କରି ରାଜାଙ୍କୁ ଯଥୋଚିତ ସମ୍ମାନ ଦେଖାଇଲା । ରବିନ୍‌ର ସଙ୍ଗୀମାନେ ମଧ୍ୟ ସମସ୍ତେ ଆସି ରାଜାଙ୍କୁ ଉପଯୁକ୍ତ ସମ୍ମାନ ଦେଖାଇଲେ ।

ରାଜା ସମସ୍ତଙ୍କୁ ସମ୍ବୋଧନ କରି କହିଲେ, "ତୁମ୍ଭେମାନେ କି ପ୍ରକାର ଲୋକ, ତାହା ମୁଁ ଆଜି ସ୍ୱଚକ୍ଷୁରେ ଦେଖିଲି । ତୁମ୍ଭମାନଙ୍କର ସାହସ ଓ ବଳ ବିଷୟରେ ଯାହା ଶୁଣିଥିଲି, ସେ ସବୁ ସମ୍ପୂର୍ଣ୍ଣ ସତ୍ୟ । ମୋର ଇଚ୍ଛା, ତୁମ୍ଭେମାନେ ମୋର ପରିଷଦରେ କାର୍ଯ୍ୟ ଗ୍ରହଣ କର ।"

ରବିନ୍ କଅଣ ଉତ୍ତର ଦେବ ସ୍ଥିର କରି ପାରିଲା ନାହିଁ । ରାଜାଙ୍କ ଅଧୀନରେ ଚାକିରି କରିବା ତାର ଇଚ୍ଛା ନ ଥିଲା । ବନ ଜଙ୍ଗଲ ତାର ପ୍ରିୟ ସ୍ଥଳ । ତାକୁ ଛାଡ଼ି ସହରରେ ସେ କିପରି ରାଜାଙ୍କ ଅଧୀନରେ ରହିବ । ସେ କିଛି ଉତ୍ତର ନ ଦେଇ ଚୁପ୍ ହୋଇ ଛିଡ଼ା ହେଲା ।

ରାଜା ଖୁବ୍ ବୁଦ୍ଧିମାନ୍ । ସେ ରବିନ୍‌ର ମନର ଅଭିପ୍ରାୟ ଜାଣି ପାରିଲେ । ତେଣୁ ସେ କହିଲେ, "ଆଚ୍ଛା, ତେବେ ତୁମ୍ଭେମାନେ ମୋତେ ସଙ୍ଗରେ ନେଇ ନଟିଙ୍ଗହାମରେ ଛାଡ଼ିଦେଇ ଆସ ।"

ଦୁଇ ଘଣ୍ଟା ପରେ ନଟିଙ୍ଗହାମ ସହରର ରାସ୍ତା ଲୋକାରଣ୍ୟ ହୋଇଗଲା । ଚାରିଆଡ଼େ ଶୁଣାଗଲା ଯେ ରାଜା ରବିନ୍ ହୁଡ୍ ଓ ତାହାର ଦଳର ଲୋକମାନଙ୍କୁ ସଙ୍ଗରେ ଘେନି ଆସୁଛନ୍ତି । ଏ ଦୃଶ୍ୟ ଦେଖିବା ପାଇଁ ସମସ୍ତଙ୍କର ଆଗ୍ରହ ।

ବଜାରରେ ପହଞ୍ଚିଲା ମାତ୍ରେ ରାଜା ସମବେତ ଜନତା ସମକ୍ଷରେ ରବିନ୍‌ହୁଡ଼୍‌କୁ କହିଲେ, "ଆଜି ମୁଁ ତୁମ୍ଭଙ୍କୁ ଓ ତୁମ୍ଭ ଦଳର ସମସ୍ତଙ୍କୁ କ୍ଷମା ପ୍ରଦାନ କରୁଅଛି ଯେ ତୁମ୍ଭେମାନେ ମୋର ବୀର ସୈନିକ ରୂପେ କାର୍ଯ୍ୟକରି ମୋର ଓ ଦେଶର ସେବା କରିବ ।"

ରାଜାଙ୍କ ପକ୍ଷରେ ଏହା କମ୍ ଉଦାରତା ନୁହେଁ । ରବିନ୍ ମନେ ମନେ ଭାବିଲା, "ଏହାପରେ ଆପତ୍ତି କରିବା ଅସୁନ୍ଦର ହେବ; ବିଶେଷତଃ ମୁଁ ରାଜାଙ୍କ କର୍ମଚାରୀ ରୂପେ ରହିଲେ ମେରିଆନ୍ ସୁଖରେ ରହିପାରିବ । ତେଣୁ ସେ ରାଜାଙ୍କର ଭୃତ୍ୟରୂପେ କାର୍ଯ୍ୟକରିବାକୁ ସ୍ୱୀକୃତି ପ୍ରକାଶ କଲା । ସ୍ୱଭାବତଃ ତାର ଅନୁଚରମାନେ ରାଜାଙ୍କ ସୈନ୍ୟ ବିଭାଗରେ କାର୍ଯ୍ୟ ଗ୍ରହଣ କଲେ । ତଥାପି କେତେ ଜଣ ନିଜ ନିଜ ଗୃହକୁ ଫେରି ଯାଇ ଅନ୍ୟ ଉପାୟରେ ଜୀବିକା ଅର୍ଜନ କରିବାକୁ ଇଚ୍ଛା ପ୍ରକାଶ କରିବାରୁ ରାଜା ସେମାନଙ୍କୁ ମୁକ୍ତି ଦେଲେ ।

କିଛି ଦିନ ପରେ ରାଜା ନଟିଂଗହାମ ପରିତ୍ୟାଗ କରି ନିଜର ରାଜଧାନୀ ଲଣ୍ଡନକୁ ଯିବାକୁ ବାହାରିଲେ । ତାଙ୍କ ସଙ୍ଗରେ ରବିନ ହୁଡ଼, ତାର ସ୍ତ୍ରୀ ଓ ଦଳର ଅନେକ ଲୋକ ଚାଲିଲେ ।

———

୩୨

# ରାଜପାରିଷଦ ରବିନ୍ ହୁଡ୍

ରବିନ୍ ହୁଡ଼ର ଦଳରୁ ଯେଉଁମାନେ ତା ସଙ୍ଗେ ଲଣ୍ଡନକୁ ଯାଇ ରାଜାଙ୍କ ସୈନ୍ୟଦଳରେ ଯୋଗ ଦେଇଥିଲେ, ସେମାନେ ଭାବିଥିଲେ ଯେ ସେମାନେ ଖାଇବା ପିଇବାକୁ ଯଥେଷ୍ଟ ପାଇବେ ଓ ସ୍ଫୂର୍ତ୍ତିରେ ଜୀବନ କଟାଇ ଦେବେ । ରହିବାକୁ ଘର ମିଳିବ, ଭଲ ଖାଇବାକୁ ପିନ୍ଧିବାକୁ ମିଳିବ, ପୁଣି ନିୟମିତ ଭାବରେ ବେତନ ମିଳିବ । ଏହା ଅପେକ୍ଷା ଆଉ କଅଣ ଅଧିକ ଦରକାର ?

କିନ୍ତୁ କିଛି ଦିନ ରାଜାଙ୍କ ଚାକିରି କରିବା ପରେ ସେମାନଙ୍କର ଧାରଣା ବଦଳିଗଲା । ରବିନ୍ ତା ଲୋକଙ୍କୁ ଦରମା ଦେବା ପାଇଁ ଟଙ୍କା ମାଗିବାରୁ ଉତ୍ତର ମିଳିଲା, "ତୁମ ଅଧୀନରେ ସେମାନେ ରହିଛନ୍ତି । ସେମାନଙ୍କୁ ଦରମା ଦେବା ଭାର ତୁମ ଉପରେ ।" ରାଜାଙ୍କର ଜଣେ ନାଇଟ୍ ଆସି ରବିନ୍‌କୁ ବୁଝାଇ ଦେଲା, "ସବୁ ପାରିଷଦମାନେ, ନାଇଟ୍‌ମାନେ ନିଜ ନିଜ ଲୋକଙ୍କୁ ଦରମା ଦେବାର କଥା । ଯଦି କୌଣସି ପାରିଷଦ ନିଜ ଅଧୀନରେ ଥିବା ଲୋକଙ୍କୁ ଦରମା ଆଦି ଦେବାକୁ ଅସମର୍ଥ, ରାଜସଭାରେ ତାର ରହିବା ଦରକାର ନାହିଁ ।" ରବିନ୍ କୌଶଳରେ ବୁଝିଲା ଯେ ନାଇଟ୍‌ଙ୍କ କଥା ସତ । କେତେଜଣ ନାଇଟ୍ ଅବଶ୍ୟ କିଛି ଦିଅନ୍ତି ନାହିଁ ।

ରବିନ୍‌କୁ ଏକଥା ବଡ଼ ବାଧିଲା । ଯାହା ହେଉ ସେ ଲଣ୍ଡନ ଗଲାବେଳେ ଗୋଟିଏ ବାକ୍ସରେ ତାର ସୁନା ରୁପା ନେଇ ଯାଇଥିଲା ସେଇଥିରୁ ସେ ଯଥାସମୟରେ ତାର ଲୋକମାନଙ୍କୁ ସେମାନଙ୍କ

ବେତନ ଦେବାକୁ ଲାଗିଲା । କିନ୍ତୁ ଏପରି ସେ କେତେ ଦିନ ଚଳାଇ ପାରିବ ? କଥା ଅଛି, ବସି ଖାଇଲେ ନଈବାଲି ସରେ । କୌଣସିଠାରୁ ପଇସାଟିଏ ଆସିବାର ଆଶା ନାହିଁ । ଖାଲି ଖରଚ ।

ରବିନ୍ ପ୍ରଥମେ ପ୍ରଥମେ ଖୁବ୍ ଫୁର୍ତ୍ତିରେ ଥିଲା । ନିଜ ଲୋକଙ୍କୁ ଟଙ୍କା ଦେବାରେ ହେଳା ନ ଥାଏ । କେତେବେଳେ ହେଲେ ତାଠାରେ କୃପଣତା ଦେଖାଯାଏ ନାହିଁ । ଏହା ଦେଖି କୌଣସି କୌଣସି ନାଇଟ୍ ରବିନ୍ ଠାରୁ ଧାର ନେବାକୁ ଆରମ୍ଭ କଲେ । କିଏ ଆସି କହେ, "ରବିନ୍, ମୋର ଟିକିଏ ଅଭାବ ପଡ଼ୁଛି । ମୋର ଲୋକେ ଦରମା ପାଇଁ ବ୍ୟସ୍ତ କରୁଛନ୍ତି । ସେମାନଙ୍କୁ କିଛି କିଛି ନ ଦେଲେ ସେମାନେ ଗଣ୍ଡଗୋଳ କରି ପାରନ୍ତି । ମୋତେ କିଛି ଟଙ୍କା ଧାର ଦେଇଥାଅ । ମୁଁ ଶୁଝି ଦେବି ଯେ ।"

ରବିନର ମନ ବଡ଼ ନିର୍ମଳ । ଛଳ କପଟ ତାକୁ ଜଣା ନଥାଏ । ସେ ଭାବେ, "ମୋର ଦିନେ ହେଲେ ଅଭାବ ପଡ଼ିବ । ସେତେବେଳେ ନିଶ୍ଚୟ ଅନ୍ୟମାନେ ମୋତେ ସାହାଯ୍ୟ କରିବେ ।" ଏହିପରି ବହୁତ ସେ ଧାର ଦେଇ ପକାଏ ।

ଦିନେ ରବିନ୍ ଦେଖିଲା ଯେ ତାର ବାକ୍ସ ପ୍ରାୟ ଶୂନ୍ୟ ହୋଇ ଗଲଣି । ଆଉ କେତେ ଦିନରେ କିଛି ନ ଥିବ ।

ସତକୁ ସତ କିଛି ଦିନ ପରେ ଦେଖାଗଲା ଯେ ବାକ୍ସରେ ଆଉ ପଇସାଟିଏ ସୁଦ୍ଧା ନାହିଁ । ଯେଉଁ ନାଇଟ୍‌ମାନେ ତାଠାରୁ ଧାର ନେଇଥିଲେ, ସେ ଯାଇ ସେମାନଙ୍କୁ ମାଗିଲା । କିନ୍ତୁ କେହି କିଛି ଦେଲେ ନାହିଁ । ଗୋଟାଏ କିଛି କାରଣ ଦେଖାଇ, ଦେବାକୁ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ଯେଉଁ ନାଇଟ୍‌ମାନଙ୍କୁ ରବିନ୍ ନିଜର ବନ୍ଧୁ ବୋଲି ଭାବୁଥିଲା, ସେମାନେ ଏବେ ତାକୁ ଘୃଣା କରିବାକୁ ଲାଗିଲେ । ରବିନ୍ ବୁଝି ପାରିଲା ଯେ ଏମାନେ କେବଳ ଧନ ନେବା

ଆଶାରେ ବନ୍ଧୁ ବୋଲାଉଥିଲେ । ଧନ ସରିଗଲା ବେଳକୁ କେବଳ ତାର ସାଥୀମାନେ ତା ଦୁଃଖର ସଙ୍ଗୀ ହୋଇ ରହିଲେ ।

ଦିନେ ସେ ସେହି ସାଥୀମାନଙ୍କୁ ଡାକି ପ୍ରକୃତ ଘଟଣା ଜଣାଇ ଦେଲା । ସେମାନେ ଅବଶ୍ୟ ରବିନ୍‌ର ଏ ଦୁର୍ଦ୍ଦଶା ଓ ଅର୍ଥାଭାବ ଦେଖି ଦୁଃଖିତ ହେଲେ; କିନ୍ତୁ ଟଙ୍କା ନ ପାଇଲେ ସେମାନେ ବଞ୍ଚିବେ କିପରି ? ତେଣୁ ଅନେକେ ଲଣ୍ଡନରୁ ପଳାଇ ନିଜ ନିଜ ଘରକୁ ଚାଲିଗଲେ । କିନ୍ତୁ ସେମାନେ ଘରେ ବେଶିଦିନ ରହି ପାରିଲେ ନାହିଁ । ସ୍ୱାଧୀନଭାବରେ ଜଙ୍ଗଲରେ ରହିବା ସେମାନଙ୍କର ଅଭ୍ୟାସ ହୋଇ ଯାଇଥିଲା । ଗାଆଁରେ ରହି ଚାଷ କରି ବା ମଜୁରି ଲାଗି ଚଳିବା ସେମାନଙ୍କୁ ଭଲ ଲାଗିଲା ନାହିଁ । ସେମାନେ ଶେରଉଡ଼ ଜଙ୍ଗଲକୁ ଚାଲି ଯାଇ ପୂର୍ବପରି ଚଳିବାକୁ ଲାଗିଲେ ।

ଏଣେ ରବିନ୍‌ହୁଡ଼ ଯେତେ ଦିନ ସମ୍ଭବପରି ସେତେଦିନ ଯାଏ ରାଜସଭାରେ ରହିଥାଏ । ସେତେବେଳକୁ ତାର ସହଚର ଭିତରୁ ପ୍ରାୟ କେହି ନଥାନ୍ତି କହିଲେ ଚଳେ । ତାର ମନେ ହେଲା ଯେ ସେ ଶେରଉଡ଼ ଜଙ୍ଗଲକୁ ପଳାଇ ଗଲେ ଶାନ୍ତିରେ ରହି ପାରନ୍ତା । ସେ ତା ମନ କଥା ମେରିଆନକୁ କହିଲା । ମେରିଆନ୍ ଜାଣେ ଯେ ରବିନ ସହରରେ ରହିଲେ ସୁଦ୍ଧା ତା 'ମନରେ ଟିକିଏ ହେଲେ ସୁଖ ନାହିଁ । ତେଣୁ ସେ ରବିନ୍ ସହିତ ଶେରଉଡ଼କୁ ଫେରିବା ପାଇଁ ଇଚ୍ଛା ପ୍ରକାଶ କରି କହିଲା, "ତୁମେ ଆଗେ ଯାଇ ରାଜାଙ୍କ ଅନୁମତି ମାଗ । ତାଙ୍କ ଅନୁମତି ନ ନେଇ ଚାଲିଗଲେ ତାଙ୍କର ସବୁ କ୍ରୋଧ ଆମ ଉପରେ ପଡ଼ିବ ।"

ରବିନ୍ ରାଜାଙ୍କ ଅନୁମତି ମାଗିବା ପାଇଁ ପ୍ରସ୍ତୁତ ହେଲା ।

ସେ ରାଜାଙ୍କ ସହିତ ସାକ୍ଷାତ କରିବା ପାଇଁ ପ୍ରଥମେ ପ୍ରଧାନମନ୍ତ୍ରୀଙ୍କୁ ଜଣାଇଲା । ମନ୍ତ୍ରୀ ମହୋଦୟ ଦୟାକରି ରବିନ୍‌ର ରାଜାଙ୍କ ସଙ୍ଗେ

ସାକ୍ଷାତର ବ୍ୟବସ୍ଥା କରିଦେଲେ । ଅବଶେଷରେ ରବର୍ଟ୍ ରାଜାଙ୍କୁ ଜଣାଇଲା ଯେ ସେ ଅନେକ ଦିନ ହେଲା ତାର ପ୍ରିୟ ଶେରଉଡ଼୍ ଛାଡ଼ି ଲଣ୍ଡନ ସହରରେ ରହିଛି । ଆଉ ଥରେ ସେହି ବଣଜଙ୍ଗଲ ଦେଖିବାକୁ ତାର ଇଚ୍ଛା । ସେଠାରେ କିଛିଦିନ ନ କଟାଇଲେ ତାର ମନ କାହିଁରେ ଲାଗିବ ନାହିଁ ।

ରାଜା କିଛିକ୍ଷଣ ନୀରବ ରହି କହିଲେ, "ରବର୍ଟ୍, ତୁମେ ଯାହା କହୁଛ ସେଥିରେ ସତ ଅଛି । ମୁଁ ତୁମର ଇଚ୍ଛାରେ ବାଧା ଦେବାକୁ ଚାହେଁ ନାହିଁ । ତୁମେ ଶେରଉଡ଼କୁ ଯାଅ । ସେଠାରେ ପନ୍ଦର ଦିନ ରହି ଚାଲି ଆସିବ । ଠିକ ପନ୍ଦର ଦିନ ପରେ ମୁଁ ତୁମକୁ ଏଠାରେ ଯେପରି ଦେଖିବ ।"

ରବର୍ଟ୍ ଅତି ଆନନ୍ଦରେ ରାଜାଙ୍କ ପାଖରୁ ଆସି ମେରିଆନକୁ ଏହି ସୁସମ୍ବାଦ ଜଣାଇଲା । ସେ ଦେଖିଲା ଯେ ମେରିଆନ ପକ୍ଷରେ ଚାଲି ଚାଲି ଶେରଉଡ଼ ପର୍ଯ୍ୟନ୍ତ ଯାଇ ପାରିବା ସମ୍ଭବ ନୁହେଁ । ମାତ୍ର ସଙ୍ଗେ ସଙ୍ଗେ ଗାଡ଼ିର ବନ୍ଦୋବସ୍ତ ହୋଇ ପାରିବାର ଆଶା ନ ଥିଲା । ତେଣୁ ରବର୍ଟ୍ ଏକୁଟିଆ ଚାଲିଗଲା । ସପ୍ତାହକ ପରେ ମେରିଆନ ଗୋଟିଏ ଗାଡ଼ିରେ ଯିବାର ସ୍ଥିର ହେଲା ।

---

୩୩

# ରବିନ୍ ଘରକୁ ଫେରିଲା

ରବିନର ସଙ୍ଗୀମାନଙ୍କ ମଧ୍ୟରୁ ଅନେକେ ନିଜ ନିଜର ବ୍ୟବସାୟ କରି ଚଳୁଥିଲେ । ମଚ୍‌ର ବାପା ଏଥିମଧ୍ୟରେ ମରି ଯାଇଥିଲେ । ମଲାବେଳକୁ ସେ କିଛି ସମ୍ପତ୍ତି ରଖି ଯାଇନଥିଲେ । ଖାଲି ଗୋଟିଏ ଅଟାକଳ ଥିଲା । ସେ ତାହାକୁ ଚଳାଇ କିଛି ରୋଜଗାର କରି ଦିନ କଟାଉଥିଲା । ରବିନ୍ ସହିତ ଯେଉଁ ସାଥୀମାନେ ଲଣ୍ଡନ ଯାଇ ନ ଥିଲେ, ସେମାନେ କିଏ କଅଣ କରୁଛନ୍ତି, ସେକଥା ମଧ୍ୟ ତାକୁ ଜଣା ନ ଥିଲା । କେବଳ ଫ୍ରାୟାର ଟକ୍ ସହିତ ତାର ସମ୍ବନ୍ଧ ଲାଗି ରହିଥିଲା ।

ପ୍ରତି ରବିବାର ଦିନ ସେ ଟକ ପାଖକୁ ଯାଏ । ସେଠାରୁ ଦୁହେଁ ସଙ୍ଗ ହୋଇ ଶେରଉଡ଼ ଜଙ୍ଗଲ ଭିତରେ କିଛି ସମୟ ବୁଲି ଫେରି ଆସନ୍ତି ।

ଦିନେ ଦୁହେଁଯାକ ବଣ ଭିତରେ ବୁଲୁଥିଲେ । ସେଦିନ ସେମାନଙ୍କ ମନ ଭଲ ନ ଥାଏ । ହଠାତ୍ ଟକ୍ ଗୋଟାଏ ଶବ୍ଦ ଶୁଣିପାରି ମଚ୍‌କୁ ପଚାରିଲା, "କଅଣ ଗୋଟାଏ ଶବ୍ଦ ହେଲା । ତୁମେ ଶୁଣିଛ ?"

ମଚ୍—ନାହିଁ ମୁଁ ତ କିଛି ଶୁଣି ପାରିଲି ନାହିଁ । କିପରି ଶବ୍ଦ ?

ଟକ୍—ଠିକ୍ ଆମରି ଆଗ କାଳର ଶବ୍ଦ ପରି ।

ଏହି ସମୟରେ ପୁଣି ସେହି ଶବ୍ଦ ଶୁଣାଗଲା ।

ଏବେ ଦୁର୍ଦ୍ଦେଁଯାକ ନିଶ୍ଚିତରୂପେ ଜାଣି ପାରିଲେ ଯେ ସେମାନେ ଶେରଉଡ଼ ବନରେ ରହୁଥିବା ବେଳେ ଯେପରି ଶିଙ୍ଘାଧ୍ୱନି କରୁଥିଲେ ଏ ଶବ୍ଦଟି ଠିକ୍ ସେହିପରି ।

କିଏ ଏହି ଶିଙ୍ଘା ବଜାଉଛି ଜାଣିବା ପାଇଁ ଦୁର୍ଦ୍ଦେଁଯାକ ଶବ୍ଦକୁ ଲକ୍ଷ୍ୟକରି ଧାଇଁଲେ । କାହାସଙ୍ଗେ ଦେଖାହେବ ସ୍ଥିର ନ ଥିଲା ; କିନ୍ତୁ ଦୁର୍ଦ୍ଦେଁଯାକ ଭାବୁଥାନ୍ତି—ଆମରି ଭାଗ୍ୟ ବଦଳିଲା କି ? ସତେ କଅଣ ସରଦାର୍ ସଙ୍ଗେ ଦେଖାହେବ ?

କିଛିଦୂର ଯିବାପରେ ସେମାନେ ଦେଖିଲେ ଯେ ଗଛମାନଙ୍କ ଭିତରେ ଟିକିଏ ଖୋଲା ଜାଗାରେ ତିନିଜଣ ଲୋକ । ସେମାନଙ୍କ ଭିତରୁ ଜଣେ ଭୂଇଁରେ ପଡ଼ିଛି ; ବୋଧହୁଏ ଶ୍ରାନ୍ତ କ୍ଲାନ୍ତ ହୋଇ । ଆଉ ଜଣେ ତା ଉପରକୁ ନଇଁ ପଡ଼ିଛି । ତୃତୀୟ ଲୋକଟି ଯେପରି ଡେଙ୍ଗା ସେହିପରି ମୋଟା । ସେ ଠିଆ ହୋଇଥାଏ । କିଏ ଦୁଇଜଣ ସେଠାକୁ ଆସୁଥିବାର ଦେଖି ସେ ଅଣ୍ଟାରୁ ମୋଟାଏ ଛୁରି କାଢ଼ି ଧରିଲା ।

ଟକ୍ ଏହି ଲୋକଟିକୁ ଚିହ୍ନିପାରି କହିଲା, "ଲିଟିଲ୍ ଜନ୍, କଅଣ ଆମକୁ ଭୁଲିଗଲୁ ଯେ ଛୁରି କାଢ଼ୁଛୁ ? ଛୁରି ରଖିଦେ । ଆମେ ସବୁ ତମର ପୁରୁଣା ବନ୍ଧୁ, ମଚ୍ ଆଉ ଟକ୍ ।"

ଲିଟିଲ୍ ଜନ୍ ପୁରୁଣାବନ୍ଧୁ ଦୁହିଁଙ୍କୁ ଦେଖି ଖୁବ୍ ଆନନ୍ଦିତ ହେଲା । ତାକୁ ଟକ୍ ପଚାରିଲା—ଏ ଦୁହେଁ କିଏ ? ଲିଟିଲ୍ ଜନ୍ ଉତ୍ତରକଲା, "ଯେଉଁ ଜଣକ ନଇଁ ପଡ଼ିଛି, ସେ ହେଉଛି ଉଇଲ୍ ସ୍କାର୍ଲେଟ । ତାର ଚେହେରାରେ ସେପରି କିଛି ପରିବର୍ତ୍ତନ ହୋଇଥିଲା ପରି ମନେ ହେଉନାହିଁ । ତାକୁ ଚିହ୍ନିପାରୁନାହିଁ କାହିଁକି ?"

ଦୁର୍ଦ୍ଦେଁଯାକ ଭୂଇଁରେ ପଡ଼ିଥିବା ଲୋକଟି ଆଡ଼କୁ ଟିକିଏ ଅଗ୍ରସର ହେଲେ । ମଚ୍ ପଚାରିଲା, "ଆଉ ଯେଉଁ ଲୋକଟି ଭୂଇଁରେ ଶୋଇଛି, ସେ କିଏ ?"

ଜହଲ୍ ସ୍କାର୍ଲେଟ ମଚ୍ ଆଡ଼କୁ ଟିକଏ ମୁହଁ ବୁଲାଇ ଧୀର ସ୍ୱରରେ କହିଲା – ଆମର ସରଦାରଜୀ ।

ଏହା ଶୁଣିଲାକ୍ଷଣି ଟକ୍ ନିଜକୁ ସମ୍ଭାଳି ନ ପାରି ରବିନ୍ ପାଖକୁ ଧାଇଁଯାଇ କହିଲା, "ରବିନ୍, ସରଦାରଜୀ, ଥରେ ମୋ ଆଡ଼କୁ ଚାହଁ । ତମର ପୁରୁଣା ସାଥି ଟକ୍‌କୁ କଅଣ ଭୁଲିଗଲ ?"

ରବିନ୍ ଭଡ଼ମୋଡ଼ ହୋଇ ଚାହିଁଲା ।

ଲଣ୍ଡନରୁ ବାହାରି ରବିନ୍ ଗୃହହୀନ ହେଲା କେବଳ ଚାଲିବାରେ ଲାଗିଛି । ତାର ପେଟରେ ଆଦୌ ଅନ୍ନ ପଡ଼ିନାହିଁ । ସେ ନିତାନ୍ତ କ୍ଳାନ୍ତହୋଇ ପଡ଼ିଯାଇଛି । ଶେରଉଡ଼କୁ ଫେରି ଆସିବାର ଯେଉଁ ଦୃଢ଼ ପ୍ରତିଜ୍ଞା ତାହାହିଁ ତାକୁ ଏ ପର୍ଯ୍ୟନ୍ତ ବଳ ଦେଇ ଆସିଛି । ଅନ୍ୟ କେହି ଏପରି କରି ପାରି ନ ଥାନ୍ତା । ଶେରଉଡ଼ରେ ପହଞ୍ଚିବା ପରେ ତାର ଧାରଣା ହୋଇଛି ଯେ ଏଣିକି ଚିନ୍ତାର କାରଣ ନାହିଁ । ତାର ଦେହର ବଳ ଫେରି ଆସିବ ।

ରବିନ୍ ଆଖି ମେଲି ଟକ ଓ ମଚ୍‌ଙ୍କ ଆଡ଼କୁ ଚାହିଁ କହିଲା, "ଏତେ ଦିନ ପରେ ତୁମ ଦୁହିଁଙ୍କୁ ଦେଖିବା ମୋର ବଡ଼ ଭାଗ୍ୟ । ମୁଁ ରଜାଙ୍କ ଠାରୁ ପନ୍ଦର ଦିନର ଛୁଟି ନେଇ ଆସିଛି । ମୋର ପ୍ରିୟ ଶେରଉଡ଼ ଥରେ ଦେଖି ପୁଣି ଫେରିଯିବି ବୋଲି ରଜାଙ୍କୁ କହି ଆସିଛି । ଏବେ ବାଟରେ ବୃଥାଦିନ ଗଲାଣି । ବୁଲି ବୁଲି ଚାହିଁ ଚାହିଁ ପନ୍ଦର ଦିନ କଟିଯିବ ।"

ଏହା କହି ରବିନ୍ ହଠାତ୍ ତଳୁ ଉଠି ଛିଡ଼ା ହୋଇଗଲା । ସତେ ଯେପରି ତାର ପୂର୍ବ ଶକ୍ତି ଫେରି ଆସିଲା । ସେ ନିଜ ଶିଙ୍ଘାରେ ତିନିଥର ଶବ୍ଦ କଲା । ସେହି ଶବ୍ଦ ବନମଧ୍ୟରେ ପ୍ରତିଧ୍ୱନିତ ହେଲା । ବନ ମଧ୍ୟରୁ ଅନେକ ଲୋକ ବାହାରି ପଡ଼ି ରବିନ୍‌କୁ ଘେରିଗଲେ । ପୂର୍ବର ସାଥୀ ମାନଙ୍କୁ ଦେଖି ରବିନ୍ ଆନନ୍ଦରେ ବିଭୋର ହୋଇଗଲା ।

ରବିନ୍ ସେମାନଙ୍କୁ ଗୃହିଁ ଦେଖିଲା ଯେ ସେମାନଙ୍କ ଭିତରୁ ଅନେକେ ରବିନ୍ ସହିତ ନଟିଙ୍ଗହାମରୁ ଲଣ୍ଡନକୁ ଯାଇ ରାଜାଙ୍କ ସୈନ୍ୟ ବିଭାଗରେ କାର୍ଯ୍ୟ କରୁଥିଲେ । ସେମାନେ ପୁଣି ଶେରଉଡ଼କୁ ଫେରି ଆସିଛନ୍ତି । ବୋଧହୁଏ ବନର ଏହି ସ୍ୱାଧୀନଜୀବନ ସେମାନଙ୍କୁ ସହରରୁ ଏଠାକୁ ଟାଣି ଆଣିଥିଲା ।

ରବିନ୍ ସେମାନଙ୍କୁ ସାଦର ସମ୍ଭାଷଣ ଜଣାଇ କହିଲା, "ସାଥୀମାନେ, ମୁଁ ପୁଣି ଶେରଉଡ଼କୁ ଆସିଛି; ରଜାଙ୍କ ହରିଣ ଶିକାର କରି ଖାଇବି । କିନ୍ତୁ ମୋର ଏ ସୁଖ ବେଶି ଦିନ ପାଇଁ ନୁହେଁ ।"

ରବିନ୍ କ୍ଲାନ୍ତ ହୋଇ ପଡ଼ିଥିବାରୁ ଶୀଘ୍ର ଶୋଇ ପଡ଼ିଲା । ଲିଟିଲ ଜନ୍ ଓ ଉଇଲ ସ୍କାର୍ଲେଟ ଟିକିଏ ଦୂରରେ ବସି ଗଳ୍ପ କରିବାକୁ ଲାଗିଲେ ।

ଲିଟିଲ୍ ଜନ—ସରଦାରଙ୍କୁ ଆମେ ଗୃହୁଁ; ସେ ମଧ୍ୟ ଆମକୁ ଗୃହାନ୍ତି । ସେ କିପରି ଏଠାରେ ରହିବେ ସେଥିର ଉପାୟ କରିବା ଦରକାର ।

ଉଇଲ୍ ସ୍କାର୍ଲେଟ—ତୁମେ କଅଣ ତାଙ୍କ ସ୍ୱଭାବ ଜାଣ ନାହିଁ । ସେ କେବେ ହେଲେ ନିଜ କଥା ଭାଙ୍ଗିବେ ନାହିଁ । ରାଜାଙ୍କୁ କହି ଆସିଛନ୍ତି ଯେ ପନ୍ଦର ଦିନ ପରେ ସେ ତାଙ୍କ ପାଖକୁ ଫେରିଯିବେ । ସେ ଫେରି ନ ଯାଇ ରହିବେ ବୋଲି ଆଶା ନାହିଁ ।

ଲିଟିଲ୍ ଜନ୍—ତା ସତ । ଧର, ତାଙ୍କୁ ଯଦି ବଳପୂର୍ବକ ଏଠାରେ ରଖାଯାଏ, ତାହା ହେଲେ ସେ ବାଧ୍ୟ ହୋଇ ରାଜାଙ୍କ ପାଖେ କରିଥିବା ଚୁକ୍ତି ରଖି ପାରିବେ ନାହିଁ । ସେ ଫେରିଯାଇ ପାରିବେ ନାହିଁ । କରିବେ କଅଣ ?

ଜଇଲ୍ ସ୍କାର୍ଲେଟ—ତୁମ କଥା ମୁଁ ବୁଝି ପାରୁନାହିଁ । ବଳ-ପୂର୍ବକ କଏ କପରି ରଖିବ ?

ଲିଟିଲ୍ ଜନ୍—ମନେ କର, ଆମେ ଦୁହେଁ ତାଙ୍କୁ ବାନ୍ଧି ବନ୍ଦୀ କରି ରଖିବା । ସେ ଯିବେ କପରି ?

ଲିଟିଲ୍ ଜନ ଜାଣିଥିଲା ଯେ ରବିନ୍‌ର ଲଣ୍ଡନ ସହର ପ୍ରତି ଆଦୌ ମମତା ନ ଥିଲା । ଏହି ଶେରଉଡ଼ ଜଙ୍ଗଲ ତାର ପ୍ରିୟସ୍ଥାନ, ବଣର ହରିଣ ତାର ପ୍ରିୟ ଖାଦ୍ୟ । କିନ୍ତୁ ରାଜାଙ୍କୁ ସେ ଯାହା କହିଥିଲା ତାହା ରକ୍ଷା କରିବାକୁ କେବଳ ସେ ଲଣ୍ଡନ ଯିବାକୁ ଚାହୁଁଥିଲା । ତେଣୁ ବଳପୂର୍ବକ ତାକୁ ଯିବାରୁ ନିବୃତ୍ତ କରିବା ଛଡ଼ା ଅନ୍ୟ ଉପାୟ ନାହିଁ ।

ଦୁହେଁଯାକ ଅନେକ ସମୟ ଯାଏ ବସି ବିଚାର କଲେ । ସ୍ଥିର ହେଲା ଯେ ରବିନକୁ ବନ୍ଦୀ ଭାବରେ ରଖାଯିବ ଓ ଦୁହିଁଙ୍କ ଭିତରୁ ଜଣେ ରାଜାଙ୍କ ପାଖକୁ ଯାଇ ଜଣାଇବ ଯେ ରବିନ୍‌ର ଫେରି ଆସିବାକୁ ଇଚ୍ଛା ନାହିଁ । ତାର ପ୍ରିୟ ଶେରଉଡ଼ ବନରେ ଶେଷ ଜୀବନ କଟାଇବା ତାର ଅଭିପ୍ରାୟ । ତାକୁ ଏହି ଅନୁମତି ଦିଆଯାଉ ।

ରବିନର ଲଣ୍ଡନକୁ ଫେରିବାର ସମୟ ହୋଇ ଆସିଲା । କେତେକ ଦିନ ଆଗରୁ ମେରିଆନ୍ ରବିନ ପାଖକୁ ଆସିଥିଲା । ଲିଟିଲ୍ ଜନ୍ ଓ ଉଇଲ୍ ସ୍କାର୍ଲେଟ ଦୁହେଁ ଯାକ ସେମାନଙ୍କ ପ୍ରସ୍ତାବ ମେରିଆନ୍ ଆଗରେ ପ୍ରକାଶ କଲେ । ସେ ମଧ୍ୟ ଏହି ପ୍ରସ୍ତାବରେ ରାଜି ହୋଇଗଲା । ମାତ୍ର ରବିନ୍‌କୁ ଏଥିର କୌଣସି ସୂଚନା ଦେଲା ନାହିଁ ।

ଯେତେବେଳେ ରବିନ୍ ଲଣ୍ଡନକୁ ଯିବାପାଇଁ ପ୍ରସ୍ତୁତ ହୋଇ ବାହାରିଲା, ଠିକ୍ ସେତିକି ବେଳେ ଲିଟିଲ୍ ଜନ ଓ ଉଇଲ୍ ସ୍କାର୍ଲେଟ

ହଠାତ୍ ପଛଆଡ଼ୁ ଦଉଡ଼ି ଆସି ତାକୁ ଦଉଡ଼ିରେ ବାନ୍ଧି ପକାଇଲେ । ରବିନ୍ ତାର ସାଥୀ ଦୁହିଁଙ୍କର ଏ ପ୍ରକାର ବ୍ୟବହାରରେ ଏପରି ବିସ୍ମିତ ହୋଇଗଲା ଯେ ସେ କିଛିମାତ୍ର ପ୍ରତିରୋଧ କରିପାରିଲା ନାହିଁ । ଏପରି ଗୋଟାଏ ବ୍ୟାପାର ଘଟିଥିବ ବୋଲି ରବିନ୍ ସ୍ୱପ୍ନରେ ସୁଦ୍ଧା ଭାବି ନ ଥିଲା ।

ଲିଟିଲ୍ ଜନ ନତମସ୍ତକ ହୋଇ କହିଲା, "ସରଦାରଜୀ, ଆମକୁ କ୍ଷମାକର । ଆମେ ଜାଣୁ ଯେ ତୁମେ ସ୍ୱେଚ୍ଛାରେ ଏଠାରେ ରହିବ ନାହିଁ । କିନ୍ତୁ ଏକଥା ମଧ୍ୟ ସତ୍ୟ ଯେ ଏଇ ବନଟି ତୁମର ଅତି ପ୍ରିୟ । ତେଣୁ ଆମେ ତୁମକୁ ବନ୍ଦୀ କରି ରଖିଛୁ । ୱିଲ୍-ସ୍କାର୍ଲେଟ ରାଜାଙ୍କ ପାଖକୁ ଯାଉଛି । ସେ ତାଙ୍କର ମତ ବୁଝି ଆସିବା ପର୍ଯ୍ୟନ୍ତ ତୁମକୁ ବନ୍ଦୀ କରି ରଖିବୁ ।"

ଅବଶ୍ୟ ରବିନ୍ ନିତାନ୍ତ ବିରକ୍ତ ହେଲା ଯେ ତାକୁ ଏପରି କୌଶଳରେ ବନ୍ଦୀ କରି ରଖା ଯାଇଛି । କିନ୍ତୁ ଉପସ୍ଥିତ କ୍ଷେତ୍ରରେ ତାର କିଛି କରିବାର ଉପାୟ ନଥିଲା ।

ୱିଲ୍ ସ୍କାର୍ଲେଟ ଲଣ୍ଡନରୁ ସପ୍ତାହକ ପରେ ଫେରି ଆସିଲା । ସେ ଓ ଲିଟିଲ ଜନ୍‌ଙ୍କ ଭିତରେ ଅନେକ କଥାବାର୍ତ୍ତା ହେଲା । ତା-ପରେ ଦୁହେଁଯାକ ରବିନ ପାଖକୁ ଗଲେ ।

ୱିଲ ସ୍କାର୍ଲେଟ ହସି ହସି କହିଲା, "ସରଦାରଜୀ, ମୁଁ ରାଜାଙ୍କ ସଙ୍ଗେ ସାକ୍ଷାତ୍ କରି ଜଣାଇଲି ଯେ ତୁମକୁ ତୁମର ନିଜ ସାଥୀମାନେ ଛାଡ଼ିବାକୁ ଚାହାନ୍ତି ନାହିଁ; ତେଣୁ ବନ୍ଦୀ କରି ରଖିଛନ୍ତି । ଆଉ ମଧ୍ୟ ତାଙ୍କୁ ମୁଁ ବୁଝାଇ ଦେଲି ଯେ ତୁମେ ଏତେ ଦିନ ଜଙ୍ଗଲରେ କଟାଇଥିବାରୁ ଲଣ୍ଡନ ସହର ତୁମକୁ ଭଲ ଲାଗୁନାହିଁ; ସେହି ଜଙ୍ଗଲରେ ଶେଷ ଜୀବନ କଟାଇବାକୁ ତୁମର ଇଚ୍ଛା । ତୁମକୁ ଆମ ସାଥିରେ ରହିବା ପାଇଁ ଅନୁମତି ମାଗିଲି । ରାଜା ମୋ କଥା

ଶୁଣି କିଛି ସମୟ ନୀରବ ରହି ଉତ୍ତର କଲେ, "ରବିନ୍ ଶେରଉଡ଼୍‌ରେ ତୁମମାନଙ୍କ ସଙ୍ଗେ ରହିବାରେ ମୋର କିଛି ଆପତ୍ତି ନାହିଁ; କିନ୍ତୁ ଯଦି ଦେଶ ଉପରେ କେବେ ବିପତ୍ତି ପଡ଼େ ତାହା ହେଲେ ରବିନ୍ ଓ ତାର ସାଥୀମାନେ ଯେପରି ରାଜ୍ୟର ସେବା କରିବେ ସେ ବିଷୟରେ ମୁଁ ନିଶ୍ଚିନ୍ତ ହେବାକୁ ଚାହେଁ ।"

ମୁଁ ରାଜାଙ୍କ ଆଗେ ପ୍ରତିଜ୍ଞା କଲି "ଆମେମାନେ ଯେତେବେଳେ ଦେଶର ସେବା ପାଇଁ ପ୍ରାଣ ଦେବାକୁ ପ୍ରସ୍ତୁତ ।"

ଏହା କହି ଦୁହେଁଯାକ ରବିନ୍‌କୁ ବନ୍ଧନରୁ ମୁକ୍ତ କରି ଦେଲେ ।

ସେ ହଠାତ୍ ଏହା ବିଶ୍ୱାସ କରି ନପାରି କହିଲା, "ତେବେ, ମୁଁ କଅଣ ଏବେ ଏଠାରେ ରହିବାରେ ବାଧା ନାହିଁ ?"

ଉଇଲ୍ ସ୍କାର୍ଲେଟ କହିଲା, "ରାଜାଙ୍କର ଅନୁମତି ଯେତେବେଳେ ମିଳିଛି, ସେତେବେଳେ ବାଧା ଦେବ କିଏ ? ଚାଲ, ପୁଣି ଆମେ ଆମର ପୂର୍ବ ଜୀବନକୁ ଫେରିଯିବା । ସେହି ଜଙ୍ଗଲ, ସେହି ହରିଣ ଶିକାର, ସେହି ଆପଦ ବିପଦ ଆମକୁ ଡାକୁଛି । ଏଇ ତ ଆମ ଜୀବନରେ ପ୍ରିୟ ।"

ଏ ସମ୍ବାଦରେ ରବିନ୍ ଆନନ୍ଦବିହ୍ୱଳ ହୋଇଗଲା । ଲିଟିଲ୍-ଜନ୍ ଓ ଉଇଲ୍ ସ୍କାର୍ଲେଟ ମଧ୍ୟ କମ ଆନନ୍ଦିତ ହେଲେ ନାହିଁ । ଯେତେ ପୁରୁଣାସାଥୀ ବନ ମଧ୍ୟରେ ଏଣେ ତେଣେ ଥିଲେ, ସମସ୍ତଙ୍କୁ ଡକାଗଲା । ରବିନ ହୁଡ୍ ଫେରି ଆସିଥିବା ଉପଲକ୍ଷରେ ସେଦିନ ଗୋଟିଏ ପ୍ରକାଣ୍ଡ ଭୋଜିର ବ୍ୟବସ୍ଥା ହେଲା ।

———

# ମୁକ୍ତି ପାଇଁ ଅସି ଯୁଦ୍ଧ

ରବିନ୍ ହୁଡ୍ ଲଣ୍ଡନରେ ରହିଥିବା ସମୟ ଭିତରେ ନଟିଙ୍ଗ-ହାମରେ କେତେକ ପରିବର୍ତ୍ତନ ହୋଇ ଯାଇଥିଲା । ପୂର୍ବର ଶେରିଫଙ୍କ ସ୍ଥଳରେ ଆଜି ଜଣେ ନୂଆ ଶେରିଫ ନିଯୁକ୍ତ ହୋଇଥାନ୍ତି ।

ପୂର୍ବ ଶେରିଫଙ୍କ ସଙ୍ଗେ ରବିନ ଅନେକ ଥର ଯାଏ ଶତ୍ରୁତା କରି ଆସିଥିଲା । ସେ ମଧ୍ୟ ରବିନର ଅନିଷ୍ଟ କରିବା ଲାଗି କମ୍ ଚେଷ୍ଟା କରି ନଥିଲେ । ଦୁହିଁଙ୍କ ଭିତରେ ଖୁବ୍ ବୁଦ୍ଧିର ଖେଳ ଚାଲିଥିଲା ।

କିନ୍ତୁ ରବିନ୍ ଦେଖିଲା ଯେ ଏହି ନୂଆ ଶେରିଫ ସେପରି ସରଳ ଲୋକ ନୁହନ୍ତି । ସହରରେ ଭଲ ହେଉ ବା ମନ୍ଦ ହେଉ କାର୍ଯ୍ୟରେ ସେ ହସ୍ତକ୍ଷେପ କରିବାକୁ ଚାହାନ୍ତି ନାହିଁ । ସେ ଶାନ୍ତିରେ ରହିବାକୁ ଚାହାନ୍ତି । ସହରର ଶାନ୍ତିରେ ବାଧା ନ ଜନ୍ମାଇ ଲୋକେ ଯେ କୌଣସିମତେ ଚଳିଲେ ତାଙ୍କର ଆପତ୍ତି ନ ଥାଏ । ତଥାପି ଥରେ ରବିନ୍ ଓ ନୂଆ ଶେରିଫଙ୍କ ଭିତରେ ସଂଘର୍ଷ ଘଟିଗଲା ।

ଶେରିଫଙ୍କର ଜଣେ ଲୋକ ଥିଲା । ସେ ଖଣ୍ଡା ଚଳାଇବାରେ ସବୁଠାରୁ ଧୂରନ୍ଧର ବୋଲି ସୁନାମ ଅର୍ଜିଥିଲା । ସେ ଭାବିଲା ଯେ, ରବିନ୍‌କୁ ଧରିବ । ଶେରିଫ ତା କଥା ଅନୁସାରେ ତା ସାଥିରେ ଶେରଉଡ୍ ଜଙ୍ଗଲକୁ ଗଲେ । କିନ୍ତୁ ସମୟ ଭିତରେ ଲିଟିଲ୍ ଜନ୍ ତାଙ୍କ ହାତରେ ଧରା ପଡିଗଲା । ସେ ତାକୁ ଗୋଟାଏ ଗଛରେ ବାନ୍ଧି ପକାଇଲେ । ଶେରିଫ ନିଜେ ତାକୁ ଜଗି ରହିଲେ ଓ ପଣ୍ଡାର

ଜଙ୍ଗଲ ଭିତରେ ପଶି ରବିନ୍‌ହୁଡ଼ଙ୍କୁ ଖୋଜିବା ଲାଗି ସେ ଲୋକଟିକୁ କହିଲେ ।

ଲୋକଟି ନିଜର ସାଙ୍ଗ୍ରୁକୁ ଗୋଟିଏ ଘୋଡ଼ା ଚମଡ଼ାରେ ଘୋଡ଼ାଇ ଯାଉଥାଏ । ତାର ବେଶଭୂଷା ଦେଖିଲେ ଯେ କେହି ମନେ କରିବ ଯେ ଲୋକଟା ଗୋଟାଏ ବାରବୁଲା ।

ସେ ବଣଭିତରେ ଅନେକ ଦୂରକୁ ଗଲା । କିନ୍ତୁ କୌଣସିଠାରେ ରବିନ୍‌ହୁଡର କିଛି ସନ୍ଧାନ ପାଇ ପାରିଲା ନାହିଁ । ଆପଣା ଘୋଡ଼ାରୁ ଓହ୍ଲାଇ ଗୋଟାଏ ଗଛମୂଳରେ ବିଶ୍ରାମ ନେବା ପାଇଁ ସେ ବସିଗଲା । ଏହି ସମୟରେ ରବିନ୍‌ର ଦୁଇଜଣ ଲୋକ ସେଇବାଟେ ଗୋଟିଏ ହରିଣ ବୋହି ନେଇ ଗଲେ ।

ଶେରିଫଙ୍କ ଲୋକଟି ଭାବିଲା ଯେ ଏ ଦୁଇ ଜଣ ରବିନ୍‌ର ଲୋକ ହୋଇଥିବେ । ସେମାନେ ନିଶ୍ଚୟ ରବିନ୍ ପାଖକୁ ଯିବେ । ତେଣୁ ସେ ଲୁଚି ଲୁଚି ସେହି ଦୁଇ ଜଣଙ୍କ ପଛେ ପଛେ ଗଲା ।

ତାକୁ ଯେପରି ରବିନର ସାଥୀ ଦୁହେଁ ଦେଖି ନ ପାରିବେ ସେଥିପାଇଁ ସେ ସବୁ କୌଶଳ ପ୍ରୟୋଗ କରିଥିଲା । ସେତେବେଳକୁ ସେ ଦୁହେଁ ଜାଣି ପାରିଥିଲେ ଯେ କିଏ ଜଣେ ତାଙ୍କ ପଛେ ପଛେ ଆସିଛି । କିନ୍ତୁ ସେମାନେ କିଛି ନ ଜାଣିଲା ପରି ଚାଲୁଥାଆନ୍ତି ।

ପ୍ରଥମେ ସେମାନଙ୍କର ଧାରଣା ଥିଲା ଯେ ଏହି ଲୋକଟା ବାରବୁଲା । ତା ନୋହିଥିଲେ ଦେହରେ ଗୋଟାଏ ଘୋଡ଼ାଚମଡ଼ା ଘୋଡ଼ାଇ ହୋଇଥାନ୍ତା କିପରି ? ବୋଧହୁଏ ମରା ହରିଣଟାକୁ ଚୋରାଇ ନେବା ତାର ଉଦ୍ଦେଶ୍ୟ । ଆଚ୍ଛା, ସେ ପାଖକୁ ଆସି ହରିଣଟାକୁ ଛଡ଼ାଇ ନେବାକୁ ବସିଲେ ଦେଖାଯିବ । ଏହିପରି ବିଚାରି ସେ ଦୁହେଁ ଚାଲିଥାଆନ୍ତି । ଲୋକଟା କିଛି ଦୂରରେ ତାଙ୍କ

ପଛେ ପଛେ ଚାଲିଥାଏ । ଅନେକ ଦୂର ଯିବା ପରେ ମଧ୍ୟ ଲୋକଟା ହଠାଣ ଛାଡ଼ିଯାଇ ନେବାର କିଛି ଲକ୍ଷଣ ଦେଖାଗଲା ନାହିଁ ।

ଦୁହିଁଙ୍କ ଭିତରୁ ଜଣକର ସନ୍ଦେହ ହେଲା । ସେ ତାର ସାଥୀକୁ କହିଲା, "ଏ ଲୋକଟାର ଉଦ୍ଦେଶ୍ୟ ନିଶ୍ଚୟ ଖରାପ । ସେ ଜାଣେ ଯେ ଆମେ ରବିନ୍ ହୁଡ୍ ପାଖକୁ ଯିବୁ । ତେଣୁ ସେ ଆମ ପଛେ ପଛେ ଚାଲିଛି । ରବିନ୍ ହୁଡ଼ର ଆଡ୍ଡାଟା ଦେଖିଯିବା ତାର ଇଚ୍ଛା । ଆମେ ଗୋଟାଏ କାମ କରିବା । ତାକୁ ଆଡ୍ଡା ପର୍ଯ୍ୟନ୍ତ ନେବା । ସେଠାରେ ତାକୁ ଗୋଟାଏ ଶିକ୍ଷା ମିଳିଯିବ ।"

ଏହିପରି ଭାବରେ ସେମାନେ ଆଡ୍ଡା ପର୍ଯ୍ୟନ୍ତ ଗଲେ । ଲୋକଟା ଠିକଏ ପଛରେ ଥାଏ । ଏଣେ ରବିନ୍ ହୁଡ୍ ଗୋଟାଏ ଗଛମୂଳେ ବସି ଶର ସଜାଡୁଥିଲା । ସାଥୀଦୁହେଁ ପହଞ୍ଚିବା ମାତ୍ରେ ରବିନ୍‌କୁ ସାବଧାନ କରିଦେଲେ ଯେ ଜଣେ ଲୋକ ସେମାନଙ୍କ ପଛେ ପଛେ ଆସୁଛି ।

ରବିନ୍ ଠିଆ ହୋଇ ପଡ଼ି ଶିଙ୍ଗା ବଜାଇଲା । ଯେଉଁ ନୂଆ ଦଳଟି ଗଠିତ ହୋଇ ଆସିଥିଲା, ସେହି ଦଳର ସାଥୀମାନେ ବଣର ଚାରିଆଡୁ ଧାଇଁଆସି ଶେରିଫଙ୍କର ସେହି ଲୋକଟିକୁ ଘେରିଗଲେ । ଲୋକଟିର ପଳାଇ ଯିବାର ବାଟ ରହିଲା ନାହିଁ । ସେ ଭୟରେ ଚାରିଆଡ଼କୁ ଚାହିଁଲା; ଦେଖିଲା ଯେ ପଳାଇବାର ଉପାୟ ନାହିଁ । ସେ ଗୋଟାଏ ବୁଦ୍ଧି ପାଞ୍ଚିଲା :

ସେ ହଠାତ୍ ରବିନ ହୁଡ୍‌ର ଆଗକୁ ଯାଇ ଦେହରୁ ଘୋଡ଼ାଇ ଚମଡ଼ାଟା ଫିଙ୍ଗି ଦେଲା । ସେ ପିନ୍ଧିଥିବା ସାଞ୍ଜୁ ଚକ୍‌ଚକ୍ ହୋଇ ଦିଶିଲା । ରବିନ୍ ଏବେ ସ୍ପଷ୍ଟ ଚିହ୍ନିପାରିଲା ଯେ ଲୋକଟି ହେଉଛି, ଶେରିଫଙ୍କର ଜଣେ ସୈନ୍ୟ ।

ରବିନ୍ ବଦ୍ରୂପ କରି କହିଲା, "ଆପଣଙ୍କର ସବୁ କୁଶଳ ତ ?"

ଫୈନ୍ୟଟି ସାହସ ଦେଖାଇ କହିଲା, "ରବିନ୍ ହୁଡ୍, ମୁଁ ଶେରିଫଙ୍କ ପାଖେ ପ୍ରତିଜ୍ଞା କରି ଆସିଛି ଯେ ତୋତେ ସାଥିରେ ଧରି ନେଇ ଫେରିବ । ଲିଟିଲ୍ ଜନ୍ ଧରାପଡ଼ିଛି । ସେ ଏଠାରୁ ପ୍ରାୟ ଦୁଇ ମାଇଲ ଦୂରରେ ଗୋଟାଏ ଗଛରେ ବନ୍ଧା ହୋଇ ରହିଛି । ଲୋକେ କହନ୍ତି ଯେ, ତୁ ଜଣେ ସାହସୀ ବୀର । ତେଣୁ ମୋର ଆଶା ଯେ ତୁ ନ୍ୟାୟ ଯୁଦ୍ଧରେ ଯୋଗଦେବାକୁ କୁଣ୍ଠିତ ହେବୁନାହିଁ ।"

ଏପରି ସ୍ପଷ୍ଟ ଯୁଦ୍ଧର ଆହ୍ୱାନକୁ ରବିନ୍ ଏଡ଼ିଦେବାର ଲୋକ ନୁହେଁ । ସେ କହିଲା, "ବେଶ୍, ଏହାଠାରୁ ବଳି ଆନନ୍ଦର ବିଷୟ ମୋ ପକ୍ଷରେ ଆଉ କଅଣ ଥାଇପାରେ ? ତୋର ଯାହା ଇଚ୍ଛା ଅସ୍ତ୍ର ଧର ।"

ସୈନ୍ୟ ଜଣକ ଅସିଚାଳନାରେ ନିପୁଣ । ରବିନ୍ ଏହା ଜାଣିଥିଲା । ତେଣୁ ସେ ଭାବିଥିଲା ଯେ ସୈନ୍ୟଟି ଖଣ୍ଡାଧରି ଯୁଦ୍ଧ କରିବାକୁ ବାହାରିବ । କାର୍ଯ୍ୟତଃ ତାହାହିଁ ହେଲା ।

ସୈନ୍ୟ ଓ ରବିନ୍ ମଧ୍ୟରେ ଯୁଦ୍ଧ ଚାଲିଲା । ରବିନ୍‌ର ସାଥୀମାନେ ବୃକ୍ଷପାଖେ ବେଢ଼ି ରହି ଏହି ଯୁଦ୍ଧର ଫଳାଫଳ ଦେଖିବାକୁ ଚାହିଁରହିଲେ । ସେମାନେ ରବିନ୍‌କୁ ଉତ୍ସାହିତ କରୁଥାନ୍ତି । କିନ୍ତୁ ରବିନ୍ ସେଥିପ୍ରତି ଦୃଷ୍ଟି ଦେଉ ନଥାଏ । ଲଣ୍ଡନରୁ ଫେରି ଆସିବା ପରେ ସେ ଏପରି ଯୁଦ୍ଧ କରିବାର ପ୍ରଥମ ସୁଯୋଗ ପାଇଛି । ତାର ଶକ୍ତିର, ତେଜର, ବିକ୍ରମର ପରୀକ୍ଷା ଉପସ୍ଥିତ । ହୁଏତ ସେ ତାର ସୁନାମ ରଖିବ; ଅଥବା ହାରିଗଲେ ଶେରିଫର ଗୋଟାଏ ସୈନ୍ୟ ହାତରେ ପ୍ରାଣ ଦେବ ।

ରବିନ ବେଶ କୌଶଳରେ ଯୁଦ୍ଧ କରୁଥାଏ । ଶତ୍ରୁ ଅପେକ୍ଷା ସେ ଆହୁରି ଶୀଘ୍ର ଆକ୍ରମଣ କରୁଥାଏ ଏବଂ ଶତ୍ରୁର ଖଡ୍‌ଗର ଆଘାତକୁ ବ୍ୟର୍ଥ କରୁଥାଏ । ସୈନ୍ୟ ଜଣକ ଅସିଯୁଦ୍ଧରେ ଖୁବ୍ ପାରଦର୍ଶୀ;

ତେଣୁ ସେ ଅତ ଖିପ୍ରବେଗରେ ସକଳ ଶକ୍ତି ପ୍ରୟୋଗ କରି ଲଢ଼ୁଥାଏ । କ୍ରମଶଃ ସେ କ୍ଳାନ୍ତ ହୋଇ ଆସିଲା । ସେ ଜାଣିପାରିଥିଲା ଯେ ଏହି ଯୁଦ୍ଧରେ ଜିତିଲେ ତାର ଜୀବନ, ହାରିଲେ ମୃତ୍ୟୁ । ତାର ବୟସ ରବିନ୍‌ର ବୟସଠାରୁ ଅଧିକ । ରବିନ୍ ଦେଖିଲା ଯେ ଏ ସୁଯୋଗ ଗ୍ରହଣ କରିବାର ନୁହେଁ । ସେ ତାର ସମସ୍ତ ଶକ୍ତି ପ୍ରୟୋଗ କରି ଲଢ଼ିବାକୁ ଲାଗିଲା । ସୈନ୍ୟଟି ଆହୁରି ଦୁର୍ବଳ ଓ କ୍ଳାନ୍ତ ହୋଇଗଲା । ଦୁହିଁଙ୍କର ଦଣ୍ଡା ପରସ୍ପର ଆଘାତ କରୁଥାଏ । ସେଥିରେ ବନଭୂମି କମ୍ପି ଯାଉଥାଏ ।

ରବିନ୍ ସୁଯୋଗ ଦେଖି ସୈନ୍ୟକୁ ଏପରି ଆଘାତ କଲା ଯେ ସେ ତଳେ ପଡ଼ିଗଲା । ଆଉ ଉଠିପାରିଲା ନାହିଁ । ସେହିଠାରେ ସେ ଶେଷ ନିଶ୍ୱାସ ତ୍ୟାଗ କଲା ।

ସାଥୀମାନେ ରବିନ୍‌ର ଜୟଧ୍ୱନି କରିବାକୁ ଲାଗିଲେ । ସମଗ୍ର ବନମଧ୍ୟରେ ତାର ପ୍ରତିଧ୍ୱନି ଶୁଣାଗଲା । ରବିନର ଆଦେଶରେ କେତେ ଜଣ ସାଥୀ ସୈନିକର ସାଜ ଓ ପୋଷାକ ବାହାର କରି ନେଇ ତାର ମୃତ ଦେହକୁ ଗୋଟିଏ ବୃକ୍ଷ ମୂଳରେ ସମାଧି ଦେଲେ ।

ବର୍ତ୍ତମାନ ରବିନ୍ ସୈନିକର ପୋଷାକ ଓ ସାଜ ପିନ୍ଧି ଲିଟିଲ୍‌-ଜନର ଅନୁସନ୍ଧାନରେ ବାହାରିଲା । ଯେଉଁ ଦୁଇଜଣ ପ୍ରଥମେ ହରିଣ ନେଇ ଆସିଥିଲେ, ସେମାନଙ୍କଠାରୁ ରବିନ୍ ପଥବିଷୟରେ ଗୋଟାଏ ଧାରଣା କରିନେଲା ।

କିଛି ସମୟପରେ ରବିନ୍ ଲିଟିଲ୍ ଜନ୍‌କୁ ଦେଖିବାକୁ ପାଇଲା । ସେ ଗୋଟିଏ ଗଛରେ ବନ୍ଧା ହୋଇଥାଏ । ଟିକିଏ ଦୂରରେ ଶେରିଫ ତାକୁ ଜଗି ଛିଡ଼ା ହୋଇଥାନ୍ତି । ରବିନ୍‌କୁ ଦେଖିଲାକ୍ଷଣି ସେ ତାକୁ ନିଜର ସୈନ୍ୟ ମନେ କରି ଟିକିଏ ଆଶ୍ୱସ୍ତ ହେଲେ ।

ରବଟନ୍ ଦୂରରୁ ଡାକିଲା, "ଶେରିଫ ମହାଶୟ, ଆଉ ଚିନ୍ତା ନାହିଁ । ମୁଁ ରବିନ୍‌କୁ ମାରି ପକାଇଛି । ଆପଣଙ୍କ ଆଦେଶ ହେଲେ ଏ ସଇତାନକୁ ଏ ଗଛରୁ ଫିଟାଇ ନଟିଙ୍ଗହାମକୁ ନେଇଯିବା । ସେଠାରେ ସର୍ବସାଧାରଣଙ୍କ ଆଗରେ ତାକୁ ଫାଶୀ ଦିଆଯିବ । ତାହାହେଲେ ଲୋକେ ମଧ୍ୟ ସାବଧାନ ହେବେ । ଆପଣଙ୍କ କ୍ଷମତା କେତେ ତାହା ଜାଣିପାରିବେ ।"

ଏହା କହି ସେ ଗଛମୂଳକୁ ଯାଇ ଲିଟିଲ୍ ଜନର ବନ୍ଧନ ଫିଟାଇ ଫିଟାଇ ଚୁପ୍ ଚୁପ୍ କରି କହିଲା, "ଚିନ୍ତା କରନାହିଁ । ମୁଁ ହେଉଛି ରବିନ୍ ।"

ଲିଟିଲ ଜନ୍‌ର ଦଉଡ଼ି ଫିଟାଇ ସାରିବା ମାତ୍ରେ ରବିନ୍ ନିଜ ଦେହ ଉପରୁ ସୈନିକର ପୋଷାକ କାଢ଼ି ଫିଙ୍ଗି ଦେଲା । ତାର ଚିର-ପରିଚିତ ସବୁଜ ପୋଷାକ ଦେଖାଗଲା ।

ଶେରିଫ ଏପରି ଚକିତ ହୋଇଗଲେ ଯେ ସେ ସେଠାରୁ ପାହୁଣ୍ଡେ ହୁଞ୍ଚା ଯାଇପାରିଲେ ନାହିଁ । ସେ ବ୍ୟାକୁଳ ହୋଇ ରବିନ୍ ଓ ଲିଟିଲ୍‌ଜନ୍‌କୁ ଚାହିଁ ରହିଲେ ।

ରବିନ୍ ଲିଟିଲ ଜନ୍‌କୁ ଲକ୍ଷ୍ୟ କରି କହିଲା, "ଦେଖ୍, ଏ କେଉଁଠି ଜଣେ ଶେରିଫ ! ତାର ପାଦ କାହିଁକି ଅଚଳ ହୋଇ ଯାଇଛି । ସେ ଆଗକୁ ଯାଇ ପାରୁନାହିଁ କି ପଛକୁ ଯାଇ ପାରୁନାହିଁ । ବାଃ, କି ସୁନ୍ଦର ଶେରିଫ୍ !"

ତା ପରେ ରବିନ୍ ଶେରିଫଙ୍କ ପାଖକୁ ଚାଲିଯାଇ କହିଲା, "ଶେରିଫ ମହାଶୟ, ଆପଣଙ୍କର କ୍ଷତି କରିବା ମୋର ଆଦୌ ଇଚ୍ଛା ନୁହେଁ । ଚୁପ୍ କରି ଚାଲି ଯାଆନ୍ତୁ । ମାତ୍ର ମନେ ରଖିଥାନ୍ତୁ, ଆଉ କେବେ ଏ ଜଙ୍ଗଲକୁ ଏକାକୀ ଆସିବାଁ ଭଳି ଦୁଃସାହସ କରିବେ

ନାହିଁ । ଏ ବଣରେ ରବନ୍ ହୁଡ଼ ବୋଲି ଯେଉଁ ଲୋକଟିଏ ଅଛି,
ସେ ଯେ କାମୁଡ଼ି ଦେବ ନାହିଁ ବୋଲି କିଏ କହିବ ?"

ଶେରିଫଙ୍କୁ ଆଉ କିଛି କହିବା ଆବଶ୍ୟକ ନ ଥିଲା । ସେ ନିଜ
ଘୋଡ଼ା ପାଖକୁ ଦୌଡ଼ିଯାଇ ତା ଉପରେ ବସି ପଡ଼ିଲେ । ରବିନ୍
ଓ ଲିଟିଲ୍ ଜନ ଦେଖିଲେ ଯେ ଶେରିଫ ପ୍ରାଣପଣେ ଘୋଡ଼ାକୁ
ନଟିଙ୍ଗହାମ ଆଡ଼କୁ ଦୌଡ଼ାଉଅଛନ୍ତି । ସାମାନ୍ୟ କେତେ ମିନିଟ
ଭିତରେ ସେ ଅଦୃଶ୍ୟ ହୋଇଗଲେ ।

ରବିନ୍ ଓ ଲିଟିଲ ଜନ୍ ହାତ ଧରାଧରି ହୋଇ ଜଙ୍ଗଲ ଭିତରେ
ଗଳ୍ପ କରି କରି ବୁଲିବାକୁ ଲାଗିଲେ ।

— —

# କ୍ଲେମେଣ୍ଟ

ରବିନ୍‌ର ସାଥୀମାନଙ୍କ ମଧ୍ୟରୁ ଜଣକର ନାମ କ୍ଲେମେଣ୍ଟ । ସେ ନିଜର ସ୍ତ୍ରୀକୁ ଗ୍ରାମରେ ଛାଡ଼ି ଶେରଉଡ଼ରେ ରହୁଥିଲା ; ଏଣୁକରି ସେ ଅନେକ ବର୍ଷ ହେଲା ତାର ସ୍ତ୍ରୀକୁ ଦେଖି ନଥିଲା । ଥରେ ସେ ଗ୍ରାମରେ ଥିବା ବେଳେ ଗୋଟାଏ ବଡ଼ ଗଣ୍ଡଗୋଳ ଲାଗିଲା । ସେହି ଗଣ୍ଡଗୋଳ ଫଳରେ ସେ ଗ୍ରାମ ଛାଡ଼ି ଜଙ୍ଗଲକୁ ପଳାଇ ଆସିଥିଲା । ତା ପରେ ଆଉ କେବେ ଫେରି ନ ଥିଲା ।

ଘର ଛାଡ଼ି ଆସିଥିଲେହେଁ ସେ ସ୍ତ୍ରୀକୁ ଭୁଲି ପାରିନଥିଲା । ତା ମନରେ ଶାନ୍ତି ନଥାଏ । ବଣରେ ସେ ଅନେକ ସମୟରେ ଏକୁଟିଆ ବସି ଚିନ୍ତା କରେ, "କେଉଁ ଥରେ ଗ୍ରାମକୁ ଯାଇ ମୋର ସ୍ତ୍ରୀକୁ ଦେଖନ୍ତି । ଏଥି ମଧ୍ୟରେ ତାର କ'ଣ ହୋଇଗଲାଣି କିଏ ଜାଣେ ?"

ସେ ମନେ ମନେ ସ୍ଥିର କଲା, 'ମୁଁ ନିଶ୍ଚୟ ଗ୍ରାମକୁ ଯାଇ ମୋ ସ୍ତ୍ରୀକୁ ଦେଖିବି । ସୁବିଧା ମିଳିଲା ମାତ୍ରେ ଯେପରି ହେଉ ଚାଲିଯିବି ।"

ଦିନେ ସେ ତାର ମନକଥା ରବିନ ଆଗରେ ପ୍ରକାଶ କରିବାରୁ ରବିନ୍ କହିଲା, "ମୁଁ ଦେଖୁଛି ଯେ ତୋତେ ଘରକୁ ଯିବାର ସୁବିଧା ମିଳୁନାହିଁ । ତେବେ ତୁ ସୁବିଧା କରି ନେଉନାହୁଁ କାହିଁକି ? ସୁବିଧାକୁ ଖାଲି ଚାହିଁ ରହିଲେ ଚଳିବ କିପରି ?"

କ୍ଲେମେଣ୍ଟ ଭାବିଲା ଯେ ରବିନର କଥା ସତ । ସେ ଘରକୁ ଯିବାକୁ ବାହାରି ପଡ଼ିଲା । ଶେରଉଡ଼ ଜଙ୍ଗଲରୁ ବାହାରି ସେ

ରାସ୍ତାରେ ଗ୍ଧଲଲ । ନଟିଙ୍ଗହାମ୍ ସହର ପାର ହୋଇ ଦୂରବର୍ତ୍ତୀ ନିଜ ଗ୍ରାମରେ ପହଞ୍ଚିଲ ।

ସେ ଗ୍ରାମ ଦାଣ୍ଡରେ ଆସୁଥିବାର ଦେଖି ତାର ସ୍ତ୍ରୀ ଘରୁ ଯାଇ ତାକୁ ଡାକି ଆଣିଲ । ଏତେ ଦିନ ପରେ ସ୍ୱାମୀକୁ ପାଇ ତାର ମହା ଆନନ୍ଦ । ଦୁହେଁଯାକ ଘରକୁ ଗଲେ ।

ଘରେ ପହଞ୍ଚିବା କ୍ଷଣି ସ୍ତ୍ରୀ ତାକୁ କହିଲ, "ମୁଁ ଗୋଟିଏ ବୁଢ଼ୀକୁ ଆମ ଘରେ ରଖିଛି । ସେ ପ୍ରାୟ ବାହାରକୁ ଯାଏ ନାହିଁ । ଭଡ଼ା ଖୁବ୍ ବେଶି ଦିଏ । ସେଇଥିରେ ମୁଁ ଚଳୁଛି ।"

କ୍ଲେମେଣ୍ଟ ଦେଖିଲ ଯେ ବୁଢ଼ୀଟି ଅନ୍ଧାରିଆ ସେପଟ ଘରେ ଗୋଟିଏ ଟୁଲ ଉପରେ ବସିଛି । କିନ୍ତୁ କ୍ଲେମେଣ୍ଟ ତା ସ୍ତ୍ରୀ ସଙ୍ଗରେ କଥାବାର୍ତ୍ତା ହେବାରେ ଲଗିଥାଏ । ସେ ଏହି ବୁଢ଼ୀକୁ ପଦେ ସୁଦ୍ଧା କଥା ନ କହିବାରୁ ବୁଢ଼ୀକୁ ବଡ଼ ଅପମାନ ଲଗିଲ ।

କ୍ଲେମେଣ୍ଟ କିପରି ଗ୍ରାମରେ ଗୋଳମାଳ ଲଗିଥିବା ବେଳେ ପଳାଇଯାଇ ବଣରେ ରବିନ୍ ହୁଡ୍‌ର ଦଳରେ ମିଶିଥିଲା, ସେ କଥା ବୁଢ଼ୀ ଆଗରୁ କିଛି କିଛି ଶୁଣିଥିଲ । ସେ ଜାଣିଥିଲ ଯେ ଆଇନ ହାତରୁ ରକ୍ଷା ପାଇବା ପାଇଁ କ୍ଲେମେଣ୍ଟ ଘର ଛାଡ଼ି ପଳାଇଛି ।

ଏବେ କ୍ଲେମେଣ୍ଟ ତାକୁ ଏପରି ଅପମାନିତ କରିବାରୁ ସେ ଶେରିଫଙ୍କ ପାଖକୁ ଯାଇ କହିଲ, "କ୍ଲେମେଣ୍ଟ ଗ୍ରାମକୁ ଫେରି ଆସିଛି । ବର୍ତ୍ତମାନ ସେ ତା ଘରେ ଅଛି ।"

ବୁଢ଼ୀ ଏହି କଥା କହିଦେଲ ସତ, କିନ୍ତୁ ପରେ ଭାବିଲ ସେ ଏପରି କହିବାଦ୍ୱାରା ତାର ଲଭ ଅପେକ୍ଷା କ୍ଷତି ବେଶି । ସେ ଆଉ କ୍ଲେମେଣ୍ଟର ଘରକୁ ସଙ୍ଗେ ସଙ୍ଗେ ଫେରି ନ ଯାଇ କିଛି ସମୟ ଅପେକ୍ଷା କରିବାକୁ ସ୍ଥିର କଲ । ସେ ଜାଣିଥିଲ ଯେ କ୍ଲେମେଣ୍ଟକୁ ଧରିବା ପାଇଁ ଶେରିଫ ନିଶ୍ଚୟ ଯୋଗାଡ଼ କରିବେ ।

ସନ୍ଧ୍ୟାକୁ ଭିତରେ ଶେରଫଙ୍କର ଦଳେ ସୈନ୍ୟ କ୍ଲେମେଣ୍ଟର ଘର ପାଖକୁ ଗଲେ ।

କ୍ଲେମେଣ୍ଟ ଘରେ ବସି ତାହାର ସ୍ତ୍ରୀକୁ ତାର ଜୀବନ କାହାଣୀ ଶୁଣାଉଥିଲା । ହଠାତ୍ ସେ ବସ୍ତାଉପରେ ଘୋଡ଼ାମାନଙ୍କର ପାଦ ଶବ୍ଦ ଶୁଣି ପାରିଲା । ସେ ଉଠି ଆସି କବାଟ ପାଖରୁ ଦେଖିପାରିଲା ଯେ ସୈନ୍ୟମାନେ ତା ଘର ଆଡ଼କୁ ଆସୁଛନ୍ତି । ସେ ତା ସ୍ତ୍ରୀକୁ କହିଲା, "ଦେଖ, ଶେରଫର ସୈନ୍ୟମାନେ ଏ ଆଡ଼କୁ ଆସୁଛନ୍ତି । ମୋତେ ଧରିନେବା ସେମାନଙ୍କର ଉଦ୍ଦେଶ୍ୟ । ମାତ୍ର ଆମେ କେବେ ହେଲେ ସେମାନଙ୍କୁ ଘର ଭିତରକୁ ଛାଡ଼ିବା ନାହିଁ ।"

କ୍ଲେମେଣ୍ଟ ଓ ତା ସ୍ତ୍ରୀ ଦୁହେଁ କବାଟକୁ ଭିତରୁ ବନ୍ଦ କରି ଦେଲେ ଓ ଘରେ ଯେତେ ଅସବାବ ପତ୍ର ଥିଲା ସବୁ ଆଣି କବାଟରେ ଆଉଜାଇ ରଖିଦେଲେ । କ୍ଲେମେଣ୍ଟ ତାର ଧନୁ ଧରି କବାଟ ପଛରେ ଛିଡ଼ା ହେଲା । ତା ସ୍ତ୍ରୀ ମଧ୍ୟ ଗୋଟାଏ ଟାଙ୍ଗି ଧରି ତା ପାଖରେ ରହିଲା । ଦୁହେଁଯାକ ସୈନ୍ୟମାନଙ୍କର ଯେତେ କ୍ଷତି କରିପାରିବା ସମ୍ଭବ ତାହା କରିବାକୁ ପ୍ରସ୍ତୁତ ହୋଇ ରହିଲେ ।

ଶେରଫଙ୍କ ସୈନ୍ୟମାନେ କବାଟକୁ ଭାଙ୍ଗି ଘରେ ପଶିବାକୁ ଚେଷ୍ଟା କଲେ; ମାତ୍ର ପାରିଲେ ନାହିଁ । କବାଟର ସନ୍ଧି ଫାଙ୍କ ବାଟେ ସେମାନେ ଦେଖି ପାରିଲେ ଯେ କ୍ଲେମେଣ୍ଟ ଧନୁଶର ଧରି ଓ ତାର ସ୍ତ୍ରୀ ଗୋଟିଏ ଟାଙ୍ଗି ଧରି ସେମାନଙ୍କ ସଙ୍ଗେ ଯୁଦ୍ଧ କରିବାକୁ ଅପେକ୍ଷା କରିଅଛନ୍ତି ।

ସୈନ୍ୟମାନେ ଦେଖିଲେ ଯେ ଯିଏ ଆଗ ଭିତରକୁ ଯିବ ତାର ଜୀବନର ଆଶା ନାହିଁ । ବଳପ୍ରୟୋଗ କରି ଘରେ ପଶିବାକୁ ଗଲେ ନିଶ୍ଚୟ କେତେ ଜଣଙ୍କର ପ୍ରାଣ ଯିବ । ତେଣୁ ନିଜ ଦଳର କିଛି କ୍ଷତି ନ କରି କିପରି କ୍ଲେମେଣ୍ଟକୁ ଧରି ହେବ, ସେ ବିଷୟ ପଡ଼ିଲା ।

ସେମାନଙ୍କର ନେତା ଶ୍ରୀବଚନ୍ଦ୍ର ହୁକୁମ ଦେଲେ, "ଏଘରେ ନିଆଁ ଲଗାଇ ଦିଅ ।"

ଜଣେ ସୈନ୍ୟ ଘରର ଆଗପଟେ ନିଆଁ ଲଗାଇ ଦେଲା ।

ନିଆଁର ଗନ୍ଧ ପାଇ କ୍ଲେମେଣ୍ଟ କହିଲା, "ସଇତାନ୍ ଗୁଡ଼ାକ ଘରେ ନିଆଁ ଲଗେଇ ଦେଲେଣି ।"

ସେ ଘରର ପଛପଟ ଝରକା ପାଖକୁ ଯାଇ ଦେଖିଲା ଯେ ସେପାଖେ ନିଆଁ ଲାଗିନାହିଁ । ସେ ତା ସ୍ତ୍ରୀକୁ କହିଲା, "ତୁମେ ଏଇ ଝରକା ବାଟେ ଡେଇଁପଡ଼ । ପ୍ରାଣପଣେ ଦଉଡ଼ି ଶେରଉଡ଼କୁ ପଳାଇ ଯାଅ । ମୁଁ ପରେ ଯାଇ ତୁମକୁ ଭେଟିବି ।"

ଏହା କହି ସେ ସ୍ତ୍ରୀକୁ ଝରକା ବାଟେ ଡେଇଁ ପଳାଇବାରେ ସାହାଯ୍ୟ କଲା । ସ୍ତ୍ରୀ ପଳାଇବା ପରେ ସେ ପୁଣି କବାଟ ପାଖକୁ ଆସି ଦେଖେ ତ ସେଥିରେ ନିଆଁ ଧରିଗଲାଣି । ବାହାର ପାଖେ କବାଟଠାରୁ ଟିକିଏ ଦୂରରେ ବହୁତ ଲୋକ ଜମା ହୋଇଛନ୍ତି । କେତେ ଜଣ ସୈନ୍ୟ ତା ଆଡ଼କୁ ହାତ ଦେଖାଇ କୁତ୍ସିତ ଭାଷା ବ୍ୟବହାର କରୁଥାନ୍ତି ।

ସୈନ୍ୟ ଦଳର ନେତା କହିଲେ, "କ୍ଲେମେଣ୍ଟ, ଚାଲ୍ ଆ । ତୋର ଉପଯୁକ୍ତ ଦଣ୍ଡ ଭୋଗ କର ।"

କ୍ଲେମେଣ୍ଟ ଘର ଭିତରେ ରହି ଶର ବୃଷ୍ଟି କରିବାରେ ଲାଗିଲା । ଶରଗୁଡ଼ାକ ଜଳନ୍ତା ନିଆଁ ଭିତର ଦେଇ ସୈନ୍ୟମାନଙ୍କ ଦେହରେ ବାଜୁଥାଏ । କିଛି ସମୟ ଏହିପରି ଗଲା । କ୍ରମେ ନିଆଁର ତେଜ ଅସହ୍ୟ ହେବାରୁ କ୍ଲେମେଣ୍ଟ ଧନୁଶର ଫିଙ୍ଗି ଦେଲା ; ହାତରେ ଗୋଟାଏ ଖଣ୍ଡା ଧରି ସେ ହଠାତ୍ ଡେଇଁ ପଡ଼ିଲା ଓ ନିଆଁକୁ ଅତିକ୍ରମ କରି ସୈନ୍ୟଦଳ ମଝିରେ ଉପସ୍ଥିତ ହେଲା । ସେ ଖଣ୍ଡାକୁ ଏପରି ବୁଲାଇଲା ଯେ କେହି ତା ପାଖକୁ ପଶିବାକୁ ସାହସ କଲେ ନାହିଁ ।

ସୈନ୍ୟମାନଙ୍କ ନେତା ହୁକୁମ ଦେଲେ, "ତାକୁ ଧର ।"

କିନ୍ତୁ ତାର ଖଣ୍ଡା ଏପରି ବୁଲୁଥିବାର ଦେଖି କେହି ତା ପାଖକୁ ଗଲେ ନାହିଁ ; ବରଂ କିଏ କୁଆଡ଼େ ପଳାଇଲେ ।

କ୍ଲେମେଣ୍ଟ ରାସ୍ତା ଉପରେ କିଛି ଦୂର ଦଉଡ଼ିଲା । ତା ପରେ ଦେଖିଲା ଯେ ସେହି ରାସ୍ତାରୁ ଗୋଟିଏ ଗଳିରାସ୍ତା ଅଛି । ସେ ସେହି ଗଳିବାଟେ ଦୌଡ଼ିଲା । କେତେଜଣ ସୈନ୍ୟ ତା ପଛେ ପଛେ ଦଉଡ଼ିଲେ । ସେ ହଠାତ୍ ବୁଲିପଡ଼ି ସେମାନଙ୍କୁ ଖଣ୍ଡାରେ ଆକ୍ରମଣ କଲା । ସେମାନେ ମଧ ପ୍ରତିରୋଧ କଲେ । କ୍ଲେମେଣ୍ଟ ଜଣେ ମାତ୍ର ମନୁଷ୍ୟ । ତା ବିରୁଦ୍ଧରେ ବହୁସଂଖ୍ୟକ ସୈନ୍ୟ । ଅନେକ ସମୟ ଯୁଦ୍ଧକରିବା ପରେ ସେ କ୍ଲାନ୍ତ ହୋଇ ପଡ଼ିଲା । ସୈନ୍ୟମାନେ ତାକୁ ମାଡ଼ିବସି ମୁଣ୍ଡଠାରୁ ଗୋଡ଼ଯାଏ ଦଉଡ଼ିରେ ବାନ୍ଧି ପକାଇଲେ; ତାକୁ ଟାଣି ଟାଣି ସେନ୍ୟମାନେ ନେତାଙ୍କ ପାଖକୁ ନେଇଗଲେ । ନେତାଙ୍କ ଆଦେଶରେ କ୍ଲେମେଣ୍ଟ ବନ୍ଦୀଶାଳାରେ ପଡ଼ି ରହିଲା ।

ବନ୍ଦୀଶାଳାରେ ରହି ସେ ଭାବିଲା ଯେ ତାର ମୃତ୍ୟୁ ନିଶ୍ଚିତ । ତାର ଏକକ ମାତ୍ର ସାନ୍ତ୍ୱନା ଥିଲା ଯେ ତା ସ୍ତ୍ରୀ ପଳାଇ ଯାଇ ଜୀବନ ରକ୍ଷା କରିଛି । ସେ ବନ୍ଦୀଶାଳାର ଗୋଟିଏ କୋଠରୀରେ ନଡ଼ାବିଛଣା ଉପରେ ପଡ଼ିଥାଏ । ବାହାରୁ ଠକ୍ ଠକ୍ ଶବ୍ଦ ଶୁଣାଯାଉଥାଏ ।

ଶେରିଫ କ୍ଲେମେଣ୍ଟକୁ ଫାଶୀ ଦେବାର ସ୍ଥିର କରି ବଢ଼େଇମାନଙ୍କୁ ଶୀଘ୍ର ଫାଶୀଖୁଣ୍ଟ ତିଆରି କରିବାକୁ ହୁକୁମ ଦେଇଥାନ୍ତି । ସେମାନେ କାମ କଲାବେଳେ ଏହି ଶବ୍ଦ ହେଉଥିଲା ।

ଏଣେ ଗୋଟିଏ ପିଲା ସହରକୁ ଯାଇଥିଲା । ସେ ଶୁଣି ପାରିଲା ଯେ କ୍ଲେମେଣ୍ଟ ଶେରିଫଙ୍କ ସୈନ୍ୟମାନଙ୍କ ହାତରେ ଧରାପଡ଼ି ବନ୍ଦୀଶାଳାରେ ଅଛି । ଥରେ କ୍ଲେମେଣ୍ଟ ଏହି ପିଲାଟିର ବଡ଼ ଉପକାର

କରିଥିଲା । ଏ ଖବର ଶୁଣିଲା ମାତ୍ରେ ସେ ଶେରଉଡ଼ ଜଙ୍ଗଲକୁ ଦୌଡ଼ିଲା ।

ଦୈବାତ୍ ରବିନ୍ ଏହି ପିଲାଟିକୁ ବଣ ଭିତରେ ଦୌଡ଼ୁଥିବାର ଦେଖି ପଚାରିଲା, "କରେ, ଏପରି ଧାଇଁଛୁ କାହିଁକି ?" ସେ ସଙ୍ଗେ ସଙ୍ଗେ କହିଲା, "ଦୁଃଖର କଥା କ୍ଲମେଣ୍ଟ ସୈନ୍ୟମାନଙ୍କ ହାତରେ ଧରି ପଡ଼ିଛନ୍ତି । ଶେରିଫ ତାଙ୍କୁ ଫାଶୀ ଦେବାକୁ ବସିଛନ୍ତି ।"

ରବିନ୍ ଏ ଖବର ପାଇଲା କ୍ଷଣି ଲିଟିଲ୍ ଜନ୍‌କୁ ସଙ୍ଗରେ ଘେନି ନଟିଙ୍ଗହାମକୁ ଗଲା । ଦୁହେଁ ବନ୍ଦୀଶାଳାକୁ ଯାଇ ବାହାର କବାଟରେ ହାତ ମାରି ଅପେକ୍ଷା କଲେ ।

ବନ୍ଦୀଶାଳାର ଜଣେ କର୍ମଚାରୀ କବାଟକୁ ଟିକଏ ମେଲି କରି ପଚାରିଲା, "ତୁମର ଏଠାରେ କି କାମ ଅଛି ?"

ତା କଥା ସରୁ ନ ସରୁଣୁ ରବିନ୍ ତା ମୁହଁରେ ଏକ ମୁଥ ବସାଇଦେଲା । ସେ ତଳେ ବସି ପଡ଼ିଲା । ରବିନ୍ ଓ ଲିଟିଲ୍ ଜନ ଭିତରେ ପଶିଯାଇ ଲୋକଟା ହାତରୁ କଞ୍ଚିମୁଠା ନେଇଗଲେ । ମୁହୂର୍ତ୍ତକ ଭିତରେ ସେ ଦୁହେଁ କ୍ଲମେଣ୍ଟର କୋଠରି ପାଖେ ପହଞ୍ଚିଗଲେ । ସେତେବେଳକୁ କ୍ଲମେଣ୍ଟ କଅଣ କହୁଥିଲା । ତେଣୁ ତା ସ୍ୱରରୁ କୋଠରିଟା ଚିହ୍ନିବା ସୁବିଧା ହେଲା ।

ଅତିଶୀଘ୍ର କୋଠରିର ଦ୍ୱାର ଖୋଲି ସେ ଦୁହେଁଯାକ କ୍ଲମେଣ୍ଟକୁ ବାହାର କରି ଆଣିଲେ । କିନ୍ତୁ ବୁଲିପଡ଼ି ଫେରିଲା ବେଳକୁ ଦେଖିଲେ ଯେ ସ୍ୱୟଂ ଶେରିଫ ସେଠାକୁ ଆସୁଛନ୍ତି । ତିନିହେଁଯାକ ସେହିଠାରେ ଛିଡ଼ା ହୋଇଗଲେ ।

ଶେରିଫ କହିଲେ, "ମୁଁ ଯେଉଁ ସୁବିଧା ଖୋଜୁଥିଲି, ତାହା ଏବେ ବଳେବଳେ ଉପସ୍ଥିତ । ତୁମେ ଦୁହେଁ ମଧ୍ୟ ସ୍ୱଇଚ୍ଛାରେ ମୋର

ବନ୍ଦୀଶାଳାରେ ପଶିଛୁ । ମୋତେ ଅନେକ କଷ୍ଟରୁ ରକ୍ଷା ମିଳି-ଗଲା ।”

ଶେରିଫ ଫାଶୀଖୁଣ୍ଟକୁ ଆଉଜି ଏହିପରି କହୁଥିଲେ । ହଠାତ୍ ବଜୁଳିପରି ଗୋଟାଏ ଶର ଆସି ଶେରିଫଙ୍କ ଗୁନ୍ଥରେ ବାଜିଲା । ଶରଟା ତାଙ୍କ ପୋଷାକ ଓ ଗୁନ୍ଥ ଭେଦି ଫାଶିଖୁଣ୍ଟକୁ ମଧ୍ୟ ଭେଦି-ଗଲା । ସେ ଆଉ ହଲଚଲ ମଧ୍ୟ ହୋଇ ପାରିଲେ ନାହିଁ ।

କହିବା ବାହୁଲ୍ୟ ଯେ ଏହି ଶରଟିକୁ ରବିନ୍ ମାରିଥିଲା । ପ୍ରାଣବିକଳରେ ଶେରିଫ ଚିତ୍କାର କଲେ “ଧର, ଧର, କିଏ ଅଛ ଧାଇଁଆସ ।”

ଅବଶ୍ୟ କେତେ ଜଣ ସୈନ୍ୟ ଧାଇଁ ଆସିଲେ । କିନ୍ତୁ ସେମାନେ ଆସି ଘଟଣା ବୁଝିବା ବେଳକୁ ରବିନ୍, ଲିଟିଲ୍ ଜନ୍ ଓ କ୍ଲମେଣ୍ଟ ବନ୍ଦୀଶାଳାରୁ ବାହାରି ସହରର ଶେଷ ସୀମା ପର୍ଯ୍ୟନ୍ତ ଚାଲି ଯାଇଥିଲେ । ସୈନ୍ୟମାନଙ୍କର କିଛିଦୂରଯାଏ ବୃଥା ଦୌଡ଼ିବା ହିଁ ସାର ହେଲା ।

ଶେରଉଡ଼ ଜଙ୍ଗଲରେ କିଛି ଦୂର ପ୍ରବେଶ କଲାପରେ ସେମାନେ ଦେଖିଲେ ଯେ ଜଣେ ସ୍ତ୍ରୀଲୋକ ଗୋଟିଏ ଗଛମୂଳେ ବସି କାନ୍ଦୁଛି । କ୍ଲମେଣ୍ଟ ତତ୍‌କ୍ଷଣାତ୍ ତାକୁ ନିଜର ସ୍ତ୍ରୀ ବୋଲି ଚିହ୍ନି ପାରିଲେ । ସମସ୍ତେ ନିରାପଦରେ ଆଡ୍‌ଡାରେ ପହଞ୍ଚିଲେ ।

ସେଦିନ ରବିନ୍‌ର ଦଳରେ ଆଉ ଜଣେ ଯୋଗ ଦେଲା । ସେ ହେଉଛି କ୍ଲମେଣ୍ଟର ସ୍ତ୍ରୀ । ମେରିଆନ୍ ଜଣେ ସ୍ତ୍ରୀଲୋକକୁ ପାଇ ଆନନ୍ଦିତ ହେଲା । ଅଳ୍ପ ଦିନ ମଧ୍ୟରେ କ୍ଲମେଣ୍ଟର ସ୍ତ୍ରୀ ନିଜକୁ ନୂତନ ଜୀବନରେ ଅଭ୍ୟସ୍ତ କରି ନେଲା । ସେ ଦଳମଧ୍ୟରେ ପରସ୍ପର ସାହାଯ୍ୟ, ସହାନୁଭୂତି ଦେଖି ଏପ୍ରକାର ଜୀବନକୁ ଆନନ୍ଦରେ ଆଦରି ନେଲା ।

---

## ୩୭

# ରବିନହୁଡ୍‌ର ଶେଷ ଜୀବନ

ରବିନ ଶେରଉଡ଼ ଜଙ୍ଗଲର ବୃକ୍ଷଲତା ଭିତରେ ଆହୁରି ଅନେକ ବର୍ଷ କଟାଇଥିଲା । ରାଜାଙ୍କ ପରିଷଦରୁ କାର୍ଯ୍ୟ ତ୍ୟାଗ କରି ରବିନ୍ ଫେରି ଆସିବା ପରେ ତାର ଅଧିକାଂଶ ସଙ୍ଗୀ ପୁଣି ଶେର-ଉଡ଼କୁ ଆସି ତାହା ସଙ୍ଗେ ଯୋଗ ଦେଇଥିଲେ । ଏଥି ମଧ୍ୟରେ ତାର କେତେ ସହଚର ସଂସାରରୁ ବିଦାୟ ନେଇ ଯାଇଥିଲେ ଏବଂ ଶେରଉଡ଼ ଜଙ୍ଗଲରେ ସମାଧିରେ ଚିରଆଶ୍ରୟ ପାଇଥିଲେ ।

ଲିଟିଲ୍ ଜନ ବୃଦ୍ଧ ହୋଇ ଯାଇଥିଲା । କିନ୍ତୁ ସେ ରବିନ୍‌ର ଶେଷ ପର୍ଯ୍ୟନ୍ତ ତା ସଙ୍ଗେ ସଙ୍ଗେ ରହିଥିଲା । ରବିନ୍ ଓ ମେରିଆନ୍ ଦୁହିଁଙ୍କର ମଧ୍ୟ ଖୁବ୍ ବେଶି ବୟସ ହୋଇଯାଇଥିଲା । ମେରିଆନ୍ ସ୍ୱେଚ୍ଛାରେ ଏହି ବନରେ ରହି ସ୍ୱାମୀର ପଦଚିହ୍ନ ଅନୁସରଣ କରି ଜୀବନକୁ ସୁଖମୟ କରି ପାରିଥିଲା । କିନ୍ତୁ ସେ ଶେଷ ଜୀବନରେ ଗୋଟିଏ ମଠରେ ଜୀବନ କଟାଇବାକୁ ସ୍ଥିର କରି ଶେର୍‌ଉଡ଼ ତ୍ୟାଗ କରି ଯାଇଥିଲା । ଅବଶ୍ୟ ରବିନ୍‌ର ଉପଦେଶ ଅନୁସାରେ ସେ ମଠକୁ ଯାଇଥିଲା । ରବିନ୍ ଜାଣିଥିଲା ଯେ ଶେରଉଡ଼ର ବିପଦପୂର୍ଣ୍ଣ ଜୀବନ ବୃଦ୍ଧାବସ୍ଥାର ଅନୁକୂଳ ନୁହେଁ ।

ବସନ୍ତ ସମୟ । ବନ ପ୍ରଦେଶ ସୌନ୍ଦର୍ଯ୍ୟରେ ପୂର୍ଣ୍ଣ । ଦିନେ ସକାଳେ ରବିନ୍ ଲିଟିଲ୍ ଜନ୍‌କୁ ପାଖକୁ ଡାକି କହିଲା, "ଲିଟିଲ୍-ଜନ, ଦେଖ ମୁଁ ବୃଦ୍ଧ ହେଲିଣି । ମୋର ମରଣ ସମୟ ନିକଟ । ମୃତ୍ୟୁ ପୂର୍ବରୁ ଥରେ ମେରିଆନ୍‌କୁ ଦେଖିବାପାଇଁ ମୋର ଇଚ୍ଛା ହେଉଛି ।"

ଲିଟିଲ୍ ଜନ୍ କହିଲା, "କର୍କିହଲ ମାତାମଠ ଏଠାରୁ ବହୁତ ଦୂର । ଏତଦ୍ୱାର, ଏ ଦୁର୍ବଳ ଶରୀରରେ ଏତେ ବାଟ ଯିବ କପରି ?"

ରବିନ୍ କହିଲା, "ଆଗେ ତ ଆମେ କୌଣସି ସ୍ଥାନକୁ ମନେ କରୁ ନ ଥିଲେଁ । ଆମେ ଯେପରି ହେଉ ସେ ମଠକୁ ଯିବ

ଲିଟିଲ୍ ଜନ୍ ଦୀର୍ଘ ନିଃଶ୍ୱାସ ଛାଡ଼ି କହିଲା, "ସେତେବେଳେ ଆମର ବଳ ବୟସ ଥିଲା । ଏବେ ଆମର ସେ ଶକ୍ତି କାହିଁ ?" ର

ପ୍ରାୟ ବର୍ଷକ ତଳେ ମେରିଆନ୍ ଶେରଉଡ଼ ତ୍ୟାଗ କର୍କିହଲ୍ ମାତାମଠରେ ଆଶ୍ରମଜୀବନ ଯାପନ କରିବାକୁ ଯାଇଥିଲା କିନ୍ତୁ ମାତ୍ର ତିନିମାସ ପରେ ସେଠାରେ ତାର ମୃତ୍ୟୁ ହୋଇଥିଲା କିନ୍ତୁ ସେ ସମ୍ବାଦ ଶେରଉଡ଼ରେ ପହଞ୍ଚି ନଥିଲା । ରବିନ୍ ଓ ଲି ଜନ୍ ବହୁକଷ୍ଟରେ ଚାଲି ଚାଲି ଦିନେ ସନ୍ଧ୍ୟା ସମୟରେ କର୍କି ମାତାମଠରେ ପହଞ୍ଚିଲେ ।

ବାହାର କବାଟ ପାଖରେ ଥିବା ଘଣ୍ଟା ବଜାଇବାରୁ ମଠର ପ୍ରଧାନ ମାତା ଆସି କବାଟ ଫିଟାଇ ଦୁହିଁଙ୍କୁ ସମ୍ଭାଷଣ କଲେ । ସେମାନେ ମେରିଆନ୍ ସଙ୍ଗେ ଦେଖା କରିବାକୁ କହିଲେ । ପ୍ରଧା ମାତା ସେମାନଙ୍କୁ ଭିତରକୁ ଡାକିଲେ । କିନ୍ତୁ ଲିଟିଲ୍ ଜନ ପାଖରେ ବସି ରହିଲା । ପାଖରେ ତାର ଧନୁ ଓ ଶର । ର ମଠ ଭିତରକୁ ଗଲା ।

ରବିନ୍ ଭିତରକୁ ଯିବା ପରେ ମାତା ତାକୁ କହିଲେ ଯେ ମେରିଆନ ଆଜି ଇହ ଜଗତରେ ନାହିଁ । ରବିନ୍ ଏହି ସମ୍ବାଦ ଶୁ ଦୁଃଖରେ ଅଭିଭୂତ ହୋଇଗଲା ।

କିଛି ସମୟ ପରେ ସେ କହିଲା, "ମୋର ଜୀବନରେ ବ ଆଶା ଥିଲା ଯେ ମୃତ୍ୟୁ ପୂର୍ବରୁ ଥରେ ମେରିଆନକୁ ଦେଖିବି । ମା

ବିଧାତାଙ୍କର ବିଧାନ କିଏ ଲଙ୍ଘନ କରି ପାରିବ ? ଯାହା ହେଉ, ସେ ଯେଉଁ କୋଠରୀରେ ଶେଷ ନିଃଶ୍ୱାସ ପକାଇଥିଲା ତାକୁ ହେଲେ ଏବେ ଦେଖାଯିବ ।"

ପ୍ରଧାନ ମାତା ରବିନ୍‌କୁ ଉପର ମହଲାକୁ ନେଇ ଗୋଟିଏ କୋଠରୀ ଦେଖାଇ ଦେଇ କହିଲେ,"ଏହି କୋଠରୀରେ ମେରିଆନର ଶେଷ ଜୀବନ କଟିଥିଲା । ଏହିଠାରେ ତାର ମୃତ୍ୟୁ ହୋଇଥିଲା ।"

ରବିନ୍‌ର ସମସ୍ତ ଶକ୍ତି କୁଆଡ଼େ ଉଭେଇ ଗଲାପରି ସେ ଅନୁଭବ କଲା । ସେ ବୁଝିଲା ଯେ ତାର ମୃତ୍ୟୁ ବେଶି ଦୂରରେ ନାହିଁ । ସେ ଧୀରେ ଧୀରେ ସେହି କୋଠରୀର ଝରକା ପାଖରେ ଠିଆ ହୋଇ ବାହାରକୁ ଚାହିଁଲା । ଅନେକ ଦୂରରେ ଶେରଉଡ଼ ବଣର ଗୋଟିଏ ନୀଳବର୍ଣ୍ଣର ରେଖାପରି ଦିଶୁଥାଏ । ସେ କାହାଳୀକୁ କାଢ଼ି ବାହାର କରି ତିନଥର ଫୁଙ୍କିଲା ।

ଲିଟିଲ୍ ଜନ୍ ଦ୍ୱାର ପାଖରେ ବସିଥିଲା । ସେ ଶିଙ୍ଗାର ଶବ୍ଦ ଶୁଣିପାରିଲା । ମାତ୍ର ଶବ୍ଦର କ୍ଷୀଣସ୍ୱରରୁ ସେ ଭାବିଲା ଯେ ରବିନ୍‌ର କିଛି ବିପଦ ଘଟିଛି । ତାର ପୂର୍ବ ଶକ୍ତି ଆଜି ନାହିଁ । ସେ ହଠାତ୍ ଉଠିପଡ଼ି ମଠ ଭିତରକୁ ଯିବାକୁ ବସିଲା ।

ଏହି ସମୟରେ ପ୍ରଧାନମାତା ଆସି କହିଲେ, "ତୁମର ସଙ୍ଗୀ ଡାକୁ ଅଛନ୍ତି । ବୋଧହୁଏ ସେ ତୁମର ସାହାଯ୍ୟ ଲୋଡ଼ୁଛନ୍ତି ।"

ଲିଟିଲ୍ ଜନ୍ ଯଥାଶକ୍ତି ଧାଇଁଯାଇ ଉପର ମହଲାରେ ରବିନ୍ ନିକଟରେ ପହଞ୍ଚିଲା । ରବିନ କ୍ଷୀଣସ୍ୱରରେ କହିଲା, "ଲିଟିଲ୍ ଜନ, ମୋର ମୃତ୍ୟୁ ସମୟ ଉପସ୍ଥିତ । ମୁଁ ଆଉ ଏଠାରୁ ଫେରିଯିବାର ଆଶା ନାହିଁ । ମୋତେ ମୋର ଧନୁଶର ଦିଅ । ମୁଁ ସେଥିରେ ଗୋଟିଏ ଶର ମାରିବି । ସେ ଶରଟି ଯେଉଁଠାରେ ପଡ଼ିବ, ମୋତେ ସେହିଠାରେ ସମାଧି ଦେବ ।"

ଲିଟିଲ ଜନ୍ ରବିନ୍‌ର ଧନୁଶର ମଠର ଦ୍ୱାର ପାଖରେ ରଖି ଦେଇ ଯାଇଥିଲା । ସେ ମୁହୂର୍ତ୍ତକ ମଧ୍ୟରେ ସେଠାକୁ ଯାଇ ରବିନ୍‌ର ଧନୁଶର ଘେନି ଆସିଲା । ସେତେବେଳକୁ ରବିନ୍‌ର ଛିଡ଼ା ହେବାର ଶକ୍ତି ନଥିଲା । ରବିନ୍ ଲିଟିଲ୍ ଜନ୍ ଉପରେ ଭର ଦେଇ ଝରକା ପାଖେ ଛିଡ଼ା ହେଲା ଓ ଶେଷଥର ପାଇଁ ଜୀବନର ସମସ୍ତ ଶକ୍ତି ପ୍ରୟୋଗ କରି ତାର ଶର ମାରିଲା । ସେ ଶରଟି ଝରକାବାଟେ ଦୂରରୁ ଦୂରକୁ ଯାଇ ଶେଷରେ ରବିନ୍‌ହୁଡ଼ର ପ୍ରିୟ ଶେରଉଡ଼ ଜଙ୍ଗଲ ମଧ୍ୟରେ ପଡ଼ିଲା । ରବିନ୍‌ର ମନରେ ଶାନ୍ତି ଆସିଲା । ସେ ଧୀର ଭାବରେ ଲିଟିଲ୍ ଜନ୍‌ର କୋଳରେ ଢଳି ପଡି କହିଲା "ଲିଟିଲ୍ ଜନ୍, ମୋର ଶରଟି ବେଶ ଦୂରକୁ ଯାଇଛି, ନୁହେଁ ?"

ଦୁଇ ବନ୍ଧୁ ଜଙ୍ଗଲ ଆଡ଼କୁ ଚାହିଁ ରହିଲେ । ଲିଟିଲ୍ ଜନ୍‌ର ତୁଣ୍ଡରୁ କଥା ବାହାରିଲା ନାହିଁ ।

ରବିନ୍ ଧୀର ସ୍ୱରରେ କହିଲା, "ମୋର ପ୍ରାଣବାୟୁ ଚାଲିଯିବା ପରେ ଯେଉଁଠାରେ ମୋର ଶର ପଡ଼ିଥିବାର ଦେଖିବ, ସେହିଠାରେ ମୋର ମୃତ ଦେହକୁ ନେଇ ସମାଧି ଦେବ । ଏହାହିଁ ମୋର ଶେଷ ଅନୁରୋଧ ।"

ଅଳ୍ପ ସମୟ ପରେ ରବିନ୍‌ର ପ୍ରାଣବାୟୁ ଉଡ଼ିଗଲା । ଲିଟିଲ ଜନ୍ ଶରଟି ପଡ଼ିଥିବା ସ୍ଥାନରେ ତାକୁ ସମାଧି ଦେଲା ।

ରବିନ୍‌ହୁଡ଼ ଯାଇଛି, ମାତ୍ର ତାର ସ୍ମୃତି ଆଜଯାଏ ରହିଛି ଓ ଭବିଷ୍ୟତରେ ରହିଥିବ ।

ସମାପ୍ତ

---

ମୁଦ୍ରାକର—ଶ୍ରୀ ଚନ୍ଦ୍ରମଣି ମିଶ୍ର, ନବଜୀବନ ପ୍ରେସ୍, କଟକ-୨